# କାଶ୍ମୀର ଏକ ସ୍ୱପ୍ନିଲ ବାସ୍ତବ

ଅନୁବାଦକ
**ନୀଳମଣି ମିଶ୍ର**
ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର




ଗୋସାଣିନୂଆଗାଁ ବ୍ରହ୍ମପୁର-୭୬୦ ୦୦୩
ରାଷ୍ଟ୍ରଭାଷା ରୋଡ୍, କଟକ-୭୫୩ ୦୦୨



ପ୍ରକାଶକ
ଶ୍ରୀ ଉମେଶପ୍ରସାଦ ସାହୁ
ସନ୍ତୋଷ ପବ୍ଲିକେଶନ୍ସ୍
ରାଷ୍ଟ୍ରଭାଷା ରୋଡ୍, କଟକ-୭୫୩ ୦୦୧
ଗୋସାଣିନୂଆଗାଁ, ବ୍ରହ୍ମପୁର-୭୬୦ ୦୦୩



ପ୍ରଥମ ସଂସ୍କରଣ
୧୯୭୨
ଦ୍ୱିତୀୟ ସଂସ୍କରଣ
୧୯୮୫



ପ୍ରଚ୍ଛଦପଟ
ଶ୍ରୀ ଅସିତ୍ ମୁଖାର୍ଜୀ
ଶିଳ୍ପରୂପମ୍, ବଦ୍ଧାଶବାଗ, କଟକ



ମୁଦ୍ରାକର
ଶ୍ରୀ ଗୋପୀନାଥ ସାହୁ
ରାଷ୍ଟ୍ରଭାଷା ପ୍ରଚାର ସମବାୟ ପ୍ରେସ
ରାଷ୍ଟ୍ରଭାଷାରୋଡ୍ , କଟକ-୭୫୩ ୦୦୧



ମୂଲ୍ୟ
**କୋଡ଼ିଏ ଟଙ୍କା**

# ଦୁ'ପଦ

ଆଜି ନୁହେଁ, ବାଲ୍ମୀକିଙ୍କ ରାମାୟଣଯୁଗରୁ ଜାମ୍ମୁ ଓ କାଶ୍ମୀର ସହିତ ଭାରତର ଅବିଚ୍ଛେଦ୍ୟ ସମ୍ପର୍କ ରହିଆସିଛି । ଯୁଗପରେ ଯୁଗ ଆଗେଇ ଚାଲିଛି ଏବଂ ତା'ର ସହିତ ତାଳଦେଇ ମନୁଷ୍ୟର ସଭ୍ୟତା ମଧ୍ୟ ଅଗ୍ରଗତି କରୁଛି । ବେଳେବେଳେ 'କାଳର କରାଳ ଅଟ୍ଟହାସ' ବା 'ଇତିହାସର ଉପହାସ' ଫଳରେ ପଥ ମଧ୍ୟରେ ସଭ୍ୟତାର ଅଗ୍ରଗତି ଅବରୁଦ୍ଧ ହୁଏ; କିନ୍ତୁ ଅବସ୍ଥାର ପରିବର୍ତ୍ତନ ସଙ୍ଗେ ସଙ୍ଗେ ସଭ୍ୟତାର ଚକ ପୁଣି ଗଡ଼ିଚାଲେ ଦିନ ମାସ ବର୍ଷକୁ ପଛକୁ ପକାଇ ।

ଠିକ୍ ସେହି ପରମ୍ପରାକ୍ରମେ ଜାମ୍ମୁ ଓ କାଶ୍ମୀର ରାଜ୍ୟ ଅନେକ ରାଜବଂଶର ଉତ୍‌ଥାନ ପତନ ଦେଇ ପରିଶେଷରେ ମହାରାଜା ଗୁଲାବ ସିଂହ ଓ ତାଙ୍କ ଦାୟାଦଙ୍କ ହାତରେ ପଡ଼ିଲା ଏବଂ ଘଟଣାକ୍ରମେ ପ୍ରକୃତିର ସୁଖଦ କୋଳରେ ଲାଳିତପାଳିତ ନିରୀହ ପ୍ରଜାମାନଙ୍କ ମନରେ ଭେଦଭାବରୂପକ ବିଷବୀଜ ଅଙ୍କୁରିତ ହେଲା । କିନ୍ତୁ ସବୁଠାରୁ ଦୁଃଖର କଥା, ଯେଉଁମାନେ ଦିନେ କାଶ୍ମୀରର ରକ୍ଷକରୂପେ ଜନସମାଜର ଆଦରଣୀୟ ପାତ୍ର ହୋଇଥିଲେ, ସେହିମାନେ ହିଁ କାଶ୍ମୀରର ଭକ୍ଷକ ଭୂମିକାରେ ଅବତୀର୍ଣ୍ଣ ହୋଇ ନାନାପ୍ରକାର ହଟଚମତ୍ ଦେଖାଇଲେ । ପ୍ରକୃତରେ ମୂଳ ଲେଖକ ଶ୍ରୀ ଉମାଶଙ୍କରଜୀଙ୍କ ଭାଷାରେ କହିବାକୁ ଗଲେ—"ସେଠାକାର କର୍ଣ୍ଣଧାର 'ଶେର-ଏ-କାଶ୍ମୀର', 'ଖାଲିକ୍-ଏ-କାଶ୍ମୀର' ଓ 'ବୁଲ୍‌ବୁଲ୍-ଏ-କାଶ୍ମୀର' ନିରୀହ ଜନସାଧାରଣଙ୍କର ସବୁ କିଛି ଅପହରଣ କରିନେଲେ । ତାହାର ଫଳରେ ଲୋକମାନଙ୍କର ଜୀବନଧାରଣର ମାର୍ଗ କଣ୍ଟକିତ ହୋଇଉଠିଲା, ପରସ୍ପର ମଧ୍ୟରେ ବୈମନସ୍ୟ ସୃଷ୍ଟି ହେଲା, ପରିଶେଷରେ ସାମ୍ପ୍ରଦାୟିକତା ମୁଣ୍ଡଟେକି ଘାରି ଘାରିର ଶତ୍ରୁ ହୋଇଉଠିଲା ।"

ଯା'ହେଉ, ସୌଭାଗ୍ୟକ୍ରମେ କାଶ୍ମୀରର ଭାଗ୍ୟାକାଶରେ ନବୋଦିତ ସୂର୍ଯ୍ୟପରି ଦେଦୀପ୍ୟମାନ ହୋଇଉଠିଲେ ପ୍ରଥମେ ଯୁବରାଜ, ତା'ପରେ ରାଜପ୍ରମୁଖ,

ସଦର ଏ-ରିୟାସତ୍, ରାଜ୍ୟପାଳ ମହାରାଜା କରଣ ସିଂହ । ସେ ନିଜର ବିଦ୍ୱତ୍ତା, ସହିଷ୍ଣୁତା, ଦୂରଦର୍ଶିତା ଓ ବିଚକ୍ଷଣତା ବଳରେ କାଶ୍ମୀରର ତଥାକଥିତ ରକ୍ଷକମାନଙ୍କ କବଳରୁ ଜାମ୍ମୁ ଓ କାଶ୍ମୀରର ନିରୀହ ଜନସାଧାରଣଙ୍କୁ ରକ୍ଷା କରିବାରେ ଅନେକାଂଶରେ ସଫଳତା ହାସଲ କଲେ । ତା' ଫଳରେ ମହାରାଜା କରଣ ସିଂହ କେବଳ 'ଜାମ୍ମୁ ଓ କାଶ୍ମୀର'ର ଜନସାଧାରଣଙ୍କର ଆଦରଣୀୟ ପାତ୍ର ନୁହନ୍ତି, ସମଗ୍ର ଭାରତବର୍ଷରେ ଜଣେ ଉଦାରମନା ବିଚକ୍ଷଣ ରାଜନୀତିଜ୍ଞ ତଥା ପ୍ରଭାବଶାଳୀ ବ୍ୟକ୍ତି ରୂପେ ସମ୍ମାନିତ ହେଲେ ।

"କାଶ୍ମୀର ଏର୍ ସଚ୍ ଏକ୍ ଝୁଠ୍" ବହିଟିର ପ୍ରଣେତା ହେଉଛନ୍ତି— ହିନ୍ଦୀଜଗତର ପ୍ରଖ୍ୟାତ ଲେଖକ ଉମାଶଙ୍କରଜୀ । ତାଙ୍କ ଲିଖିତ 'ମେରେ ପଥ ମେରେ ଦେବତା'ର ଅନୁବାଦ ଓଡ଼ିଆ ପାଠକପାଠିକାଙ୍କ ମହଲରେ ଚହଲ ପକାଇଦେଇଛି । ତାଙ୍କର ଅମର ଲେଖନୀରୁ ନିସୃତ ଅନେକ କାହାଣୀ ଓ ଉପନ୍ୟାସ ପୁସ୍ତକ ହିନ୍ଦୀ-ଜଗତରେ ବେଶ୍ ଲୋକପ୍ରିୟ ହୋଇପାରିଛି । ସେ ମହାଶୟ ବହୁ ପରିଶ୍ରମ କରି ଓ କେତେକ ପ୍ରତ୍ୟକ୍ଷଦର୍ଶୀଙ୍କଠାରୁ ବିବରଣୀ ସଂଗ୍ରହ କରି 'କାଶ୍ମୀର ଏକ୍ ସଚ୍ ଏକ୍ ଝୁଠ୍' ପୁସ୍ତକରେ ସନ୍ନିବେଶିତ କରିଛନ୍ତି ।

୧୯୩୦ରୁ ୧୯୬୫ ପର୍ଯ୍ୟନ୍ତ ଜାମ୍ମୁ ଓ କାଶ୍ମୀର ରାଜ୍ୟର ଧାରାବାହିକ ଇତିହାସ ପ୍ରସ୍ତୁତ ପୁସ୍ତକରେ ଲିପିବଦ୍ଧ କରିବା ସଙ୍ଗେ ସଙ୍ଗେ ଉମାଶଙ୍କରଜୀ କାଶ୍ମୀର ରାଜ୍ୟ ଗଠନର ପୃଷ୍ଠଭୂମି ସମ୍ପର୍କରେ ସମ୍ୟକ୍ ଆଲୋଚନା କରିଛନ୍ତି । ସେହି ଘଟଣାବଳୀକୁ ବାସ୍ତବିକ ତଥ୍ୟପୂର୍ଣ୍ଣ କରିବା ଅଭିଳାଷରେ, ସେ ଜାମ୍ମୁ ଓ କାଶ୍ମୀର ରାଜ୍ୟରେ କେତେ ଦିନ ପର୍ଯ୍ୟନ୍ତ କଟାଇ, ରିସ୍ତାକଡ଼ର ସତୁରି ବର୍ଷ ବୟସ୍କ ଗ୍ରୀ' ଦୋକାନୀ ନୋଖୁ ଖାଁ, ଝେଲମ୍ ନଦୀକୂଳରେ ବସି ଜୋତା ସିଲାଇକରୁଥିବା ଷାଠିଏ ବର୍ଷ ବୟସ୍କ ମୋଚି ବୁଢ଼ା ରଜ୍ଜବ୍ ମିଆଁ, ହଜରତ୍‌ବଲ୍‌କୁ ନମାଜ ପଢ଼ିବାପାଇଁ ଆସୁଥିବା ଇସ୍‌ଲାମ୍ ଅଲୀଙ୍କଠାରୁ ଆରମ୍ଭ କରି ଶ୍ରୀନଗରର ଜନୈକ ପୋଲିସ ଅଧିକାରୀ ରିସାଲ୍ ସିଂହ, ଜାମ୍ମୁ ଓ କାଶ୍ମୀର ରାଜ୍ୟର ପ୍ରଖ୍ୟାତ ସାମ୍ବାଦିକ ମୁଲ୍‌କରାଜ୍ ସରାଫ୍, ନରସିଂଦାସ ନର୍ଗିସ୍, ଅଧ୍ୟାପକ ରାମନାଥ ଶାସ୍ତ୍ରୀ ତଥା କାଶ୍ମୀର ଉପରେ ପାକିସ୍ତାନର ଜଘନ୍ୟ ଆକ୍ରମଣ ସମୟରେ ଗିଲ୍‌ଗିଟ୍‌ଠାରେ ଗଭର୍ଣ୍ଣରରୂପେ ଅବସ୍ଥାପିତ ଘନସାର ସିଂହ ପ୍ରମୁଖ ଅନେକ ଲୋକଙ୍କ ସହିତ ଆଲୋଚନା କରି ଅନେକ ଘଟଣା ସଂଗ୍ରହ କରିଛନ୍ତି ।

ପରିଶେଷରେ ଭାରତର ପର୍ଯ୍ୟଟନ ବିଭାଗ ମନ୍ତ୍ରୀ ଡକ୍ଟର୍ କରଣ ସିଂହଙ୍କଠାରୁ ମଧ୍ୟ ତାଙ୍କ ଅନୁଭୂତି ସମ୍ବନ୍ଧରେ ସମସ୍ତ ଘଟଣା ଶୁଣି ପୂର୍ବାପର ସଙ୍ଗତି ସହିତ ସେଗୁଡ଼ିକୁ ପ୍ରସ୍ତୁତ ପୁସ୍ତକରେ ଲିପିବଦ୍ଧ କରିଛନ୍ତି ।

ମୂଳ ପୁସ୍ତକର ଭୂମିକାରେ ଲେଖକ ଉମାଶଙ୍କରଜୀ ପୁସ୍ତକରେ ପ୍ରଦତ୍ତ ଘଟଣାବଳୀର ମୂଳ ଉତ୍ସ ସମ୍ବନ୍ଧରେ କେତେକ ଉପାଦାନ ଯୋଗାଇବା ସଙ୍ଗେ ସଙ୍ଗେ ଜାମ୍ମୁ ଓ କାଶ୍ମୀର ରାଜ୍ୟର ତଥାକଥିତ ଲୋକପ୍ରିୟ ନେତା ଶେଖ୍ ଅବ୍‌ଦୁଲ୍ଲା ଓ ବକ୍‌ସି ଗୁଲାମ୍ ମହମ୍ମଦଙ୍କ ସମ୍ବନ୍ଧରେ ନିମ୍ନଲିଖିତ ମତ ବ୍ୟକ୍ତ କରିଛନ୍ତି—

"୧୯୪୭ ସାଲରେ ଶେଖ୍ ଅବ୍‌ଦୁଲ୍ଲାଙ୍କର ଯେଉଁ ବ୍ୟକ୍ତିତ୍ୱ ଥିଲା, ତାହା ଆଉ ଆଜି ନାହିଁ। ବାସ୍ତବରେ କହିବାକୁ ଗଲେ, ତାଙ୍କର ଅସଲ ରୂପ ପଦାରେ ପଡ଼ିଯାଇଛି। ତାଙ୍କୁ ବର୍ତ୍ତମାନ ଭାରତର ମହମ୍ମଦ ଅଲ୍ଲୀ ଜିନ୍ନା ନାମରେ ନାମିତ କଲେ ଆଦୌ ଅସଙ୍ଗତ ହେବ ନାହିଁ। କାରଣ, ପାକିସ୍ତାନ ପରି କାଶ୍ମୀର-ଉପତ୍ୟକାକୁ ଏକ ସ୍ୱାଧୀନ ରାଜ୍ୟରେ ପରିଣତ କରି ସେଠାକାର ଭାଗ୍ୟନିୟନ୍ତା ହେବା-ଲାଗି ଯେକୌଣସି ଅନୁଚିତ କାର୍ଯ୍ୟ କରିବାରେ ସେ ଆଦୌ ପଶ୍ଚାତ୍‌ପଦ ହେଉ ନାହାନ୍ତି। ସେ ବର୍ତ୍ତମାନ ସେହି ନେତୃତ୍ୱରୂପକ ମୃଗତୃଷ୍ଣା ପଛରେ ଧାଇଁ ରାଜ୍ୟ ତଥା ରାଜ୍ୟ ବାହାରେ ସାଂପ୍ରଦାୟିକତାପୂର୍ଣ୍ଣ ଭାଷଣ ଦେଉଛନ୍ତି। ତା' ଫଳରେ ଯେଉଁ ଭ୍ରାତୃତ୍ୱ ବନ୍ଧନ ଉପରେ ଆଞ୍ଚ ଆସୁଛି, ସେଥିଲାଗି ସେ ଆଦୌ ସଙ୍କୋଚ ବୋଧ କରୁ ନାହାନ୍ତି। ଦିନ ଥିଲା, ସେ ନିଜେ ଜିନ୍ନା ସାହେବଙ୍କୁ ଦେଶଦ୍ରୋହୀ ଆଖ୍ୟା ଦେଇ ଜନସାଧାରଣଙ୍କର ପ୍ରିୟପାତ୍ର ହୋଇଥିଲେ; କିନ୍ତୁ ଆଜି ସେହି ଜିନ୍ନାଙ୍କ ପ୍ରଶଂସାରେ ଶେଖ୍ ସାହେବ ଶତମୁଖ ହୋଇଉଠିଛନ୍ତି। ଭାରତର ନେତୃବୃନ୍ଦ କେତେଦିନଯାଏ ଏହା ବରଦାସ୍ତ କରି ଚାଲିଥିବେ, କିଛି ଜଣାପଡ଼ୁ ନାହିଁ! ବକ୍‌ଶୀ ଗୁଲାମ୍ ମହମ୍ମଦ ଆଜି ଲକ୍ଷ ଲକ୍ଷ ଟଙ୍କା ସମ୍ପତ୍ତିର ଅଧିକାରୀ। ପ୍ରଧାନମନ୍ତ୍ରିତ୍ୱ ସମୟରେ ନାନାପ୍ରକାର ଅନ୍ୟାୟ ଉପାୟ ଅବଲମ୍ବନ କରି ସେ ଧନ ଏକତ୍ରିତ କରିବାରେ ଟିକେ ହେଲେ କୁଣ୍ଠାବୋଧ କରିନାହାନ୍ତି। ଖୁବ୍ ସମ୍ଭବ, ନିଜର ଗଦି ସମ୍ଭାଳିବା ଲାଗି ସେ ଏହି ମାର୍ଗଟିକୁ ସର୍ବଶେଷ ପନ୍ଥାରୂପେ ବାଛି-ନେଇଥିଲେ। କିନ୍ତୁ ଅକାଳରେ ତାଙ୍କର ପ୍ରବଳ ଆଶାରେ ତୁଷାରପାତ ହେଲା। ସେ କ୍ଷମତାରୁ ବିତାଡ଼ିତ ହେଲେ। ତଦ୍‌ବ୍ୟତୀତ ଆଉ ଯାହା ସବୁ ହାନିମାନ ହେବାକୁ ପଡ଼ିଲା, ସେ ବିଷୟ ଉଲ୍ଲେଖ କରିବା ନିଷ୍ପ୍ରୟୋଜନ। ସେ ଜନସାଧାରଣଙ୍କ ଦୃଷ୍ଟିରେ ଚିରଦିନଲାଗି ଏକ ଘୃଣିତ ବ୍ୟକ୍ତିରୂପେ ପରିଚିତ ହୋଇ ରହିଲେ।"

ଗତ ମାର୍ଚ୍ଚ ମାସ ୧୧ ତାରିଖରେ ବନ୍ଧୁ ଉମାଶଙ୍କରଜୀଙ୍କ ସୌଜନ୍ୟରୁ ଡକ୍‌ଟର୍ କରଣ ସିଂହଙ୍କ ସହିତ ନୂଆଦିଲ୍ଲୀର ଚାଣକ୍ୟପୁରୀସ୍ଥିତ ବାସଭବନରେ ସାକ୍ଷାତ୍ କରିବାର ସୁଯୋଗ ପାଇଥିଲି। ସେତିକିବେଳେ 'କାଶ୍ମୀର ଏକ୍ ସଚ୍ ଏକ୍ ଝୂଠ୍'ର ଓଡ଼ିଆ ଅନୁବାଦ କରିବାଲାଗି କଥାପ୍ରସଙ୍ଗରେ ସେ ମୋତେ ଅନୁରୋଧ କରିଥିଲେ; କିନ୍ତୁ ଶ୍ରୀ ଉମାଶଙ୍କରଜୀ ତାଙ୍କର ସ୍ୱଭାବସୁଲଭ ହସ ହସ ମୁହଁରେ କହିଲେ—"ଏ କାମ ଶେଷ ହୋଇସାରିଲାଣି। ମିଶ୍ରଜୀ ସେହି ସମ୍ବନ୍ଧରେ ଆପଣଙ୍କୁ ଗୋଟିଏ ଅନୁରୋଧ କରିବାକୁ ଆଜି ଆସିଛନ୍ତି।"

ଡକ୍ଟର୍ କରଣ ସିଂହ ମୋର ଅନୁରୋଧମତେ ପୁସ୍ତକରେ ସନ୍ନିବିଷ୍ଟ ଫଟୋଗ୍ରାଫ୍‌ଗୁଡ଼ିକୁ ଆଗ୍ରହର ସହିତ ପଠାଇ ଦେଇଥିବାରୁ ମୁଁ ତାଙ୍କଠାରେ ଗଭୀର କୃତଜ୍ଞତା ଜ୍ଞାପନ କରୁଛି ।

କାଶ୍ମୀର ସମ୍ବନ୍ଧରେ ଓଡ଼ିଆ ଭାଷାରେ କୌଣସି ତଥ୍ୟମୂଳକ ପୁସ୍ତକ ଥିବାର ମୋର ଦୃଷ୍ଟିଗୋଚର ହୋଇନାହିଁ । ପ୍ରସ୍ତୁତ ପୁସ୍ତକଟି ସେହି ଅଭାବ ମେଣ୍ଟାଇବାରେ ଯତ୍କିଞ୍ଚିତ୍ ସାହାଯ୍ୟ କରିବ ବୋଲି ଧାରଣା କରି ମୁଁ ମୂଳ ହିନ୍ଦୀ ଲେଖାରୁ ପୁସ୍ତକଟିର ଅନୁବାଦରେ ଆଗ୍ରହୀ ହୋଇଛି । 'କାଶ୍ମୀର ଏକ୍ ସଚ୍ ଏକ୍ ଝୁଠ୍' ଶୀର୍ଷକଟି ହିନ୍ଦୀ ଭାଷାରେ ଯେପରି ଶବ୍ଦ ଗାମ୍ଭୀର୍ଯ୍ୟ ସୃଷ୍ଟି କରୁଛି; ତା'ର ଆକ୍ଷରିକ ଓଡ଼ିଆ ଅନୁବାଦ ପାଠକ ମହଲରେ ଅନୁରୂପ ଆଦର ପାଇପାରନ୍ତା ନାହିଁ । ତେଣୁ ବନ୍ଧୁମାନଙ୍କ ଅନୁରୋଧରେ ଅନୁବାଦ ପୁସ୍ତକଟିର ନାମ 'କାଶ୍ମୀର ଏକ ସ୍ୱପ୍ନିଲ ବାସ୍ତବ' ରଖାଯାଇଛି । ବିଶେଷତଃ ବନ୍ଧୁ ଉମାଶଙ୍କରଙ୍କର ସାଗ୍ରହ ସ୍ୱୀକୃତି ମୋତେ ଏ ଦିଗରେ ବିଶେଷ ଉତ୍ସାହିତ କରିଛି ।

ଏହି ଅନୁବାଦଟିକୁ ସାଫଲ୍ୟମଣ୍ଡିତ କରିବା ଦିଗରେ ଯେଉଁମାନେ ମୋତେ ଉତ୍ସାହିତ କରିଛନ୍ତି, ସେମାନଙ୍କର ମଧ୍ୟରେ ବନ୍ଧୁ ଶ୍ରୀ ଗୋପୀନାଥ ସାହୁ, ମୋର ସହକାରୀ ଶ୍ରୀ କରୁଣାକର ବିଶୋଇ, ଅନୁଜପ୍ରତିମ ଶ୍ରୀ ଅଭିରାମ ପଣ୍ଡା ଓ ଶ୍ରୀମାନ୍ ଚିତ୍ତରଞ୍ଜନ ସାମନ୍ତ ପ୍ରମୁଖଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଓଡ଼ିଶା ରାଜ୍ୟ ସଂଗ୍ରହାଳୟର କଳାକାର ଶ୍ରୀ ସୁଦର୍ଶନ ସାହୁ ଓ ପ୍ରଖ୍ୟାତ ଶିଳ୍ପୀ ଶ୍ରୀ ଅସିତ ମୁଖାର୍ଜୀ (ଶିଳ୍ପରୂପମ୍) ପୁସ୍ତକରେ ପ୍ରଦତ୍ତ ମାନଚିତ୍ର ଓ ପ୍ରଚ୍ଛଦପଟ ପ୍ରସ୍ତୁତ କରିଥିବାରୁ ଦୁହେଁ ଅଶେଷ ଧନ୍ୟବାଦର ପାତ୍ର ।

ସତ୍ୟନ୍ତ୍ରାସ ପବ୍ଲିକେଶନ୍‌ସ୍ ଅନୁବାଦ ପୁସ୍ତକଟିକୁ ପାଠକ-ପାଠିକାଙ୍କ ସମ୍ମୁଖରେ ଉପସ୍ଥାପିତ କରିବାର ଦାୟିତ୍ୱ ଗ୍ରହଣ କରିଥିବାରୁ ମୁଁ ତାଙ୍କୁ ଧନ୍ୟବାଦ ଜଣାଉଛି ।

ପରିଶେଷରେ, ଅନୁବାଦ ପୁସ୍ତକଟିର ପାଣ୍ଡୁଲିପି ପ୍ରସ୍ତୁତ କରିବା ସମୟରେ ନାନା ପ୍ରକାର ବାଧାବିଘ୍ନର ସମ୍ମୁଖୀନ ହୋଇଥିବାରୁ ଅନୁବାଦଗତ ତ୍ରୁଟି ସମ୍ବନ୍ଧରେ ମୁଁ ବିଶେଷ ସତର୍କ ହୋଇପାରିନାହିଁ । ତେଣୁ ପୁସ୍ତକରେ ଥିବା ଅନୁବାଦଗତ ତଥା ମୁଦ୍ରଣଗତ ପ୍ରମାଦପ୍ରତି ଦୃଷ୍ଟି ନ ଦେଇ ଭୂସ୍ୱର୍ଗ କାଶ୍ମୀରର ଅତୀତ ଓ ବର୍ତ୍ତମାନର ତଥ୍ୟପୂର୍ଣ୍ଣ କାହାଣୀପ୍ରତି ପାଠକ-ପାଠିକାଙ୍କର ଦୃଷ୍ଟି ଆକର୍ଷିତ ହୋଇପାରିଲେ ମୋର ଶ୍ରମ ସାର୍ଥକ ହେବ ।

ଓଡ଼ିଶା ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର

ନୀଳମଣି ମିଶ୍ର

# ଦ୍ୱିତୀୟ ସଂସ୍କରଣ

ଆନନ୍ଦର କଥା 'କାଶ୍ମୀର ଏକ ସ୍ୱପ୍ନିଳ ବାସ୍ତବ' ପୁସ୍ତକର ଦ୍ୱିତୀୟ ମୁଦ୍ରଣ ହେବାକୁ ଯାଉଛି । ଏଥିରୁ ଜଣାଯାଏ ଯେ, ପୁସ୍ତକଟି ଓଡ଼ିଆ ପାଠକ ପାଠିକାଙ୍କ ମହଲରେ ବେଶ୍ ଆଦୃତ ହୋଇପାରିଛି ।

ପ୍ରସ୍ତୁତ ପୁସ୍ତକରେ ବର୍ଣ୍ଣିତ ବିଷୟବସ୍ତୁ ବ୍ୟତୀତ ବର୍ତ୍ତମାନ କାଶ୍ମୀରର ରାଜନୈତିକ ଆକାଶରେ ବହୁ ପରିବର୍ତ୍ତନର ସୂଚନା ମିଳୁଛି । ସେହି ସମ୍ପର୍କରେ ପ୍ରସ୍ତୁତ ସଂସ୍କରଣରେ କେତେକ ଆଲୋଚନା ସଂଯୋଗ କରାଯାଇଛି ।

ସନ୍ତୋଷ ପବ୍ଲିକେସନ୍ସ୍ ପକ୍ଷରୁ ଏହାର ପ୍ରକାଶନ ଓ ବିତରଣରେ ଯେପରି ଆନ୍ତରିକତା ପ୍ରକାଶ ପାଇଛି ସେଥିଲାଗି ସେ ଅଶେଷ ଧନ୍ୟବାଦର ପାତ୍ର ।

ଦ୍ୱିତୀୟ ସଂସ୍କରଣଟି ପାଠକମାନଙ୍କଦ୍ୱାରା ପୂର୍ବପରି ଆଦୃତ ହେବ ବୋଲି ଆଶାକରେ ।

ଓଡ଼ିଶା ରାଜ୍ୟ ସଂଗ୍ରହାଳୟ — ନୀଳମଣି ମିଶ୍ର
ଭୁବନେଶ୍ୱର, ୩୦ । ୫ । ୧୯୮୫



# ଏକ

ପଶହରା ପର୍ବ ଶେଷ ହେବାପରେ କାଶ୍ମୀର ଘାଟୀର ପ୍ରାକୃତିକ ବାତାବରଣ ବେଶ୍ ଲୋଭମୀୟ ହୋଇଉଠିଲା । ଜଣାପଡ଼ିଲା—ସତେ ଯେପରି, ପ୍ରକୃତିଦେବୀ ରଙ୍ଗ-ବିରଙ୍ଗ ପୋଷାକ-ପରିଚ୍ଛଦରେ ମଣ୍ଡିତା ହୋଇ ଉଚ୍ଛ୍ୱସିତ ଭାବରେ ହସୁଛନ୍ତି ! କି ମାଧୁରୀ ସେ ହସର; କେଡ଼େ ସ୍ୱାଭାବିକ ସେ ହସ ! ପ୍ରକୃତିରାଣୀଙ୍କର ଅଯାଚିତ ଦାନର ବିଭବରେ ବିଭୂଷିତ କାଶ୍ମୀର ପୁଣି ତାଙ୍କର ସହିତ ପ୍ରତିଯୋଗିତା ଆରମ୍ଭ କରିଦେଲା ।

ହଠାତ୍—ସୁଦୂର ଦେଶର ଗଗନଚୁମ୍ବୀ ଘନକୃଷ୍ଣବର୍ଣ୍ଣର ସୁଦୃଶ୍ୟ ପାହାଡ଼ର ଭିନ୍ନ ଭିନ୍ନ ଆକାରର ଶୃଙ୍ଖଳାବଦ୍ଧ ଶିଖରଦେଶକୁ ଅତିକ୍ରମ କରି ମାଡ଼ିଆସିଲା ସାନ୍ଦ୍ର ନୀଳମେଘମାଳା ! ସତେ ଯେପରି, ପ୍ରକୃତିଦେବୀଙ୍କର 'ମେଘ-ଡମ୍ବରୁ ଶାଢ଼ୀ' ଆପେ ଆପେ ବିସ୍ତୃତ ହୋଇଗଲା । ଆତ୍ମଗୋପନକାରୀ ଶତ୍ରୁସୈନ୍ୟ ହଠାତ୍ ଆତ୍ମପ୍ରକାଶ କରି ବିପକ୍ଷ ଦଳଙ୍କୁ ଆଶ୍ଚର୍ଯ୍ୟ ଚକିତ କରିଦେବାପରି କୃଷ୍ଣ ମେଘମାଳା କାଶ୍ମୀର ଉପରେ ଛାଇଗଲା । ଧୀରେ ଧୀରେ ଘନ ଗର୍ଜନର ବାତାବରଣରେ କାଶ୍ମୀର ରାଜ୍ୟ ମୁଖରିତ ହୋଇଉଠିଲା; ଘନ-ଅନ୍ଧକାର ସୃଷ୍ଟିଆଡ଼େ ଘୋଟିଗଲା ଏବଂ ତା'ର ଫଳରେ ସୁନ୍ଦର ବସ୍ତୁ କଦର୍ଯ୍ୟ ଆକାର ଧାରଣ କଲା । ପାହାଡ଼ର ସୌନ୍ଦର୍ଯ୍ୟ କଦାକାର ଦାନବପରି ବିକରାଳ ହୋଇଉଠିଲା, ତା'ପରେ ଅବାରିତ ଗତିରେ ଝରିପଡ଼ିଲା ଝର ଝର ବାରିଧାରା; ବିଜୁଳିର ଚମକରେ ଦିଗଦିଗନ୍ତ ଆଲୋକିତ ହୋଇଉଠିଲା ଏବଂ ସେହି ମେଘ ଗର୍ଜନରେ ଜନସମାଜ ଆତଙ୍କିତ ହୋଇଉଠିଲେ । ସେହି ପ୍ରଳୟଙ୍କରୀ ମେଘ ଗର୍ଜନରେ କାଶ୍ମୀର ଘାଟୀର ଛୋଟ ଛୋଟ ଘରଗୁଡ଼ିକ କମ୍ପି ଉଠିଲା । ପ୍ରକୃତିର ଭୀଷଣ ରୂପ ଦେଖି ଲୋକମାନଙ୍କର କୋମଳ ହୃଦୟ ଭୀତତ୍ରସ୍ତ ହୋଇଉଠିଲା ।

ଲାଗି ଲାଗି ଓ୍ୱଜଦଜଧର ଘନଘୋର ବର୍ଷା ହେବାପରେ ପଶ୍ଚିମ ଆକାଶରୁ ସାମାନ୍ୟ ଆଲୋକର ଆଭାସ ମିଳିବା ସଙ୍ଗେ ସଙ୍ଗେ, ପାଗ ପରିବର୍ତ୍ତନର ସାମାନ୍ୟ ସୂଚନା ମିଳିଲା ଏବଂ ଜଡ଼ଜଗତରେ ମଧ୍ୟ ନବଚେତନା ଜାଗ୍ରତ ହେବା ସଙ୍ଗେ ସଙ୍ଗେ ଖଗକୁଳର କଳକୂଜନରେ ବାତାବରଣ ମୁଖରିତ ହୋଇଉଠିଲା । ପ୍ରାୟ ଦେଢ଼ ହଜାର ବର୍ଷପୂର୍ବେ—ସାତ ହଜାର ଫୁଟ ଉପରେ ପ୍ରତିଷ୍ଠିତ ତଥା ଆଦିଶଙ୍କରଙ୍କଦ୍ୱାରା ପୂଜିତ ଭଗବାନ୍ ଶଙ୍କରଙ୍କ ମନ୍ଦିର ଘଣ୍ଟାଧ୍ୱନିରେ ନିନାଦିତ ହୋଇଉଠିଲା । ଆରାଧନା ସମାପ୍ତ ହେବାପରେ ପୂଜକ ମନ୍ଦିର ପ୍ରାଙ୍ଗଣକୁ ବାହାରି ଆସିଲେ । ତାଙ୍କର ଗୌରବର୍ଣ୍ଣ, ଉନ୍ନତ ଲଲାଟ, ବିଶାଳ ନେତ୍ର, ସୁଦୃଶ୍ୟ ନାସିକା, ନୟନାଭିରାମ କପୋଳ ତଥା ଅସାଧାରଣ ବ୍ୟକ୍ତିତ୍ୱ— ବାସ୍ତବିକ୍ ମନୋମୁଗ୍ଧକର ଥିଲା । ସେ ସୋପାନଶ୍ରେଣୀ ଅତିକ୍ରମ କରୁ କରୁ ହଠାତ୍ ଦଣ୍ଡାୟମାନ ହୋଇ ରହିଗଲେ ।

ତାଙ୍କର ଦୃଷ୍ଟି ନିବଦ୍ଧଥିଲା—ସମ୍ମୁଖରେ ଶ୍ୱେତ ମେଘଖଣ୍ଡରୂପକ ମୁକୁଟ ଧାରଣ କରିଥିବା ଉନ୍ନତ ପର୍ବତର ଶିଖରଦେଶରେ । ସେହି ନେତ୍ରତୃପ୍ତିକର ଦୃଶ୍ୟ ଦେଖିବାମାତ୍ରେ ତାଙ୍କର ଚକ୍ଷୁ ଚଞ୍ଚଳ ହୋଇଉଠିଲା । ପର୍ବତମାଳାର ପାଦଦେଶ ବୃକ୍ଷରାଜିର ରକ୍ତ-ପୀତ ରଙ୍ଗର ପତ୍ରରେ ସୁଶୋଭିତ ହୋଇଥିଲା । ଅପୂର୍ବଛଟାରେ ବିଭୂଷିତ ପର୍ବତମାଳାରେ ବୌଦ୍ଧଭିକ୍ଷୁଙ୍କପରି ନୀରବ ନିସ୍ତବ୍ଧ ଦେବଦାରୁସମୂହ ଶରୀରରେ କୁଞ୍ଚିତ ବସ୍ତ୍ର ଧାରଣ କଲାପରି ଶୋଭା ପାଇବାକୁ ଲାଗିଲେ । ରକ୍ତ, ପୀତ ଓ ସବୁଜ ରଙ୍ଗର ଆକର୍ଷଣ ବାସ୍ତବିକ୍ ଲୋଭନୀୟ ହେବାଫଳରେ ନୟନର ତୃଷ୍ଣା ତୀବ୍ର ହୋଇଉଠିଲା ଏବଂ ସେ ଏକଧ୍ୟାନରେ ସେହି ଆଡ଼କୁ ଚାହିଁରହିଲେ । ଆକସ୍ମିକଭାବରେ ତାଙ୍କର ମସ୍ତକ ଅବନତ ହୋଇଗଲା । ଭୂଭାଗରେ 'ଡଲ୍ ଲେକ୍'ର ଜଳଭାଗ ବରଫରେ ପରିଣତ ହୋଇଯାଇଥିଲା । ମଝିରେ ମଝିରେ ଶୁଭ୍ରମେଘଖଣ୍ଡର କ୍ଷୟବୃଦ୍ଧିଫଳରେ ବରଫ ଉପରେ ଜଳସ୍ରୋତ ବହୁଥିବାପରି ପ୍ରତିଭାତ ହେଲା । ସେଥିରୁ ବେଶ୍ ଜଣାଗଲା—କେବଳ ବରଫର ଆସ୍ତରଣ 'ଡଲ୍ ଲେକ୍'ଟିକୁ ଘୋଡ଼ାଇ ରଖିଛି । ହ୍ରଦର କୂଳେ କୂଳେ ସର୍ପିଳଗତିରେ ସଡ଼କଟିଏ ସମ୍ମୁଖଆଡ଼କୁ ଅଗ୍ରସର ହୋଇ ଦୂର ପାହାଡ଼ର ଅନ୍ତରାଳରେ ଆତ୍ମଗୋପନ କରିଛି ।

ପୂଜକ ପଛକୁ ବୁଲାପଡ଼ି ମନ୍ଦିରର ଦକ୍ଷିଣଭାଗରେ ଆସି ଛିଡ଼ାହେଲେ ! ଦୂର ପର୍ବତର ଆକାଶଚୁମ୍ବୀ ଶିଖରଦେଶ ଝଲସି ଉଠିଲା । ଜଣାପଡ଼ିଲା—

ସତେ ଯେପରି, କେହିଜଣେ ଅଦ୍ଭୁତକର୍ମା ବ୍ୟକ୍ତି ତରଳ ରୌପ୍ୟଧାର ତା'ରି ଉପରେ ଢାଳିଦେଇଛନ୍ତି । ତୁଷାରପାତ ଆରମ୍ଭ ହୋଇଯାଇଥିଲା । ଭୂଭାଗର ବିସ୍ତୀର୍ଣ୍ଣ ପ୍ରାନ୍ତର; ତା' ଉପରେ ଅସ୍ତବ୍ୟସ୍ତ ଗତିରେ 'ଝେଲମ୍'ର ପ୍ରବାହ ଓ ହଳଦୀ ରଙ୍ଗର ପତ୍ରରେ ଆଚ୍ଛାଦିତ ଉନ୍ନତ 'ସଫେଦା' ଗଛର ପଙ୍‌କ୍ତି; ବାସ୍ତବରେ ଦର୍ଶନୀୟ ହୋଇଉଠିଲା । ବାରମ୍ବାର ଦର୍ଶକର ଦୃଷ୍ଟିକୁ ଆକର୍ଷଣ କରୁଥିଲା ସେ ଦୃଶ୍ୟ ! ତା'ରି ମଧ୍ୟଭାଗରେ ରକ୍ତରଞ୍ଜିତ 'ଚିନାର' ବୃକ୍ଷର ରକ୍ତିମ ଆଭା ସେ ଶୋଭାକୁ ବିଶେଷଭାବରେ ବର୍ଦ୍ଧିତ କରୁଥିଲା । ସୃଜକ ଅନେକସମୟ ପର୍ଯ୍ୟନ୍ତ ସୃଷ୍ଟିର ବିଭୋରତାରେ ନିଜକୁ ଭୁଲାଇ ରଖିଲେ । ତତ୍‌କ୍ଷଣାତ୍ ଏକ ବିକୃତ ଶବ୍ଦରେ ସେ ଚମକି ପଡ଼ିଲେ; ତାଙ୍କର ତନ୍ଦ୍ରା ଭଙ୍ଗ ହେଲା; କିନ୍ତୁ ସେ ଆହୁରି କେତେ ସମୟ ଧରି ସେହି ଅବର୍ଣ୍ଣନୀୟ ସୌନ୍ଦର୍ଯ୍ୟ ଅବଲୋକନରେ ମଗ୍ନ ହେବାକୁ ଚାହୁଁଥିଲେ । ସେ ପଛକୁ ଫେରିପଡ଼ି ମନ୍ଦିରର ପୃଷ୍ଠଦେଶକୁ ଚାଲିଗଲେ । 'ଡାଲ ଲେକ୍'ର 'ଫ୍ଲୋଟିଙ୍ଗ ଗାର୍ଡେନ୍‌ସ୍', ଆକର୍ଷକ 'ହାଉସ୍‌ବୋଟ୍' ଓ ହୋଲି ଡଙ୍ଗାର ଚମତ୍କାର ଦୃଶ୍ୟ ଏବଂ ତା'ରି ପୃଷ୍ଠଭୂମିରେ ପତ୍ରହୀନ ବୃକ୍ଷପରି ପରିଶୋଭିତ ଅସଂଖ୍ୟ ଟିଣଛପରଯୁକ୍ତ କୁଟୀରରେ ପରିପୂର୍ଣ୍ଣ ବିଶାଳ ନଗରୀ ଆଡ଼କୁ ସେ ଏକଲୟରେ ଚାହିଁରହିଲେ । ଅନେକ ସମୟ ପର୍ଯ୍ୟନ୍ତ ଏକଧ୍ୟାନରେ ଚାହିଁ ରହିବାଫଳରେ ତାଙ୍କର ଆଖି ଝଲସି ଉଠିଲା । ନଗରର ମଧ୍ୟଭାଗରେ 'ହରି ପର୍ବତ' ଉପରେ ସମ୍ରାଟ୍ ଆକ୍‌ବରଙ୍କଦ୍ୱାରା ନିର୍ମିତ ଦୁର୍ଗ ତାଙ୍କ ବିଚାରଧାରାରେ ବାଧା ସୃଷ୍ଟିକଲା । ଆହୁରି ମଧ୍ୟ ତାଙ୍କ ବିଚାରଧାରାରେ ବ୍ୟାଘାତ ସୃଷ୍ଟିକଲା—କାଶ୍ମୀରର ଅତୀତ କାହାଣୀ ଓ ପୂର୍ବପୁରୁଷଙ୍କ କୀର୍ତ୍ତିଗାଥା ! ସେ ହାଇଦେଶକୁ ଆଉଜି ଛିଡ଼ା ହୋଇ ରହିଲେ; ଧୀରେ ଧୀରେ ତାଙ୍କର କଳ୍ପନାପଟରେ ଅତୀତ ଇତିହାସର ପୃଷ୍ଠା ଓଲଟିବାକୁ ଲାଗିଲା ।

ମହାଭାରତ-ଯୁଗର ବୀର ଜରାସନ୍ଧ କାଶ୍ମୀର ନରେଶ ଗୋନନ୍ଦଙ୍କୁ ନିଜ ସପକ୍ଷରେ ସାହାଯ୍ୟ କରିବାଲାଗି ଅନୁରୋଧ କରିଥିଲେ । ଯାଦବମାନଙ୍କ ବିପକ୍ଷରେ ସେ ଆୟୋଜନ କରୁଥିଲେ ଏକ ଭୂମୂଳ ଅଭିଯାନ । ଗୋନନ୍ଦ ସସୈନ୍ୟ ଜରାସନ୍ଧଙ୍କ ସାହାଯ୍ୟଲାଗି ପ୍ରସ୍ଥାନ କଲେ । ସେ ମଥୁରାରେ ଉପସ୍ଥିତ ହୋଇ ନଗରକୁ ଚତୁର୍ଦ୍ଦିଗରୁ ଅବରୋଧ କରିବା ସଙ୍ଗେ ସଙ୍ଗେ ସମଗ୍ର ଯାଦବ-କୁଳକୁ ପ୍ରତିଦ୍ୱନ୍ଦ୍ୱିତାଲାଗି ଆହ୍ୱାନ ଜଣାଇଲେ । ଘୋରତର ଯୁଦ୍ଧ ଆରମ୍ଭ ହେଲା । ଦିନକୁ ଦିନ ମଥୁରାର ଯାଦବମାନେ ବଳହୀନ ହୋଇପଡ଼ିଲେ । ଠିକ୍ ସେତିକି-

ବେଳେ ପ୍ରବଳ-ପରାକ୍ରମଶାଳୀ ଯାଦବବୀର ବଳରାମ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହେଲେ । ଗୋନନ୍ଦଙ୍କ ସହିତ ବଳରାମଙ୍କର ଘୋର ଦ୍ୱନ୍ଦ୍ୱଯୁଦ୍ଧ ଆରମ୍ଭ ହେଲା । ସେହି ଲୋମହର୍ଷଣକାରୀ ଯୁଦ୍ଧରେ ଗୋନନ୍ଦ ଇହଲୀଳା ସାଙ୍ଗ କଲେ ଓ ଯାଦବମାନେ ବିଜୟୀ ହେଲେ ।

ଗୋନନ୍ଦଙ୍କ ସ୍ୱର୍ଗପ୍ରୟାଣପରେ ତାଙ୍କ ପୁତ୍ର ଦାମୋଦର କାଶ୍ମୀରର ରାଜସିଂହାସନ ଆରୋହଣ କଲେ । ରାଜା ଦାମୋଦର ଥିଲେ ସାହସୀ ଓ ଅଦ୍ଭୁତ ବଳବିକ୍ରମଶାଳୀ । ତେଣୁ ପିତୃ-ବୈରତାର ପ୍ରତିଶୋଧନିମିତ୍ତ ସେ ସାହସ ବାନ୍ଧି ଅଗ୍ରସର ହେଲେ । ଏତିକବେଳେ ଉପଯୁକ୍ତ ଅବସର ମିଳିଗଲା । ଗାନ୍ଧାର ନରେଶ ନିଜର ପରମାସୁନ୍ଦରୀ କନ୍ୟାର ବିବାହଲାଗି ଏକ ସ୍ୱୟମ୍ବର ସଭାର ଆୟୋଜନ କଲେ । ସେହି ସ୍ୱୟମ୍ବର ସଭାକୁ ଯାଦବମାନେ ନିମନ୍ତ୍ରିତ ହୋଇଥିଲେ । କାଶ୍ମୀରରାଜ ଦାମୋଦର ନିଜର ସୈନ୍ୟସାମନ୍ତ ନେଇ ଗାନ୍ଧାର ଦେଶରେ ଉପସ୍ଥିତ ହେଲେ । ତା'ପରେ ସେହି ଆନନ୍ଦୋତ୍ସବ ଆତଙ୍କପୂର୍ଣ୍ଣ ଉତ୍ସବରେ ପରିଣତ ହୋଇଗଲା; କାରଣ ଯାଦବ ଓ କାଶ୍ମୀରୀମାନଙ୍କମଧ୍ୟରେ ପ୍ରବଳ ଯୁଦ୍ଧ ଆରମ୍ଭ ହୋଇଗଲା । ଯାଦବପତି ଶ୍ରୀକୃଷ୍ଣ ନିଜ ଦଳର ନେତୃତ୍ୱ ଗ୍ରହଣ କଲେ । ପରିଣାମରେ ଭଗବାନ୍ ଶ୍ରୀକୃଷ୍ଣଙ୍କ ସୁଦର୍ଶନ ଚକ୍ରରେ ରାଜା ଦାମୋଦର ବୀରଗତି ଲାଭ କଲେ । ତାଙ୍କପରେ, ପୁଣି କାଶ୍ମୀର ରାଜସିଂହାସନର ଉତ୍ତରାଧିକାରୀଲାଗି ପ୍ରଶ୍ନ ଉଠିଲା । ଯଦୁପତି ଶ୍ରୀକୃଷ୍ଣ ରାଜା ଦାମୋଦରଙ୍କ ଗର୍ଭବତୀ ପତ୍ନୀ ପରମାସୁନ୍ଦରୀ ଯଶୋମତୀଙ୍କୁ କାଶ୍ମୀର ସିଂହାସନରେ ଅଭିଷିକ୍ତ କରାଇବାଲାଗି ନିଷ୍ପତ୍ତି କଲେ । କିନ୍ତୁ ଏଥିରେ ଯାଦବମାନଙ୍କ ପକ୍ଷରୁ ଆପତ୍ତି ଉଠିଲା । ଶ୍ରୀକୃଷ୍ଣ ସମସ୍ତଙ୍କୁ ଆଶ୍ୱାସନା ଦେଇ କହିଲେ—

"କାଶ୍ମୀରାଃ ପାର୍ବତୀ ତତ୍ର

.............. ...

ନାବଜ୍ଞେୟଃ ସ ଦୁଷ୍ଟୋଽପି

ବିଦୁଷା ଭୂତି ମିଚ୍ଛତା ।"

ଅର୍ଥାତ୍—କାଶ୍ମୀର ଦେଶ ହେଉଛି ପାର୍ବତୀସ୍ୱରୂପ ଏବଂ ସେଠାକାର ରାଜା ସାକ୍ଷାତ୍ ଶିବଙ୍କର ଅବତାର । ତେଣୁ ସେ ଦୁଷ୍ଟ ହେଲେ ମଧ୍ୟ କଲ୍ୟାଣ ଇଚ୍ଛା କରୁଥିବା ବିଦ୍ୱାନ୍‌ମାନଙ୍କପକ୍ଷରେ ସେ ସମ୍ମାନାର୍ହ ଅଟନ୍ତି ।

ଯୁଗପରେ ଯୁଗ ପରିବର୍ତ୍ତିତ ହେବାକୁ ଲାଗିଲା । ମହାନ୍-ପରାକ୍ରମୀ ରାଜା ରାମଦେବ ତା'ପରେ କାଶ୍ମୀର ସିଂହାସନରେ ଅଭିଷିକ୍ତ ହୋଇ, ପାଞ୍ଚଶତ ଯୋଦ୍ଧାଙ୍କୁ ପରାଜିତ କରି ପୂର୍ବୋପସାଗରପର୍ଯ୍ୟନ୍ତ ନିଜ ରାଜ୍ୟର ସୀମା ବୃଦ୍ଧି କରାଇଲେ ।

ସମୟର ଚକ୍ର ଗଡ଼ିଚାଲିଲା । ଦିନକୁ ଦିନ କାଶ୍ମୀରର ବୈଭବ ବୃଦ୍ଧି ଲାଭ କଲା । ମୌର୍ଯ୍ୟସମ୍ରାଟ୍ ଅଶୋକଙ୍କ ରାଜତ୍ୱବେଳକୁ କାଶ୍ମୀର ଏକ ବୈଭବଶାଳୀ ରାଜ୍ୟରେ ପରିଣତ ହୋଇଥିଲା । ପ୍ରିୟଦର୍ଶୀ ଅଶୋକ ଛିଆନବେ ଲକ୍ଷ ପ୍ରାସାଦବିମଣ୍ଡିତ 'ଶ୍ରୀନଗର' ନାମକ ଏକ ଭବ୍ୟନଗରର ସ୍ଥାପନା କରାଇଲେ । ଧର୍ମାଶୋକ ଶ୍ରୀନଗରମଧ୍ୟରେ ବଡ଼ ବଡ଼ ସ୍ତୂପମାନ ସ୍ଥାପନ କରିବା ସଙ୍ଗେ ସଙ୍ଗେ ପାଞ୍ଚଶତ ବିହାର ପ୍ରତିଷ୍ଠା କରି ବୌଦ୍ଧଧର୍ମର ପ୍ରସାର ଓ ପ୍ରଚାର କରାଇଲେ । ସମ୍ରାଟ୍ ଅଶୋକଙ୍କ ଅନ୍ତେ ତାଙ୍କର ଅନ୍ୟତମ ପୁତ୍ର ଜଳୌକ କାଶ୍ମୀର ଭୂଖଣ୍ଡର ଅଧୀଶ୍ୱର ହେଲେ । ମହାରାଜ ଅଶୋକ ନିଜର ଜୀବଦ୍ଦଶା ମଧ୍ୟରେ ପୁତ୍ର ଜଳୌକଙ୍କୁ କାଶ୍ମୀରର ଶାସକରୂପେ ନିର୍ବାଚିତ କରିଥିଲେ । ସେ ନିଜ ପିତାଙ୍କସଦୃଶ ବୀର, ନ୍ୟାୟପ୍ରିୟ ତଥା ବିଦ୍ୱାନ୍ ଥିଲେ ମଧ୍ୟ ଶୈବ-ମତାବଲମ୍ବୀରୂପେ ପ୍ରଖ୍ୟାତ ହେଲେ । ତା' ହେଲେ ମଧ୍ୟ ସେ ବୌଦ୍ଧଧର୍ମର ପ୍ରଚାର ଓ ପ୍ରସାର କାର୍ଯ୍ୟରେ କୌଣସି ପ୍ରକାର ବାଧା ଦେଇ ନ ଥିଲେ । ତାଙ୍କ ରାଜତ୍ୱରେ କାହାରିକୁ କୌଣସି ପ୍ରକାର ସୁବିଧାରୁ ବଞ୍ଚିତ କରାଯାଉ ନ ଥିଲା । ଜଳୌକଙ୍କର ରାଜ୍ୟର ସୀମା ଗୋଟିଏ ଦିଗରେ କନ୍ଦହାର ଓ ଅନ୍ୟ ଦିଗରେ କନୌଜ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ସେ ମଧ୍ୟ ନିଜର ଅଦ୍ଭୁତ ଯୋଗଶକ୍ତି ତଥା ବିଚକ୍ଷଣ ପ୍ରତିଭାବଳରେ ଯେ କୌଣସି ଧାତୁକୁ ସ୍ୱର୍ଣ୍ଣରେ ପରିଣତ କରିପାରୁଥିଲେ । ତେଣୁ ପରିଣାମରେ ତାଙ୍କର ପ୍ରଜାମାନେ ଧନଧାନ୍ୟରେ ପରିପୂର୍ଣ୍ଣ ହୋଇ ସ୍ୱର୍ଗୀୟ ସୁଖର ଅଧିକାରୀ ହେବାର ସୌଭାଗ୍ୟ ଲାଭ କଲେ ।

ଖ୍ରୀଷ୍ଟାବ୍ଦ ୧୨୦୦ ଠାରୁ ଆରମ୍ଭ କରି ଖ୍ରୀ: ଅ: ୧୭୦୦ ପର୍ଯ୍ୟନ୍ତ ସମ୍ରାଟ୍ କନିଷ୍କଙ୍କ ରାଜତ୍ୱକୁ ଇତିହାସର ଏକ ପ୍ରଖ୍ୟାତ ଯୁଗ ବୋଲି ଗ୍ରହଣ କରାଯାଏ । ତାଙ୍କ ସମୟରେ, କାଶ୍ମୀରରେ ପୁଣି ବୌଦ୍ଧଧର୍ମର ପ୍ରସାର କ୍ଷିପ୍ରତର ହୋଇ-ଉଠିଲା । ସେହି ସମୟରେ ମହାପଣ୍ଡିତ ନାଗାର୍ଜୁନ ନିଜର ବିଦ୍ୱତ୍ତା ଓ ସ୍ୱଭାବମଧୁର ବାଣୀରେ ବିଖ୍ୟାତ ପଣ୍ଡିତମାନଙ୍କ ସହିତ ଶାସ୍ତ୍ରାର୍ଥ କରି ନିଜ

ଅଦ୍ୱିତୀୟ ପ୍ରତିଭାର ପରିଚୟ ଦେଇଥିଲେ । ତାହା ହିଁ ଥିଲା ବିଶ୍ୱବାସୀଙ୍କୁ କାଶ୍ମୀରର ଦାନ ତଥା କାଶ୍ମୀରର ଗୌରବ । ସମ୍ରାଟ୍ କନିଷ୍କ ଅନେକ ମଠ ଓ ଚୈତ୍ୟ ନିର୍ମାଣ କରିବା ସଙ୍ଗେ ସଙ୍ଗେ 'କନିଷ୍କପୁର' ନାମରେ ଏକ ସୁନ୍ଦର ନଗର ବସାଇଥିଲେ ।

ତା' ପରେ ପରେ କାଶ୍ମୀରର ଭାଗ୍ୟରେଖାରେ କୁଟିଳତା ପରିଲକ୍ଷିତ ହେଲା । ପ୍ରଚଣ୍ଡ ଆକ୍ରମଣ ଚଳାଇ ହୁଣମାନେ 'ଭୂସ୍ୱର୍ଗ' ଅଧିକାର କଲେ । କେବଳ ମନୁଷ୍ୟପଦବାଚୀ ରାକ୍ଷସ 'ମିହିରକୁଳ'ର ଆଧିପତ୍ୟ କାଶ୍ମୀରରେ ପ୍ରତିଷ୍ଠିତ ହେଲା । ସେଭଳି ଦୁର୍ଦ୍ଦାନ୍ତ ବ୍ୟକ୍ତିକୁ କେହି କେବେହେଲେ ହସିଥିବାର ଦେଖି ନ ଥିଲେ କିମ୍ବା ସେ କେବେହେଲେ ଥରେ-ଅଧେ ଯଦି ହସିଥିବେ, ତା'ହେଲେ କୌଣସି ବୀଭତ୍ସ ଦୃଶ୍ୟର ସନ୍ଦର୍ଶନରେ ସିନା; ଅନ୍ୟଥା ନୁହେଁ ।

ମିହିରକୁଳ ଅଧିକାଂଶ ସମୟରେ ବାତାୟନ ନିକଟରେ ବସିରହି ବାହାରଆଡ଼କୁ ଚାହିଁ ରହୁଥିଲା । ଦିନେ ପର୍ବତର ଶିଖରଦେଶରେ ଗୋଟିଏ ବିଶାଳ ହାତୀର ଗୋଡ଼ ଖସିଗଲା ଏବଂ ସେ ନିଜକୁ ସମ୍ଭାଳି ନପାରି ଅଦ୍ଭୁତ ଭାବରେ ଗଡ଼ି ଗଡ଼ି ତଳକୁ ଖସିପଡ଼ିଲା । ସେହି ବୀଭତ୍ସ ଲୋମହର୍ଷଣକାରୀ ଦୃଶ୍ୟ ଦେଖିବାମାତ୍ରେ, ଜୀବନରେ ପ୍ରଥମ ଥରଲାଗି ସେ ଠୋ' ଠୋ' ହୋଇ ଉଚ୍ଛ୍ୱସିତ ଭାବରେ ହସିଉଠିଲା । ତାହା ହିଁ ଥିଲା ତା'ର ଜୀବନରେ ପ୍ରଥମ ଓ ଅନ୍ତିମ ହସ । ତା'ର ଜୀବନରେ ସର୍ବଶ୍ରେଷ୍ଠ ଆମୋଦ ପ୍ରମୋଦ ଥିଲା—ନିର୍ଦ୍ଦୟ ଭାବରେ ନରସଂହାର କରିବା । ସେ ନିଜର ଜୀବନକାଳ ମଧ୍ୟରେ ପ୍ରାୟ ତିନିକୋଟି ଲୋକଙ୍କୁ ସଂହାର କରାଇଥିଲା । କେବଳ ଏତିକିରେ ତା'ର ଜୀବନରେ କ୍ରୂରତାର ପୂର୍ଣ୍ଣଚ୍ଛେଦ ପଡ଼ି ନ ଥିଲା । ଯେତେବେଳେ ସେ ସାଙ୍ଘାତିକ ରୋଗରେ ପୀଡ଼ିତ ହୋଇ ଅସହ୍ୟ ଦୁଃଖ ଭୋଗ କଲା, ସେତିକିବେଳେ ସେ ନିଜକୁ ଲେଲିହାନ ଶିଖାଯୁକ୍ତ ଅଗ୍ନିକୁଣ୍ଡରେ ଝାସ ଦେଇ ଇହକାଳରୁ ମୁକ୍ତିଲାଭ କଲା ।

ସମୟର ରଥ କ୍ଷିପ୍ରଗତିରେ ଗଡ଼ିଚାଲିଲା । ତା'ପରେ କାଶ୍ମୀରରେ କର୍କୋଟକ ବଂଶର ବୀରମାନଙ୍କ ଖଡ଼ଗ ଚମକି ଉଠିଲା ଏବଂ ସେମାନେ କାଶ୍ମୀରର ରାଜସିଂହାସନ ଅଧିକାର କରି ବସିଲେ । ସେହି ବଂଶର ଦୁର୍ଲଭବର୍ଦ୍ଧନ ଛତିଶ ବର୍ଷ; ତାଙ୍କ ସୁପୁତ୍ର ଦୁର୍ଲଭକ ପଚାଶ ବର୍ଷ; ଦୁର୍ଲଭକଙ୍କ ପୁତ୍ର ଚନ୍ଦ୍ରାପୀଡ଼, ତାରାପୀଡ଼ ଓ ଲଳିତାଦିତ୍ୟ ଯଥାକ୍ରମେ ଆଠ ବର୍ଷ, ଚାରି ବର୍ଷ ଏବଂ ଛତିଶ

ବର୍ଷକାଳ କାଶ୍ମୀରର ଶାସନଡୋର ନିଜ ନିଜ ହାତରେ ରଖିଥିଲେ । ତନ୍ମଧ୍ୟରେ ଲଳିତାଦିତ୍ୟଙ୍କ ଶାସନକାଳକୁ କାଶ୍ମୀରର ଏକ ସ୍ୱର୍ଣ୍ଣଯୁଗ ବୋଲି ଅଭିହିତ କରାଯାଏ । ପେକିଂ (ପୀକିଂଗ), ବଦଖଂଶା ତିବ୍ବତ, କନୌଜ ଓ ପଞ୍ଜାବରେ ବିଜୟ-ବୈଜୟନ୍ତୀ ଉଡ଼ାଇବା ସଙ୍ଗେ ସଙ୍ଗେ ସେ ସେହି ରାଜ୍ୟ-ଗୁଡ଼ିକରେ ଶାସନକ୍ଷମତା ଅକ୍ଷୁଣ୍ଣ ରଖି, ଦୀର୍ଘ ବାରବର୍ଷ ପରେ କାଶ୍ମୀର ପ୍ରତ୍ୟାବର୍ତ୍ତନ କରିଥିଲେ । ଏହି ଦିଗ୍‌ବିଜୟରେ ହାତୀ, ଘୋଡ଼ା ଓ ଅସ୍ତ୍ରଶସ୍ତ୍ର ବ୍ୟତୀତ, ସେ ଏଗାର କୋଟି ସ୍ୱର୍ଣ୍ଣମୁଦ୍ରା ହସ୍ତଗତ କରିବାରେ ସମର୍ଥ ହୋଇ ପାରିଥିଲେ । ସେହି ପ୍ରଖ୍ୟାତଯଶା ମହାରାଜଙ୍କଦ୍ୱାରା 'ମାର୍ତ୍ତଣ୍ଡମନ୍ଦିର' ନିର୍ମିତ ହେବା ସଙ୍ଗେ ସଙ୍ଗେ 'ପରିହାସପୁର' ନାମକ ଏକ ସୁନ୍ଦର ନଗର ପ୍ରତିଷ୍ଠିତ ହୋଇଥିଲା । ସେ ସେଥିରେ ଉଚ୍ଚ ଉଚ୍ଚ ଗୃହମହଲଯୁକ୍ତ ପ୍ରାସାଦ ଓ ବିସ୍ତୃତ ଚୈତ୍ୟଯୁକ୍ତ ରାଜବିହାରର ନିର୍ମାଣ କରାଇଥିଲେ । ସେହି ପ୍ରାସାଦମାନ ନିର୍ମାଣ କରାଇବାରେ ତାଙ୍କୁ ଚୌରାଶି ହଜାର ତୋଳା ସୁବର୍ଣ୍ଣ ବ୍ୟୟ କରିବାକୁ ପଡ଼ିଥିଲା । ପ୍ରାୟ ସେତିକ ସହସ୍ର ତୋଳା ରୁପାରେ ସେ 'ଶ୍ରୀପରିହାସକେଶବ'ଙ୍କ ଭବ୍ୟପ୍ରତିମା ନିର୍ମାଣ କରାଇଥିଲେ । ସେ ନିଜେ ଶୈବମତାବଲମ୍ବୀ ଥିଲେ ମଧ୍ୟ ଏକୋଇଶ ଶହ ମହଣ କଂସାରେ ଭଗବାନ୍ ବୁଦ୍ଧଙ୍କର ଏକ ଅନିନ୍ଦ୍ୟସୁନ୍ଦର ପ୍ରତିମା ନିର୍ମାଣ କରାଇ, ଅସଂଖ୍ୟ ବୌଦ୍ଧଜନତାର ଆଶା ଓ ବିଶ୍ୱାସର ପାତ୍ର ହୋଇପାରିଥିଲେ । ତାଙ୍କ ସମୟରେ ଅନେକ କାରୁକାର୍ଯ୍ୟପୂର୍ଣ୍ଣ ଶିବ ଓ ବିଷ୍ଣୁ ମନ୍ଦିର ନିର୍ମିତ ହେବା ସଙ୍ଗେ ସଙ୍ଗେ ଚୌବନ ହାତ ଉଚ୍ଚର ଏକ ପାଷାଣ ସ୍ତମ୍ଭ ନିର୍ମିତ ହୋଇ, ତା'ଉପରେ ପନ୍ନଗାରି ଗରୁଡ଼ଙ୍କର ଏକ ମୂର୍ତ୍ତି ସ୍ଥାପନ କରା-ଯାଇଥିଲା । ତାଙ୍କ ଦରବାରରେ ରାଜକବି ସମ୍ମାନରେ ବିଭୂଷିତ ହୋଇ ମହାକବି ଭବଭୂତି ଅବସ୍ଥାପନ କରିଥିଲେ । ତାଙ୍କ ରାଜ୍ୟରେ କୃଷକମାନେ ଧନଧାନ୍ୟରେ ପରିପୂର୍ଣ୍ଣ ହୋଇ ମହାସୁଖରେ କାଳାତିପାତ କରୁଥିଲେ । ପ୍ରଜାମାନଙ୍କର ଉନ୍ନତି-କଳ୍ପେ ସେ କେତୋଟି ଜଳସେଚନ ପରିଖା ଖୋଦନ କରାଇଥିଲେ ଏବଂ କୃଷି-ଯୋଗ୍ୟ ଜମିଗୁଡ଼ିକୁ ଅଧିକ ଉତ୍ପାଦନକ୍ଷମ କରାଇବାରେ ବିଶେଷ ଦୃଷ୍ଟି ଦେଇଥିଲେ । ଏହା ସଙ୍ଗେ ସଙ୍ଗେ ସେ ଆହୁରି ଏକ ଆଦେଶନାମା ଜାରି କରିଥିଲେ ଯେ ପ୍ରତ୍ୟେକ ଲୋକ ନିଜ ଘରେ କେବଳ ବର୍ଷକ ଚଳିବାଲାଗି ଯେତିକ ଶସ୍ୟ ଆବଶ୍ୟକ, ତା'ଠାରୁ ଅଧିକ ଶସ୍ୟ ରଖିପାରିବେ ନାହିଁ । ଏଥିସତ୍ତ୍ୱେ ଆହୁରି ମଧ୍ୟ କୃଷକମାନେ ରାଜାଙ୍କଠାରୁ ଆଶ୍ୱାସନା ଲାଭ କରିଥିଲେ

ଯେ ଦେଶରେ ଅନାବୃଷ୍ଟି କିମ୍ବା ଅନ୍ୟ କୌଣସି କାରଣରୁ ଶସ୍ୟ-ଉତ୍ପାଦନରେ ବାଧା ପ୍ରାପ୍ତ ହେଲେ, ସେମାନଙ୍କ ଭରଣ-ପୋଷଣ ରାଜକୋଷ ପକ୍ଷରୁ କରାଯିବ ।

ଏ ପ୍ରକାର ଆଦେଶନାମା ଅନୁସାରେ ଲଳିତାଦିତ୍ୟ ଓ ତାଙ୍କ ବଂଶର ଅନ୍ୟାନ୍ୟ ରାଜାମାନଙ୍କ ବ୍ୟତୀତ ପରବର୍ତ୍ତୀ ରାଜବଂଶଧରମାନେ ମଧ୍ୟ ଶାସନକାର୍ଯ୍ୟ ପରିଚାଳନା କରୁଥିଲେ ।

ଏହାପରେ ଇତିହାସର ଚକ୍ର ଘୂରିବାକୁ ଲାଗିଲା । ସନ୍ ୧୦୨୧ ସାଲରେ କାଶ୍ମୀରରାଜ ସଂଗ୍ରାମ ରାଜ କାବୁଲ୍‌ର ଶାସକ ତ୍ରିଲୋଚନ ପାଳଙ୍କ ଅନୁରୋଧରେ ମହମ୍ମଦ ଗଜନୀଙ୍କ ବିରୁଦ୍ଧରେ ସୈନ୍ୟ ସାହାଯ୍ୟ କଲେ । କିନ୍ତୁ ନିୟତିର ନିର୍ଦ୍ଦେଶ ଥିଲା ଭିନ୍ନ ପ୍ରକାର; ପରିଣାମରେ ମହମ୍ମଦ ଗଜନୀ ବିଜୟଶ୍ରୀରେ ବିମଣ୍ଡିତ ହେଲେ ଏବଂ ତ୍ରିଲୋଚନ ପାଳ ଯୁଦ୍ଧକ୍ଷେତ୍ରରୁ ପଳାୟନ କରି ଅନ୍ୟତ୍ର ଆତ୍ମଗୋପନ କଲେ । ତାଙ୍କର ପୁତ୍ର, ପୌତ୍ର ଓ ଜ୍ଞାତି କୁଟୁମ୍ବମାନେ ପ୍ରାଣଭୟରେ କାବୁଲ୍ ପରିତ୍ୟାଗ କରି କାଶ୍ମୀରରେ ଆସି ଆଶ୍ରୟ ଗ୍ରହଣ କଲେ । ମହମ୍ମଦ ଗଜନୀ ଆଉ କାଶ୍ମୀର ଆଡ଼କୁ ଅଗ୍ରସର ହେଲେ ନାହିଁ । ତେଣୁ କାଶ୍ମୀର ରାଜ-ସିଂହାସନ ଉପରେ କୌଣସି ବିପତ୍ତିର ଆଶଙ୍କା ରହିଲା ନାହିଁ ।

କାଶ୍ମୀର ରାଜବଂଶରେ ମହାରାଜା ହର୍ଷଦେବଙ୍କ ବାରବର୍ଷ ରାଜତ୍ୱ (ଖ୍ରୀ: ଅ: ୧୦୮୯—୧୧୦୧)କୁ ଏକ ମହତ୍ତ୍ୱପୂର୍ଣ୍ଣ ଶାସନକାଳ ବୋଲି ଗ୍ରହଣ କରାଯାଏ । ଏହି ଅଳ୍ପକାଳମଧ୍ୟରେ ଯଶସ୍ୱୀ ହର୍ଷଦେବ ସାହିତ୍ୟ, କଳା, ବିଜ୍ଞାନ ଆଦି ସମସ୍ତ କ୍ଷେତ୍ରରେ ଆଶ୍ଚର୍ଯ୍ୟ ଧରଣର ପ୍ରଗତି କରି କୀର୍ତ୍ତିଧ୍ୱଜା ଉଡ଼ାଇ ପାରିଥିଲେ । ତାଙ୍କର ପ୍ରଧାନମନ୍ତ୍ରୀ ଚମ୍ପକଙ୍କ ପୁତ୍ର କଲ୍‌ହଣଙ୍କଦ୍ୱାରା 'ରାଜତରଙ୍ଗିଣୀ' ନାମକ ଅଦ୍ୱିତୀୟ ସଂସ୍କୃତ ଐତିହାସିକ କାବ୍ୟଗ୍ରନ୍ଥ ପ୍ରଣୀତ ହୋଇଥିଲା ।

ତା'ପରେ କାଶ୍ମୀରରେ ଆରମ୍ଭ ହେଲା ବିଶ୍ୱାସଘାତକତାର ଦୁର୍ଭାଗ୍ୟ-ଜନକ କାହାଣୀ । ମହାରାଜା ସିଂହଦେବଙ୍କ ରାଜତ୍ୱକାଳରେ 'ସେଟ୍ଟ୍ରାଭ୍'ନିବାସୀ ଶାହମୀର ନିଜ ପିତୃବ୍ୟଙ୍କଠାରୁ ପରାଜିତ ହୋଇ, ତିବ୍ବତର ରାଜକୁମାର ରେଂଚେନ୍‌ଶାହ ଓ ଶତ୍ରୁମାନଙ୍କଠାରୁ ପରାଜିତ ହୋଇ 'ଦଂଦସ୍ଥାନ'ର ଶାସକ ଲଂକରଚକ ଆସି କାଶ୍ମୀର ରାଜ୍ୟରେ ଶରଣ ପଶିଲେ । ସିଂହଦେବ ଏହି

ରାଜନୈତିକ ଶରଣାର୍ଥୀମାନଙ୍କୁ ସମ୍ମାନାସ୍ପଦ ଅତିଥିରୂପେ ଗ୍ରହଣ କରିବା ସଙ୍ଗେ ସଙ୍ଗେ ନିଷ୍କର ଜାଗିର ପ୍ରଦାନ କରି ଅଭ୍ୟର୍ଥନା କଲେ ।

ଖ୍ରୀ:ଅ: ୧୩୨୨ ସାଲରେ ଚେଙ୍ଗିଜ୍ ଖାଁଙ୍କ ବଂଶଧର ଦୁଲ୍‌ଚ ଖାଁ ସତୁରି ହଜାର ଅଶ୍ୱାରୋହୀଙ୍କ ସମେତ ଆସି କାଶ୍ମୀର ଉପରେ ଆକ୍ରମଣ କଲେ । କିନ୍ତୁ ସିଂହଦେବ ଏହି ଆକ୍ରମଣର ସମ୍ମୁଖୀନ ହେବାରେ ଅସମର୍ଥ ହୋଇ, ରାଜସିଂହାସନ ତ୍ୟାଗ କରି 'କଣ୍ଟଚବାର' ନାମକ ସ୍ଥାନରେ ଆତ୍ମଗୋପନ କଲେ । ଏହି ସୁବର୍ଣ୍ଣ ସୁଯୋଗରେ ଆତତାୟୀ ଦୁଲ୍‌ଚ ଖାଁ ହଜାର ହଜାର ନିରୀହ ପ୍ରାଣୀଙ୍କୁ ବଧ କରିବା ସଙ୍ଗେ ସଙ୍ଗେ ଶ୍ରୀନଗର ସହରକୁ ଧ୍ୱଂସ କରିଦେଲେ । ସେ ନିଜର ସାମର୍ଥ୍ୟ ଅନୁସାରେ ବହୁ ଧନରତ୍ନ ଲୁଟ୍‌କରି ସ୍ୱଦେଶକୁ ବାହୁଡ଼ି ଗଲେ । ଆକ୍ରମଣକାରୀର ଆତଙ୍କରୁ କାଶ୍ମୀରବାସୀ ମୁକ୍ତ ହେବାମାତ୍ରେ ରାମଚନ୍ଦ୍ର ନାମକ ଜନୈକ ବ୍ୟକ୍ତି ନିଜକୁ କାଶ୍ମୀରର ଶାସକରୂପେ ଘୋଷଣା କରି ଶାସନସୂତ୍ର ଅଧିକାର କଲେ; କିନ୍ତୁ ତାଙ୍କର ସେ ଷଡ଼ଯନ୍ତ୍ର ବେଶୀ ଦିନ ତିଷ୍ଠିପାରିଲା ନାହିଁ । ଶରଣାର୍ଥୀରୂପେ ଆଶ୍ରୟ ଗ୍ରହଣ କରିଥିବା ରେଂଚେଶାହ ଓ ଶାହମୀର ଉଭୟ ମିଳିତଭାବରେ ଷଡ଼ଯନ୍ତ୍ର କରି ରାଜା ରାମଚନ୍ଦ୍ରଙ୍କୁ ହତ୍ୟା କଲେ । ଏହି ଦୁର୍ଭାଗ୍ୟଜନକ ହତ୍ୟାକାଣ୍ଡ ପରେ ରେଂଚେଶାହ କାଶ୍ମୀରର ସର୍ବେସର୍ବା ହୋଇ ବସିଲେ । ସେ ବଳପୂର୍ବକ ରାଜା ରାମଚନ୍ଦ୍ରଙ୍କ ପରମା ସୁନ୍ଦରୀ ପୁତ୍ରୀ କୁହାରାଣୀଙ୍କୁ ବିବାହ କରି ସଦରୁଦ୍ଦୀନ ନାମରେ କାଶ୍ମୀର ରାଜସିଂହାସନରେ ଅଭିଷିକ୍ତ ହେଲେ ।

କିନ୍ତୁ ଏହି ବିଶ୍ୱାସଘାତକ ଅତ୍ୟାଚାରୀର ଶାସନ ବେଶୀ ଦିନ ସ୍ଥାୟୀ ହେଲା ନାହିଁ । ମାତ୍ର ଅଢ଼େଇ ବର୍ଷପରେ ତାଙ୍କର ଅକାଳ ବିୟୋଗ ହୋଇ-ଯାଆନ୍ତେ ପୂର୍ବତନ ରାଜା ସିଂହଦେବଙ୍କ ଅନୁଜ ଉଦୟନ ଦେବ ପୁଣି ନିଜ ବଂଶର ଗୌରବ ରକ୍ଷା କରି କାଶ୍ମୀର ସିଂହାସନ ଅଧିକାର କଲେ । ସେ ବିଧବା କୁହାରାଣୀଙ୍କୁ ବିବାହ କରି ସୁରୁଚିରୂପେ ଶାସନକାର୍ଯ୍ୟ ପରିଚାଳନା କଲେ । କିନ୍ତୁ ରାଜା ଉଦୟନ ଦେବ କୂଟନୀତିରେ ଧୂରୀଣ ନ ଥିବାରୁ ସେ ଷଡ଼୍‌ଯନ୍ତ୍ରକାରୀଙ୍କ ପ୍ରତି ସଜାଗ ହୋଇ ପାରିଲେ ନାହିଁ । ପୂର୍ବରୁ ଷଡ଼ଯନ୍ତ୍ରକାରୀ ଶାହମୀର ନିଜର କୂଟଚକ୍ର ବଳରେ ଧୀରେ ଧୀରେ ଉଦୟନ ଦେବଙ୍କର ବିଶ୍ୱାସପାତ୍ର ହୋଇଉଠିଲେ । ଶେଷକୁ ରାଜା ଉଦୟନ ଦେବ ଶାହମୀରଙ୍କ ଷଡ଼ଯନ୍ତ୍ରର ପୂର୍ଣ୍ଣ ଶିକାର ହୋଇ ତାଙ୍କୁ ପରମବିଶ୍ୱାସୀ ବନ୍ଧୁରୂପେ ଗ୍ରହଣ କରିବା ସଙ୍ଗେ ସଙ୍ଗେ

ରାଜ୍ୟର ପ୍ରଧାନମନ୍ତ୍ରୀ ପଦରେ ନିଯୁକ୍ତ କଲେ । ଖ୍ରୀ: ଅ: ୧୩୩୧ ସାଲରେ ଡଖନ୍ ନାମକ ଏକ ତାତାର ସରଦାର କାଶ୍ମୀର ଆକ୍ରମଣ କଲା । ଆକ୍ରମଣର ପ୍ରଚଣ୍ଡତା ସହ୍ୟ କରି ନ ପାରି ରାଜା ଉଦୟନ ଦେବ ଯୁଦ୍ଧକ୍ଷେତ୍ରରେ ଛତ୍ରଭଙ୍ଗ ହେବା ସଙ୍ଗେ ସଙ୍ଗେ କାଶ୍ମୀର ତ୍ୟାଗ କରି ଅନ୍ୟତ୍ର ପଳାୟନ କଲେ । କିନ୍ତୁ ରାଜମହିଷୀ କୁହାରାଣୀ ଅପୂର୍ବ ବୀରତ୍ୱ ପ୍ରଦର୍ଶନ କରି ଆତତାୟୀ ଡଖନ୍‌ର ଆକ୍ରମଣକୁ ପ୍ରତିହତ କରିବା ସଙ୍ଗେସଙ୍ଗେ ତାକୁ କାଶ୍ମୀର ତ୍ୟାଗକରି ପଳାଇଯିବାକୁ ବାଧ୍ୟ କଲେ । ଆତଙ୍କଜନକ ପରିସ୍ଥିତିର କବଳରୁ କାଶ୍ମୀର ରାଜ୍ୟ ମୁକ୍ତ ହେବା ମାତ୍ରେ ପୁଣି ଶାହମୀରଙ୍କ ଷଡ଼ଯନ୍ତ୍ର ଦେଶରେ ପ୍ରବଳ ହୋଇଉଠିଲା । ଶାହମୀର ମିତତାର ନିମ୍ନତମ ସୋପାନକୁ ଓହ୍ଲାଇ ଯାଇ କାଶ୍ମୀରର ଭାଗ୍ୟନିୟନ୍ତା ହେବାକୁ ପ୍ରବଳ ଅଭିଳାଷୀ ହୋଇଉଠିଲେ । ରାଜମହିଷୀ କୁହାରାଣୀଙ୍କୁ ଅଙ୍କଶାୟିନୀରୂପେ ଲାଭକରି କାଶ୍ମୀରର ଶାସକ ହେବାର ବିଶ୍ୱାସଘାତମୂଳକ ତାଙ୍କର ପ୍ରସ୍ତାବ ଶୁଣି କୁହାରାଣୀ ଆହତ ସିଂହୀପରି କ୍ରୁଦ୍ଧା ହୋଇଉଠିଲେ । ନିଜର ଦୁରଭିସନ୍ଧିମୂଳକ ଅଭିଳାଷରେ ତୁଷାରପାତ ହେବାର ଜାଣିପାରି ଶାହମୀର ଅନ୍ୟପ୍ରକାର ଚକ୍ରାନ୍ତପୂର୍ଣ୍ଣ ମାର୍ଗରେ ଅଗ୍ରସର ହେଲେ । ସେ ସୈନ୍ୟବାହିନୀ ମଧ୍ୟରେ ବିଷ ବୀଜ ବପନ କରାଇ ମହାରାଣୀଙ୍କ ଅନ୍ତଃପୁରକୁ ଅବରୋଧ କଲେ । କିନ୍ତୁ ମହାରାଣୀଙ୍କ ବିଶ୍ୱାସୀ ସେବକମାନେ ଷଡ଼ଯନ୍ତ୍ରକାରୀକୁ ଉପଯୁକ୍ତ ଶିକ୍ଷା ଦେବାର ଅଭିଳାଷରେ ଆକ୍ରମଣର ତୀବ୍ର ପ୍ରତିରୋଧ କଲେ । ଉଭୟ ପକ୍ଷର ସମର୍ଥକମାନଙ୍କ ମଧ୍ୟରେ ପ୍ରବଳ ଯୁଦ୍ଧ ଆରମ୍ଭ ହୋଇଗଲା । ଅନେକ ଦିନ ପର୍ଯ୍ୟନ୍ତ ସେ ଯୁଦ୍ଧର ଅବସାନ ହେଲା ନାହିଁ । ମହାରାଣୀଙ୍କ ଶକ୍ତି ଦିନକୁ ଦିନ କ୍ଷୟ ହେବାକୁ ଲାଗିଲା ଏବଂ ନିରୀହ ବିଶ୍ୱାସପାତ୍ର ସେବକମାନଙ୍କୁ ନିର୍ମମଭାବରେ ହତ୍ୟାମୁହଁକୁ ଠେଲି ଦେଇ ସ୍ୱାଭିମାନ ବଜାୟ ରଖିବାଲାଗି କୁହାରାଣୀ ଆଉ ପ୍ରସ୍ତୁତ ହେଲେ ନାହିଁ । ତେଣୁ ବାଧ୍ୟ ହୋଇ ନିଜର ଅନିଚ୍ଛାସତ୍ତ୍ୱେ, ଶାହମୀରଙ୍କ ପ୍ରସ୍ତାବରେ ସମ୍ମତି ପ୍ରଦାନ କରି ଆତ୍ମସମର୍ପଣ କଲେ । ମହାରାଣୀଙ୍କ ପ୍ରସ୍ତାବ ଶୁଣି ଶଠ ଶାହମୀରଙ୍କ ହୃଦୟରେ ଆନନ୍ଦର ଲହରୀ ଉଦ୍‌ବେଳିତ ହୋଇଉଠିଲା । ସେ ଖୁବ୍ ଆଡ଼ମ୍ବର-ସହକାରେ ବିବାହର ଆୟୋଜନ କଲେ । ବିବାହ ଉତ୍ସବ ପରେ ନାନାପ୍ରକାର ମୂଲ୍ୟବାନ୍ ଆଭୂଷଣ ଓ ସୁନ୍ଦର ବସ୍ତ୍ରରେ ସଜ୍ଜିତା ହୋଇ ବିଷଣ୍ଣବଦନା କୁହାରାଣୀ ବିଶ୍ୱାସଘାତକ ମିତ ଶାହମୀରଙ୍କ ସହିତ ମଧୁଯାମିନୀ ବିତାଇବା ଲାଗି ଅଗ୍ରସର ହେଲେ । କିନ୍ତୁ ଶାହମୀରଙ୍କ ପ୍ରକୋଷ୍ଠରେ ପ୍ରବେଶ କରିବାମାତ୍ରେ ନିଜ ବକ୍ଷରେ ଛୁରିକାଘାତ କରି ଇହଲୀଳା ସାଙ୍ଗ କଲେ । କୃତଘ୍ନ ଶାହମୀରଙ୍କ

ପ୍ରବଳ ଦୂର୍ବାସନାରେ ଏପରି ତୁଷାରପାତ ହେବାର ଦେଖି ସେ କିଂକର୍ତ୍ତବ୍ୟ-ବିମୂଢ଼ ହୋଇପଡ଼ିଲେ ।

କାଳର ବିଚିତ୍ରତା ବୁଝିବା ଅତ୍ୟନ୍ତ କଠିନ । କାହାର ସମ୍ପତ୍ତି, ଭୋଗ କଲା କିଏ ? ସେହି ଦିନଠାରୁ କାଶ୍ମୀରର ଇତିହାସରୁ ହିନ୍ଦୁ ଶାସନ ଲୋପ ପାଇ ଶାସନକ୍ଷେତ୍ରରେ ଇସ୍‌ଲାମ୍ ଧର୍ମାବଲମ୍ବୀଙ୍କ ପ୍ରାଧାନ୍ୟ ଅନେକ ଦିନ ପର୍ଯ୍ୟନ୍ତ ରହିଲା । ଶାହମୀରଙ୍କ ପରେ ତାଙ୍କ ଜ୍ୟେଷ୍ଠ ପୁତ୍ର ସୁଲ୍‌ତାନ୍ ଜମଶେଦ୍ ମାତ୍ର ଗୋଟିଏ ବର୍ଷ ରାଜତ୍ୱ କରି ନିଜ ଭାଇହାତରେ ପ୍ରାଣଦେଲେ । ଠିକ୍ ବର୍ଷକ ପରେ ଆଲାଉଦ୍ଦୀନ୍ ଅଲୀଶେର୍ ନିଜର ବଡ଼ଭାଇଙ୍କ ବିରୁଦ୍ଧରେ ବିଦ୍ରୋହ କରି ଶାସନଦଣ୍ଡ ଗ୍ରହଣ କଲେ । ଆଲାଉଦ୍ଦୀନଙ୍କ ପରେ ତାଙ୍କ ପୁତ୍ର ଶାହାବୁଦ୍ଦୀନ ରାଜସିଂହାସନ ଆରୋହଣ କଲେ । ଯାହା ସେଦିନ ପର୍ଯ୍ୟନ୍ତ କାଶ୍ମୀରରେ ସମ୍ଭବ ହୋଇ ନ ଥିଲା, ତାହା କାର୍ଯ୍ୟରେ ପରିଣତ ହେଲା । ଶାସନଦଣ୍ଡର ଉପଯୋଗରେ ଇସ୍‌ଲାମ୍ ଧର୍ମର ପ୍ରଚାର ଓ ପ୍ରସାର ଆରମ୍ଭ ହୋଇଗଲା । ମନ୍ଦିରଗୁଡ଼ିକ ଭାଙ୍ଗିବାର ଯୋଜନା ଧୀରେ ଧୀରେ କାର୍ଯ୍ୟକାରୀ ହେବାକୁ ଲାଗିଲା । ଏହି ଅତ୍ୟାଚାରୀ ସୁଲ୍‌ତାନ୍‌ଙ୍କ ପରେ ସୁଲ୍‌ତାନ୍ ସିକନ୍ଦର୍ ଓ ତାଙ୍କ ପୁତ୍ର ଅଲୀଶାହଙ୍କ ଶାସନ କାଶ୍ମୀରରେ ପ୍ରତିଷ୍ଠିତ ହେଲା । ସେ ଦୁହିଁଙ୍କ ସମୟରେ ମଧ୍ୟ ଇସ୍‌ଲାମ୍ ଧର୍ମର ପ୍ରଚାର ଓ ପ୍ରସାର ପୂର୍ବପରି ଅବ୍ୟାହତ ରହିଲା । ପ୍ରସିଦ୍ଧ ମାର୍ତ୍ତଣ୍ଡ ମନ୍ଦିର ଓ ଅବନ୍ତୀପୁରର ଦେବବିଗ୍ରହଙ୍କୁ ଅପବିତ୍ର କରାଗଲା । ଦୀର୍ଘଦିନ ଧରି ସୁଖ ଓ ସ୍ୱାଚ୍ଛନ୍ଦ୍ୟରେ ଚଳିଆସୁଥିବା ହିନ୍ଦୁ ଜନତାର ଦଶା ଦୟନୀୟ ହୋଇଉଠିଲା ।

ଖ୍ରୀ:ଅ: ୧୪୨୩ ସାଲରେ ଜୈନୁଲ୍ ଆବେଦୀନ୍ ଓରଫ୍ ବାଦଶାହ ନାମକ ଜଣେ ଧର୍ମନିରପେକ୍ଷ ବ୍ୟକ୍ତି କାଶ୍ମୀରର ଭାଗ୍ୟବିଧାତାରୂପେ ଶାସନ-କ୍ଷେତ୍ରରେ ଅବତୀର୍ଣ୍ଣ ହେଲେ । ତାଙ୍କ ସମୟରେ ଦେଶବାସୀଙ୍କ ପ୍ରାଣରେ ନୂତନ ଆଶା ଓ ବିଶ୍ୱାସ ଜାଗ୍ରତ ହେବାକୁ ଲାଗିଲା । ହିନ୍ଦୁ ଓ ମୁସଲ୍‌ମାନ ପ୍ରଜାମାନଙ୍କପ୍ରତି ସମଦୃଷ୍ଟିରେ ଦେଖୁଥିବା ଏହି ପ୍ରସିଦ୍ଧ ଶାସକଙ୍କ ଶାସନକାଳ ସବୁଶ୍ରେଣୀର ଲୋକ-ମାନଙ୍କ ପକ୍ଷେ ଉତ୍ସାହପୂର୍ଣ୍ଣ ତଥା ପ୍ରଶଂସନୀୟ ଥିଲା । ସେ ପ୍ରଜାମାନଙ୍କ ସମୃଦ୍ଧିଲାଗି ପରିଖା ଖୋଦନ କଲେ, ବଡ଼ ବଡ଼ ରାଜପ୍ରାସାଦ ନିର୍ମାଣ କଲେ, ନୂତନ ନୂତନ ସହରମାନ ସ୍ଥାପନ କଲେ ଏବଂ ବିଦ୍ୱାନ୍‌ମାନଙ୍କୁ ଆଦରପୂର୍ବକ ସତ୍କାର କଲେ । ସେ ସୁଯୋଗ୍ୟ ବ୍ୟକ୍ତିମାନଙ୍କୁ ଜାଗିର ଦେଇ ରାଜ୍ୟରେ ରଖାଇଲେ ଏବଂ

ପ୍ରଜାମାନଙ୍କ ସୁଖସମୃଦ୍ଧି ଉଦ୍ଦେଶ୍ୟରେ ଯାହା ଯାହା କରିବାର କଥା, ଗୋଟି ଗୋଟି କରି ତାହା ପୂରଣ କଲେ । ତାଙ୍କର ପ୍ରଧାନମନ୍ତ୍ରୀ ଥିଲେ ବୌଦ୍ଧବିଦ୍ୱାନ୍ ତିଲକାଚାର୍ଯ୍ୟ ଓ ନ୍ୟାୟାଧୀଶ ଥିଲେ ସୁଜାଭଟ୍ଟ । ତାଙ୍କର ପଚିଶ ବର୍ଷକାଳ ସୁଶାସନ ଫଳରେ ରାଜ୍ୟରେ ଯେଉଁ ଶାନ୍ତି ଓ ସୁବ୍ୟବସ୍ଥା ସୃଷ୍ଟି ହୋଇଥିଲା; ତାହା ତାଙ୍କର ପରବର୍ତ୍ତୀ ଶାସକ ହାଜୀ ଖାଁଙ୍କ ସମୟରେ ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଗଲା । ସେ ଶାସନଦଣ୍ଡ ଗ୍ରହଣ କରିବାମାତ୍ରେ ସାମ୍ପ୍ରଦାୟିକତା ପ୍ରବଳ ଭାବରେ ମୁଣ୍ଡଟେକି ଉଠିଲା । ତା'ପରେ ଚାଲିଲା ମନ୍ଦିର ଧ୍ୱଂସ କରି ମସ୍‌ଜିଦ୍ ତୋଳିବାର ଅଭିଯାନ । ତଥାପି ହିନ୍ଦୁ ଜନତାଙ୍କ ପକ୍ଷରେ ହାଜୀ ଖାଁଙ୍କ ରାଜତ୍ୱ ନିତାନ୍ତ ଅସହ୍ୟ ନ ଥିଲା । କିନ୍ତୁ ତାଙ୍କର ପରବର୍ତ୍ତୀ ଫତହ୍‌ଶାହଙ୍କ ଅମଳର ଅବସ୍ଥା ନିତାନ୍ତ ସାଙ୍ଘାତିକ ହୋଇଉଠିଲା । ହଜାରେ ଦୁଇ ହଜାର ନୁହେଁ, ତାଙ୍କ ଅମଳରେ ଚବିଶ ହଜାର ବ୍ରାହ୍ମଣଙ୍କୁ ଇସ୍‌ଲାମ୍ ଧର୍ମ ଗ୍ରହଣ କରିବାକୁ ବାଧ୍ୟ କରାଯାଇଥିଲା ।

ଖ୍ରୀ: ଅ: ୧୫୮୬ ସାଲରେ ସମ୍ରାଟ୍ ଆକବରଙ୍କ ଶାସନ ବ୍ୟବସ୍ଥା କାଶ୍ମୀର ଉପରେ ଜାରିହେଲା । ସାଧାରଣ ଜନତା—ବିଶେଷତଃ ହିନ୍ଦୁ ଜନତାର ଅବସ୍ଥା ଧୀରେ ଧୀରେ ସୁଧୁରିବାକୁ ଲାଗିଲା । ସମସ୍ତଙ୍କୁ ନିଜ ନିଜର ଧର୍ମମତାନୁସାରେ କ୍ରିୟାକର୍ମ କରିବାର ସୁଯୋଗ ମିଳିଲା । ବାଦ୍‌ଶାହ ଆକବର ହିନ୍ଦୁମାନଙ୍କ ଉପରେ ବଳପୂର୍ବକ ଲଦି ଦିଆଯାଇଥିବା 'ଜଜିୟା' କର ଓ ଅନ୍ୟାନ୍ୟ କର ଆଦାୟର ବ୍ୟବସ୍ଥା ଉଠାଇଦେଲେ । ସେ ନିଜର ଅର୍ଥମନ୍ତ୍ରୀ ରାଜା ଟୋଡ଼ରମଲ୍ଲଙ୍କ ଦ୍ୱାରା ଜମିଜମାର ବନ୍ଦୋବସ୍ତ କରାଇ ନ୍ୟାୟୋଚିତ ପନ୍ଥାରେ ଜମାଧାର୍ଯ୍ୟର ସୁବ୍ୟବସ୍ଥା କରାଇ ଆଇନ୍ ପ୍ରଣୟନ କଲେ ।

ବାଦ୍‌ଶାହ ଆକବରଙ୍କ ପରେ ତାଙ୍କ ପୁତ୍ର ଜାହାଙ୍ଗୀର ମୋଗଲ ବାଦଶାହ ହେଲେ । ସେ କାଶ୍ମୀରର ପ୍ରାକୃତିକ ସୌନ୍ଦର୍ଯ୍ୟରେ ବିଭୋର ହୋଇ କହୁଥିଲେ:—

> "ଅଗର୍ ଫିର୍ ଦୌସ୍ ବର୍‌ରୁମ୍ନେ ଜମୀ ଅସ୍ତ୍ ହମୀ ଅସ୍ତ୍ ଓ
> ହମୀ ଅସ୍ତ୍ ଓ ହମୀ ଅସ୍ତ୍ ।"

ଅର୍ଥାତ୍—ଭୂଭାଗରେ ଯଦି କେଉଁଠି ସ୍ୱର୍ଗର ଅସ୍ତିତ୍ୱ ଥାଏ, ତା' ହେଲେ ଏହିଠାରେ ତାହା ସମ୍ଭବ; ଏ'ହିଁ ଭୂସ୍ୱର୍ଗ ।

ସେ କାଶ୍ମୀର ରାଜ୍ୟର ସୌନ୍ଦର୍ଯ୍ୟକୁ ବହୁ ପରିମାଣରେ ବର୍ଦ୍ଧିତ କରିବାଲାଗି 'ଶାଲିମାର୍ ବାଗ୍', 'ନସୀମ୍ ବାଗ୍', ଚଶ୍ମାଶାହି ଓ 'ବେରୀନାଗ୍' ଆଦିର ନିର୍ମାଣ କରାଇଥିଲେ । ସେହିପରି ଜାହାଙ୍ଗୀରଙ୍କ ପୁତ୍ର ଶାହଜହାଁ ମଧ୍ୟ କାଶ୍ମୀରର ସମୃଦ୍ଧି ତଥା ପ୍ରଜାବୃନ୍ଦଙ୍କ ଆନନ୍ଦକୁ ନିଜର ଆନନ୍ଦ ବୋଲି ମନେକରି ଶାସନ ବ୍ୟବସ୍ଥାର ପରିଚାଳନା କରିଥିଲେ । 'ଡଲ୍ ଲେକ୍' ସମ୍ମୁଖରେ ଥିବା 'ହଜରତବଲ୍' ନାମକ ପ୍ରସିଦ୍ଧ ଧର୍ମପୀଠ ଶାହଜହାଁଙ୍କ ସମୟରେ ନିର୍ମିତ ହୋଇଥିଲା । କିନ୍ତୁ ଆଓରଙ୍ଗଜେବ୍‌ଙ୍କ ସମୟରେ ପୁଣି ହିନ୍ଦୁ ଜନତାର ଦୁର୍ଦ୍ଦିନ ଆସି ଉପସ୍ଥିତ ହୋଇଗଲା । ସେମାନେ ଧର୍ମ ରାଜନୀତି, ସାମାଜିକ ବ୍ୟବସ୍ଥା—ସବୁଦିଗରୁ ସର୍ବସ୍ୱ ହରାଇ ନାରକୀୟ ଯାତନା ଭୋଗ କରିବାକୁ ଲାଗିଲେ । ଧର୍ମ ମନ୍ଦିର ଧ୍ୱସ୍ତ ହେବାକୁ ଲାଗିଲା, ଘଣ୍ଟା ଶଙ୍ଖ ଧ୍ୱନି ବନ୍ଦ ହୋଇଗଲା ଏବଂ ହିନ୍ଦୁ ଜନତାର ଜୀବନ ଦୁର୍ବିସହ ହୋଇଉଠିଲା । କିନ୍ତୁ ଅହମଦ୍‌ଶାହ ଦୁରାନୀଙ୍କ ସେନାପତିତ୍ୱରେ ଆଫଗାନ୍‌ମାନଙ୍କ ଆକ୍ରମଣ ଫଳରେ ଅବସ୍ଥା ଆହୁରି ଶୋଚନୀୟ ତଥା ଚିନ୍ତାଜନକ ହୋଇଉଠିଲା । ଐତିହାସିକଙ୍କ ମତାନୁସାରେ, ସେ ସମୟରେ କାଶ୍ମୀରରେ ମାତ୍ର ଏଗାରଟି ହିନ୍ଦୁ ପରିବାର କୌଣସିମତେ ଆତ୍ମରକ୍ଷା କରି ପାରିଥିଲେ ।

ନିୟତିର ଇଙ୍ଗିତରେ ସମୟ-ଚକ୍ର ଘୂରିବାକୁ ଲାଗିଲା ଏବଂ ତା' ସହିତ ତାଳଦେଇ କାଶ୍ମୀରର ଭାଗ୍ୟରେଖା ମଧ୍ୟ ପରିବର୍ତ୍ତିତ ହେବାର ସୂଚନା ମିଳିଲା । ଧୀରେ ଧୀରେ ଶିଖମାନଙ୍କ ପ୍ରଭୁତ୍ୱ ବୃଦ୍ଧିଲାଭ କରିବା ଫଳରେ ମହାରାଜା ରଣଜିତ୍ ସିଂହ କାଶ୍ମୀର ଉପରେ ଆକ୍ରମଣ କରିଦେଲେ ଏବଂ ପରିଶେଷରେ ବିଜୟଲକ୍ଷ୍ମୀ ତାଙ୍କରି ଗଳାରେ ଜୟମାଲ୍ୟ ଅର୍ପଣ କଲେ । କାଶ୍ମୀର ରାଜ୍ୟ ମହାରାଜା ରଣଜିତ୍ ସିଂହଙ୍କ ଅଧୀନକୁ ଆସିବାମାତ୍ରେ ସାଧାରଣ ଜନତା ଶାନ୍ତିରେ ନିଃଶ୍ୱାସ ମାରିଲେ ଏବଂ ବହୁବର୍ଷର ନିର୍ଯ୍ୟାତନା ଓ ଦାସତ୍ୱ ଶୃଙ୍ଖଳାରୁ ନିଜକୁ ମୁକ୍ତ କରି ସୌଭାଗ୍ୟବାନ ବୋଲି ମନେ କଲେ । ମହାରାଜା ରଣଜିତ୍ ସିଂହଙ୍କ ସେନାବାହିନୀରେ ଗୁଲାବ ସିଂହ ନାମକ ଜଣେ ସାଧାରଣ ସୈନିକ ନିଜର ଅପୂର୍ବ ବୀରତ୍ୱ ତଥା କ୍ଷମତା ପ୍ରଦର୍ଶନ କରି ସେହି ଅସମ୍ଭବ କାର୍ଯ୍ୟକୁ ସମ୍ଭବ କରାଇପାରିଥିଲେ । ତାଙ୍କର କର୍ତ୍ତବ୍ୟପରାୟଣତା ଓ କାର୍ଯ୍ୟଦକ୍ଷତା ଫଳରେ ମହାରାଜା ରଣଜିତ୍ ସିଂହ ବିଜୟୀ ହେବାର ସୌଭାଗ୍ୟ ଲାଭ କରିଥିଲେ । ତେଣୁ ମହାରାଜା ଗୁଲାବ ସିଂହଙ୍କ ବାହାଦୁରୀ ଓ ପ୍ରଭୁଭକ୍ତିରେ ସନ୍ତୁଷ୍ଟ ହୋଇ ତାଙ୍କୁ ଜାମ୍ମୁ ଅଞ୍ଚଳ ଜାଗିର ସ୍ୱରୂପ ପ୍ରଦାନ କଲେ । ଗୁଲାବ ସିଂହ ସାଧାରଣ ସୈନିକ

ପଦରୁ ଉନ୍ନତି କରି ଜାମୁର ଶାସକରୂପେ ପ୍ରଖ୍ୟାତ ହେଲେ । ସେ ସମଗ୍ର ଜାମୁକୁ ନିଜର ଶାସନାଧୀନକୁ ଆଣିବାମାତ୍ରେ ଦେଶରେ ସୁଶାସନ ଆରମ୍ଭ କରିଦେଲେ ଏବଂ ପ୍ରଜାବତ୍ସଳତା ଫଳରେ ତାଙ୍କର ଯଶଃକୀର୍ତ୍ତି ଦିନକୁ ଦିନ ବିସ୍ତୃତ ହେବାକୁ ଲାଗିଲା । ସମୟ ସମୟରେ ମୁଣ୍ଡ ଟେକୁଥିବା ଶତ୍ରୁମାନଙ୍କ ଅପଚେଷ୍ଟା ଦୃଢ଼ତାର ସହିତ ଦମନ କରାଗଲା । ଶାନ୍ତିଶୃଙ୍ଖଳା ରକ୍ଷା କରି ଜାମୁ ଅଞ୍ଚଳରେ ସୁଶାସନ ପ୍ରତିଷ୍ଠା କରିବାରେ ଶାସକ ଗୁଲାବ ସିଂହଙ୍କୁ ବିଶେଷଭାବରେ ସାହାଯ୍ୟ କରିଥିଲେ—ତାଙ୍କର ବିଶ୍ୱସ୍ତ, ସୁଦକ୍ଷ ତଥା ଇତିହାସପ୍ରସିଦ୍ଧ ସେନାପତି ଜୋରାବର୍ ସିଂହ । ଲଦାଖ୍, ଲାସା ତଥା ବଲ୍ଟିସ୍ଥାନ ଆଦି ସ୍ଥାନରେ ସେନାପତି ଜୋରାବର୍ ସିଂହଙ୍କର ବିଜୟବୈଜୟନ୍ତୀ ଉଡ଼ିବାକୁ ଲାଗିଲା । ସେ ଶାସକ ଗୁଲାବ ସିଂହଙ୍କ ଲାଗି ଯେ କୌଣସି ଅସମ୍ଭବ କାର୍ଯ୍ୟକୁ ଅନାୟାସରେ ଆୟତ୍ତ କରିପାରୁଥିଲେ । ତା'ପରେ ଜାମୁର ଶାସକ ଗୁଲାବ ସିଂହଙ୍କ ଭାଗ୍ୟରେଖା ଆହୁରି ସମୁଜ୍ଜ୍ୱଳ ହୋଇଉଠିଲା । ଖ୍ରୀ: ଅ: ୧୮୪୬ ସାଲରେ ସେ ଇଂରେଜଙ୍କ ସହିତ ସନ୍ଧିସୂତ୍ରରେ ଆବଦ୍ଧ ହୋଇ ସାତ ନିୟୁତ ପାଞ୍ଚ ଲକ୍ଷ ଟଙ୍କା ବିନିମୟରେ କାଶ୍ମୀର ଅଞ୍ଚଳକୁ ନିଜର ଶାସନାଧୀନକୁ ଆଣିବାରେ ସମର୍ଥ ହେଲେ । ସେ ଜାମୁ ଓ କାଶ୍ମୀରକୁ ମିଶାଇ ଏକ ସୁନ୍ଦର ତଥା ସମୃଦ୍ଧିଶାଳୀ ରାଜ୍ୟରେ ପରିଣତ କରି ଶାସକ ଗୁଲାବ ସିଂହ, ମହାରାଜା ଗୁଲାବ ସିଂହ ନାମରେ ବିଖ୍ୟାତ ହେଲେ ।

ପାଗ ପରିବର୍ତ୍ତନ ହେବା ଫଳରେ ଲୋକମାନେ ଆନନ୍ଦ ଉଲ୍ଲାସରେ ବୁଲିଆଡ଼େ ପରିଭ୍ରମଣ କରିବାକୁ ଲାଗିଲେ । ସ୍ତ୍ରୀ ପୁରୁଷମାନଙ୍କ ସହିତ ଛୋଟ ଛୋଟ ବାଳକ ବାଳିକାଙ୍କର କୋଳାହଳରେ ପ୍ରାଚୀରକୁ ଆଉଜି ଛିଡ଼ା ହୋଇଥିବା ତେଜସ୍ୱୀ ପୁରୁଷଙ୍କର ଧ୍ୟାନ ଭଙ୍ଗ ହେଲା । ସେ ଅଜ୍ଞାତରେ ଉତ୍ଥାନ ପତନ ତଥା ପରିଶେଷରେ କାଶ୍ମୀରର ଗୌରବମୟ ଇତିହାସରୁ ନିଜର ଚିନ୍ତାଧାରାକୁ ମୁକ୍ତ କରି, ଧୀରେ ଧୀରେ ସୋପାନଶ୍ରେଣୀ ଅତିକ୍ରମ କରି ତଳକୁ ଓହ୍ଲାଇବାର ଉପକ୍ରମ କଲେ । ଭ୍ରମଣକାରୀ ଦଳ ମଧ୍ୟରୁ ଜଣେକ ପୁରୁଷ ଧୀର ସ୍ୱରରେ ଅନ୍ୟ ଜଣେ ମହିଳାଙ୍କୁ ପଚାରିଲେ—

"ଚିହ୍ନିଛ ଏ କିଏ ସେ ?"

"ଉଁ ··ହୁଁ···!"

"ଏ ହେଉଛନ୍ତି—ଜାମୁ କାଶ୍ମୀରର 'ସଦର-ଇ-ରିୟାସତ୍ !"

"ଓଃ ! ବେଶ୍ ପ୍ରଭାବଶାଳୀ ବ୍ୟକ୍ତିତ୍ୱ ତ ।"

● ● ●

# ଦୁଇ

ମହାରାଜା ଗୁଲାବ ସିଂହ, ରଣବୀର ସିଂହ, ପ୍ରତାପ ସିଂହ ଓ ତାଙ୍କ ପରେ ମହାରାଜା ହରି ସିଂହ କାଶ୍ମୀର ରାଜସିଂହାସନ ଅଳଙ୍କୃତ କଲେ । ସନ ୧୯୨୭ ଫେବୃଆରୀ ମାସରେ ମହାରାଜା ହରି ସିଂହଙ୍କର ରାଜ୍ୟାଭିଷେକ ଉତ୍ସବ ଜାମୁରେ ଅନୁଷ୍ଠିତ ହେଲା ଏବଂ ତା'ପରେ ଜାମୁ ଓ କାଶ୍ମୀର ରାଜ୍ୟର ଶାସକରୂପେ ସେ ଆନୁଷ୍ଠାନିକଭାବରେ ଅଧିଷ୍ଠିତ ହେଲେ ।

ଜାମୁ ଅଞ୍ଚଳର ଉତ୍ପତ୍ତି ସମ୍ବନ୍ଧରେ ବିଚିତ୍ର ପ୍ରକାରର କିମ୍ବଦନ୍ତୀ ଶୁଣିବାକୁ ମିଳେ । ସେହି କିମ୍ବଦନ୍ତୀରୁ ଜଣାଯାଏ ଯେ, କୌଣସି ଏକ ସମୟରେ ଜମ୍ବୁଲୋଚନ ଓ ବାହୁଲୋଚନ ନାମରେ ଦୁଇଭାଇ ଅରଣ୍ୟ ମଧ୍ୟରେ ବାସ କରୁଥିଲେ । ଦୁହେଁଯାକ ଥିଲେ—ବୀର ଓ ଉଚ୍ଚାଭିଳାଷୀ । ଦିନେ ଦୁଇଭାଇ ବାସସ୍ଥାନର ଅନ୍ୱେଷଣରେ କୌଣସି ଏକ ସ୍ଥାନକୁ ଯାଉଥିଲେ । ମାର୍ଗ ମଧ୍ୟରେ 'ତଵୀ' ନଦୀକୂଳରେ; ବାଘ, ଛେଳି ଓ ଗାଈ—ଏହି ତିନୋଟି ପରସ୍ପର ଶତ୍ରୁ ଜୀବମାନଙ୍କୁ ନିର୍ଭୟରେ ଏକ ସ୍ଥାନରେ ପାଣି ପିଉଥିବାର ଦେଖି, ଜମ୍ବୁଲୋଚନ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇଗଲେ । ସେ ମନେମନେ ଭାବିଲେ—ଏହା ନିଶ୍ଚୟ କୌଣସି ଦେବସ୍ଥଳୀ । ତେଣୁ ସେ ସେହିଠାରେ ବସବାସ କରିବାକୁ ନିଶ୍ଚୟ କଲେ । କିନ୍ତୁ ବାହୁଲୋଚନ ଜ୍ୟେଷ୍ଠଭ୍ରାତାଙ୍କର ଏ ପ୍ରକାର ସିଦ୍ଧାନ୍ତରେ ଏକମତ ହୋଇପାରିଲେ ନାହିଁ । କାରଣ, ସାମରିକ ଗୁରୁତ୍ୱ ଦୃଷ୍ଟିରୁ ସେ ସ୍ଥାନଟି ଅଧିକ ସୁରକ୍ଷିତ ନ ଥିଲା । ତେଣୁ 'ତଵୀ' ନଦୀର ଅପର ପାର୍ଶ୍ୱରେ ଥିବା ପର୍ବତର ସମତଳ ଭାଗରେ ସେ ନିଜର ବାସସ୍ଥାନ ପ୍ରସ୍ତୁତ କରିବାକୁ ମନସ୍ଥ କଲେ । ଏବେ ମଧ୍ୟ ପର୍ବତ ଉପରେ ବାହୁଲୋଚନଙ୍କଦ୍ୱାରା ନିର୍ମିତ ଦୁର୍ଗ 'ବାହୁକିଲ୍ଲା' ନାମରେ ଲୋକ ମୁଖରେ କଥିତ ହେଉଛି । ଏହି 'କିଲ୍ଲା'ର ଅବସ୍ଥିତି ହେଉଛି—ପ୍ରାଚୀନ କିମ୍ବଦନ୍ତୀର ପ୍ରାମାଣିକତା । ଆହୁରି ମଧ୍ୟ ଅନୁମାନ କରାଯାଏ ଯେ,

ଜମ୍ବୁଲୋଚନଙ୍କ ଅପେକ୍ଷା ବାହୁଲୋଚନ ଅଧିକ ଶକ୍ତିଶାଳୀ, ବୁଦ୍ଧିମାନ୍ ତଥା ଦୂରଦର୍ଶୀ ଥିଲେ । ବାହୁଲୋଚନଙ୍କ ଦୁର୍ଗ ନିକଟରେ ଗୋଟିଏ ବିସ୍ତୃତ ପ୍ରାନ୍ତର ରହିଛି । ପ୍ରାଚୀନ କାଳରେ ସେଠାରେ ଗୋଟିଏ ଜନାକୀର୍ଣ୍ଣ ଲୋକବସତି ଥିଲା; କିନ୍ତୁ ଆଜିକାଲି କେବଳ ଗୋଟିଏ ମାତ୍ର ଗ୍ରାମ୍ୟ ଜନବସତି ରହିଛି । ଜମ୍ବୁଲୋଚନଙ୍କଦ୍ୱାରା ନିର୍ମିତ ବର୍ତ୍ତମାନର 'ଜାମ୍ମୁ' ଲକ୍ଷ ଲକ୍ଷ ଲୋକପୂର୍ଣ୍ଣ ଏକ ଭବ୍ୟ ନଗର । ତେଣୁ ଜଣାଯାଏ ଯେ, ଜମ୍ବୁଲୋଚନ ସାହସୀ ଓ ବୀର ଥିବା ସଙ୍ଗେସଙ୍ଗେ ଅଧିକ ଉଦାର ଓ ମାନବିକାପ୍ରିୟ ଥିଲେ । ସେହି 'ଜାମ୍ମୁ' ନଗରୀରେ ମହାରାଜା ହରି ସିଂହ ରାଜତିଳକରେ ମଣ୍ଡିତ ହେବାପରେ ସର୍ବପ୍ରଥମେ ସାଧାରଣ ସଭାରେ ଯେଉଁ ଭାଷଣ ଦେଇଥିଲେ, ତାହା ବିଭିନ୍ନ ଦୃଷ୍ଟିକୋଣରୁ ବିଶେଷ ମହତ୍ତ୍ୱପୂର୍ଣ୍ଣ ତଥା ଉଲ୍ଲେଖଯୋଗ୍ୟ :

"ମୋର ବନ୍ଧୁ ଓ ପ୍ରଜାମାନେ ଯଦି ମୋତେ ବାସ୍ତବରେ ଅନ୍ତରର ସହିତ ଶ୍ରଦ୍ଧା ଓ ସ୍ନେହ କରୁଥାନ୍ତି, ତା'ହେଲେ ମୁଁ ସର୍ବପ୍ରଥମେ ସେମାନଙ୍କୁ ଉପଦେଶ ଦେଇ କହିବି ସେମାନେ ନିଜ ନିଜର ସମସ୍ତ ମନ୍ଦ ଅଭ୍ୟାସକୁ ଦୂର କରିବାରେ ଅଭିଯାନ ଆରମ୍ଭ କରନ୍ତୁ । ଜନ୍ମକାଳରୁ କନ୍ୟାକୁ ମାରିଦେବାର ଯେଉଁ କୁପ୍ରଥା ଦେଶରେ ପ୍ରଚଳିତ ହୋଇଆସୁଛି, ସ୍ୱର୍ଗତଃ ମହାରାଜା ସେହି ପ୍ରଥାକୁ ବନ୍ଦ କରାଇ ଦେଇଛନ୍ତି । ସମାଜରେ ଏ ପ୍ରକାର ଆତ୍ମଘାତୀ ପ୍ରଥାର ବିଲୋପସାଧନ କରିବା ଜାତିପକ୍ଷରେ ନିଶ୍ଚୟ ମଙ୍ଗଳପ୍ରଦ । ଠିକ୍ ସେହିପରି ବାଲ୍ୟବିବାହ ଓ ବୃଦ୍ଧବିବାହ ମଧ୍ୟ ମାନବିଦୃଷ୍ଟିରୁ ଅସଙ୍ଗତ ବୋଲି ମନେ ହୁଏ । ସାଠ ବର୍ଷର ବର ଦୁଇ ବର୍ଷର କନ୍ୟାଙ୍କ ବିବାହରେ ଅବା ଲାଭ କ'ଣ ? ଏଭଳି କୁପ୍ରଥାକୁ ମଧ୍ୟ ଶୀଘ୍ର ବନ୍ଦ କରାଯିବା ଆବଶ୍ୟକ । ଏହିପରିଭାବରେ ଦେଖିବାକୁ ଗଲେ, ଦେଶର ଶିକ୍ଷାନୀତି ସମ୍ବନ୍ଧରେ ଆପଣମାନଙ୍କୁ ପୂର୍ଣ୍ଣ ସତର୍କତାର ସହିତ ଚିନ୍ତା କରିବାକୁ ହେବ । କେବଳ ମୋ' ନିକଟରେ 'ଏହା ହେବା ଉଚିତ, ତା' ହେବା ଉଚିତ' ବୋଲି ଅଭିଯୋଗପତ୍ର ଦେଇଦେଲେ ଯଥେଷ୍ଟ ହେବ ନାହିଁ । ......ଯଦି ଏହି ରାଜ୍ୟର ଶାସକରୂପେ ମୋତେ ଯୋଗ୍ୟ ବୋଲି ଆପଣମାନେ ସ୍ୱୀକାର କରୁଥା'ନ୍ତି, ତା' ହେଲେ ମୁଁ କହିବି, ମୋ' ପକ୍ଷରେ ପ୍ରତ୍ୟେକ ଧର୍ମ ଓ ଜାତି ସମାନ ଏବଂ ମୋର ଧର୍ମ ହେଉଛି ନ୍ୟାୟ; ଅବଶ୍ୟ ନ୍ୟାୟ ପଥରେ ପରିଚାଳିତ ହେଉଥିବାବେଳେ କେବେ କେବେ ଭୁଲଭ୍ରାନ୍ତି ରହିଯାଇପାରେ ! କୌଣସି ମଣିଷ ଯେ ଭୁଲ କରେ ନାହିଁ, ଏ କଥା ନୁହେଁ । ଯେଉଁ ବ୍ୟକ୍ତି କହେ,

ମୁଁ ଭୁଲ କରୁ ନାହିଁ, ସେ ମିଥ୍ୟା କହୁଛି । ଈଶ୍ୱର ଓ ତାଙ୍କର ପ୍ରତିନିଧି ଦେବଗଣ ହିଁ ଭୁଲ ଭ୍ରାନ୍ତିରୁ ମୁକ୍ତ ହୋଇପାରନ୍ତି ! ମୋର କର୍ମ ଓ ଧର୍ମ ହେଉଛି—ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖିବା । ଯେତେଦୂର ସମ୍ଭବ, ମୁଁ ନ୍ୟାୟପୂର୍ଣ୍ଣ ମାର୍ଗରେ କାର୍ଯ୍ୟ କରିବାକୁ ତତ୍ପର ହେବି ।”

ରାଜ୍ୟଶାସନର ଗୁରୁ ଦାୟିତ୍ୱ ଗ୍ରହଣ କରିବା ପରେ ମହାରାଜା ହରି ସିଂହଙ୍କର ସର୍ବପ୍ରଥମ କାର୍ଯ୍ୟ ଥିଲା—ରାଜ୍ୟ ମଧ୍ୟରେ ଭ୍ରମଣ କରି ପ୍ରଜାମାନଙ୍କ ସୁଖ ଦୁଃଖ ସମ୍ବନ୍ଧରେ ଅନୁଧ୍ୟାନ କରିବା; ଲୋକମାନଙ୍କର ସୁବିଧା-ଅସୁବିଧାପ୍ରତି ଦୃଷ୍ଟି ଦେବା, ରାଜକୀୟ କର୍ମଚାରୀମାନଙ୍କର କାର୍ଯ୍ୟଦକ୍ଷତା ସମ୍ବନ୍ଧରେ ପ୍ରତ୍ୟକ୍ଷ ଜ୍ଞାନାର୍ଜନ କରିବା ଏବଂ ସେଥି ସଙ୍ଗେସଙ୍ଗେ ନୂତନ ଓ ପୁରାତନ ସମସ୍ୟା-ଗୁଡ଼ିକୁ ହୃଦୟଙ୍ଗମ କରି ତା’ର ସମାଧାନର ଉପାୟମାନ ଚିନ୍ତା କରିବା । ମହାରାଜାଙ୍କର ଏହି ଗସ୍ତ ଫଳରେ ପ୍ରଜାବୃନ୍ଦଙ୍କ ପ୍ରାଣରେ ଏକ ଅଭିନବ ଆଶା ଓ ଉଦ୍ଦୀପନା ଜାଗ୍ରତ ହେଲା ଏବଂ ସେମାନଙ୍କ ହୃଦୟରେ ରାଜ୍ୟର ଶାସନତନ୍ତ୍ର-ପ୍ରତି ବିଶ୍ୱାସ ଜାତ ହେଲା । ପ୍ରଜାମାନଙ୍କର ଏ ପ୍ରକାର ଆଶା ଓ ବିଶ୍ୱାସ ମଧ୍ୟ ଅଳ୍ପଦିନ ମଧ୍ୟରେ ଦୃଢ଼ୀଭୂତ ହୋଇଗଲା । ମହାରାଜା ଅତି ଶୀଘ୍ର ଇଂରେଜ ସରକାରଙ୍କଦ୍ୱାରା ନିଯୁକ୍ତ ‘ରେସିଡେଣ୍ଟ’ର ସମସ୍ତ ଅଧିକାରକୁ ବାଜ୍ୟାପ୍ତ କରିଦେଇ ଏକ ନୂତନ ପନ୍ଥା ଅନୁସରଣ କଲେ । ଏହା ସେ ଯୁଗରେ କମ୍ ସାହସିକ ପଦକ୍ଷେପ ନ ଥିଲା ! ଏହା ଥିଲା—ସାକ୍ଷାତ୍ ଇଂରେଜ ସରକାରଙ୍କ ଗାଲରେ ଏକ ତୀବ୍ର ଚପେଟାଘାତ ଏବଂ ତା ସହିତ ମଧ୍ୟ ଭାରତରେ ଆଉ ସେମାନଙ୍କ ‘ହୁକୁମତ୍’ ବେଶୀ ଦିନ ତିଷ୍ଠି ପାରିବ ନାହିଁ ବୋଲି ଏକ ପରୋକ୍ଷ ସଙ୍କେତ ।

ପ୍ରଜାମାନଙ୍କୁ ସମସ୍ତ କାର୍ଯ୍ୟରେ ସବୁ ଦୃଷ୍ଟିକୋଣରୁ ପୂର୍ଣ୍ଣ ନ୍ୟାୟ ମିଳିବା ଉଦ୍ଦେଶ୍ୟରେ ସେ ଅବିଳମ୍ବେ ରାଜ୍ୟରେ ଉଚ୍ଚ ନ୍ୟାୟାଳୟ (High Court) ସ୍ଥାପନ କରିଥିଲେ । ବାଲ୍ୟବିବାହ ଓ ରାଜପୁତ୍‌ମାନଙ୍କ ଘରେ କନ୍ୟା ଜନ୍ମହେବା ମାତ୍ରେ ମାରିଦେବାର କୁପ୍ରଥାକୁ ସେ ଶୀଘ୍ର ଆଇନବଳରେ ବନ୍ଦ କରାଇଦେଲେ । ବ୍ରାହ୍ମଣ ଓ ରାଜପୁତ୍‌ମାନଙ୍କୁ ଫାଶୀଦଣ୍ଡ ଦିଆଯାଇ ପାରିବ ନାହିଁ ବୋଲି ପୂର୍ବରୁ ଯେଉଁ ଆଇନ ଶାସନପଦ୍ଧତିରେ ପ୍ରଚଳିତ ହୋଇଆସୁଥିଲା, ମହାରାଜା ହରି ସିଂହ ସେ ପ୍ରକାର ପକ୍ଷପାତମୂଳକ ବିଧିରକୁ ସର୍ବଦା ଅନୁଚିତ ଓ ଅସଙ୍ଗତ ବୋଲି ଘୋଷଣା କରି ସମସ୍ତଙ୍କପ୍ରତି ସମାନ ଧରଣର ନ୍ୟାୟ ବ୍ୟବସ୍ଥା ବିଧାନ କରିଥିଲେ ।

ସନ୍ ୧୯୩୦ରେ ମହାରାଜା ହରି ସିଂହ ମହାରାଣୀ ତାରା ଦେବୀଙ୍କ ସହିତ ଲଣ୍ଡନ୍ ଯାତ୍ରା କରିଥିଲେ । ସେ ସେଠାରେ ଅନୁଷ୍ଠିତ 'ଗୋଲ୍‌ଟେବୁଲ ବୈଠକ'ରେ ଭାରତର ପ୍ରତିନିଧିରୂପେ ଯୋଗ ଦେଇଥିଲେ । ମହାରାଜ ହରି ସିଂହ ସର୍ବପ୍ରଥମ ବ୍ୟକ୍ତି; ଯେ କି, ସେ ସମୟରେ ଇଂରେଜମାନଙ୍କ ଶକ୍ତି, କୂଟନୀତି ତଥା ନିଜର ସୀମିତ କ୍ଷମତାପ୍ରତି ଦୃଷ୍ଟି ନ ଦେଇ 'ଗୋଲଟେବୁଲ୍ ବୈଠକ'ରେ ଭାରତର ସ୍ୱାଧୀନତା ତଥା ସମାନତାର ଦାବି କରି ପ୍ରଶଂସନୀୟ ଦେଶଭକ୍ତରୂପେ ଭାରତୀୟ ଜନସାଧାରଣଙ୍କର ସମ୍ମାନାର୍ହ ହୋଇପାରିଥିଲେ । ସେ ସେଠାରେ ଭାଷଣ ପ୍ରସଙ୍ଗରେ କହିଥିଲେ :

"ଶାସକଗୋଷ୍ଠୀର ବନ୍ଧୁଭାବରେ ଆମେ ସେମାନଙ୍କ ସହିତ ସ୍ଥାୟୀସମ୍ବନ୍ଧ ସ୍ଥାପନ କରିବାକୁ ଚାହୁଁ ! ନିଜ ମାତୃଭୂମିର ଆଦର୍ଶ ଭକ୍ତ ହେବା ସଙ୍ଗେ ସଙ୍ଗେ ଆମେ ଦେଶୀୟ ରାଜ୍ୟ ସଂରକ୍ଷକମାନେ, ଅନ୍ୟାନ୍ୟ ବନ୍ଧୁ ରାଷ୍ଟ୍ରଗୁଡ଼ିକ ପରି ଚାହୁଁ ଯେ, ବିଭିନ୍ନ ବନ୍ଧୁ ରାଷ୍ଟ୍ରଗୁଡ଼ିକ ପ୍ରତି ଶାସକ ଗୋଷ୍ଠୀର ଯେଉଁ ସଦ୍‌ଭାବନାପୂର୍ଣ୍ଣ ମୈତ୍ରୀ ସମ୍ପର୍କ ରହିଛି, ଆମକୁ ମଧ୍ୟ ତଦନୁରୂପ ସମ୍ମାନ-ଜନକ ସ୍ଥାନ ମିଳୁ :"

ମହାରାଜା ହରି ସିଂହଙ୍କର ଏ ପ୍ରକାର 'ସ୍ୱର' ଶୁଣି ସମସ୍ତେ ସ୍ତମ୍ଭୀଭୂତ ହୋଇଗଲେ । ଇଂରେଜମାନଙ୍କର ପରମ ମିତ୍ର ଓ ଇଂରେଜ ଶାସନର ପ୍ରମୁଖ ସାହାଯ୍ୟକାରୀରୂପେ ସୁପରିଚିତ ଦେଶୀୟ ରାଜା-ମହାରାଜାମାନଙ୍କ ମଧ୍ୟରୁ ଜଣେ ମହାରାଜା 'ଗୋଲଟେବୁଲ ବୈଠକ'ରେ ଏପରି ନିର୍ଭୀକଭାବରେ କିଛି ମନ୍ତବ୍ୟ ଦେଇପାରନ୍ତି ବୋଲି ନିଜେ ଇଂରେଜ ସରକାର ମଧ୍ୟ ବିଶ୍ୱାସ କରିପାରିଲେ ନାହିଁ । ସେହି ମନ୍ତବ୍ୟ ଥିଲା—ଇଂରେଜମାନଙ୍କପ୍ରତି ଅପମାନସୂଚକ ବାକ୍ୟବାଣ ଏବଂ ସେଥି ସଙ୍ଗେସଙ୍ଗେ ବିଶେଷ ଚିନ୍ତାର ବିଷୟ !!

ରୁଷିଆର ସୀମାନ୍ତରେ ଥିବାରୁ ଜାମ୍ମୁ ଓ କାଶ୍ମୀର ରାଜ୍ୟ ଇଂରେଜ ଶାସନକଳ ପକ୍ଷରେ ଥିଲା ଅନେକ ଦୃଷ୍ଟିକୋଣରୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଅଞ୍ଚଳ ! ସେହି ଦୃଷ୍ଟିରୁ ବିଚାର କରି ମହାରାଜା ପ୍ରତାପ ସିଂହଙ୍କ ଶାସନକାଳରେ ତାଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର ରଚନା କରି ତାଙ୍କୁ ଗାଦିଚ୍ୟୁତ କରାଇବାର ପ୍ରୟାସ କରାଯାଇଥିଲା । ଖ୍ରୀ: ଅ: ୧୮୮୫ ସାଲରେ ପ୍ରସିଦ୍ଧ ଜାତୀୟବାଦୀ ସମ୍ବାଦପତ୍ର 'ଅମୃତବଜାର ପତ୍ରିକା'ରେ ଏହି ଷଡ଼ଯନ୍ତ୍ର ସମ୍ବନ୍ଧରେ ଗୁରୁତ୍ୱପୂର୍ଣ୍ଣ ସମ୍ବାଦ

ପ୍ରକାଶ ପାଇବା ମାତ୍ରେ ସେହି ଚକ୍ରାନ୍ତ ପଣ୍ଡ ହୋଇଯାଇଥିଲା । ଇଂରେଜ ସରକାର ଯେ କୌଣସି ମୂଲ୍ୟର ବିନିମୟରେ ମଧ୍ୟ ଜାମୁ ଓ କାଶ୍ମୀର ରାଜ୍ୟକୁ ହାତଛଡ଼ା କରିବାକୁ ଇଚ୍ଛୁକ ନ ଥିଲେ । ତେଣୁ ସେମାନେ କୌଣସିମତେ କାଶ୍ମୀର ରାଜଶକ୍ତିକୁ କ୍ଷୀଣ କରିଦେବା ଉଦ୍ଦେଶ୍ୟରେ, ଅନ୍ୟପ୍ରକାର କୂଟନୀତିର ପ୍ରୟୋଗ ଆରମ୍ଭ କରିଦେଲେ । ଯେପରି ଭାରତର ଅନ୍ୟାନ୍ୟ ରାଜ୍ୟରେ ହିନ୍ଦୁ-ମୁସଲମାନଙ୍କ ମଧ୍ୟରେ ସାମ୍ପ୍ରଦାୟିକ ଦଙ୍ଗା ସୃଷ୍ଟି କରି କଂଗ୍ରେସର ପରିବର୍ଦ୍ଧିତ ଶକ୍ତିକୁ କ୍ଷୀଣ କରାଇ ଦେଉଥିଲେ, ଠିକ୍ ସେହି ପନ୍ଥା ସେମାନେ କାଶ୍ମୀରରେ ଅନୁସରଣ କଲେ । କାଶ୍ମୀରରେ ଇଂରେଜମାନଙ୍କ ସାହାଯ୍ୟ ଓ ସହଯୋଗରେ ଗଠିତ 'ମୁସଲିମ୍ କନ୍‌ଫରେନ୍‌ସ' ନାମକ ସଂସ୍ଥାକୁ ସେମାନେ ଉତ୍ତେଜିତ କରାଇବାରେ ତତ୍ପର ହୋଇପଡ଼ିଲେ । ମହାରାଜା ହରି ସିଂହଙ୍କ ଚିଫ୍ ସେକ୍ରେଟେରୀ ଓ୍ୱେକ୍‌ଫିଲଡ୍ ସାହେବ ଏହି ଉତ୍ତେଜନା ସୃଷ୍ଟି କରିବାର ପ୍ରଧାନ ଯୋଗସୂତ୍ରରୂପେ କାର୍ଯ୍ୟ କରି ସଫଳତାହାସଲ କଲେ ।

ଶେଖ୍ ଅବ୍‌ଦୁଲ୍ଲା ସନ ୧୯୦୫ ଡିସେମ୍ବର ମାସରେ ଶ୍ରୀନଗର ନିକଟସ୍ଥ 'ସୌରା' ନାମକ ସ୍ଥାନରେ ଜନ୍ମଗ୍ରହଣ କରି ୧୯୩୦ ସାଲରେ ଆଲିଗଡ଼ ବିଶ୍ୱବିଦ୍ୟାଳୟରୁ ଏମ. ଏସ୍‌ସି. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ସେ ସ୍ନାତକୋତ୍ତର ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପରେ ଶ୍ରୀନଗରସ୍ଥିତ ଷ୍ଟେଟ୍ ହାଇସ୍କୁଲରେ ଶିକ୍ଷକ ପଦରେ ନିଯୁକ୍ତ ହେଲେ । ଚିଫ୍ ସେକ୍ରେଟେରୀ ଓ୍ୱେକ୍‌ଫିଲ୍‌ଡ୍‌ଙ୍କ ଯୋଜନାକୁ କାର୍ଯ୍ୟକାରୀ କରାଇବା ଉଦ୍ଦେଶ୍ୟରେ ଶିକ୍ଷିତ ଉଦୀୟମାନ ଯୁବକ ଶେଖ୍ ସାହେବଙ୍କୁ ନିର୍ବାଚିତ କରାଗଲା । ସେ ମଧ୍ୟ ରାଜଶକ୍ତି ବିରୁଦ୍ଧରେ ସାମ୍ପ୍ରଦାୟିକ କଳହ ସୃଷ୍ଟି କରିବାଲାଗି ଆଗେଇଆସିଲେ । ତା'ପରେ ଶ୍ରୀନଗର ଓ ଅନ୍ୟାନ୍ୟ ସ୍ଥାନରେ ମହାରାଜା ହରି ସିଂହଙ୍କ ବିରୁଦ୍ଧରେ ମିଥ୍ୟାପ୍ରଚାର ଆରମ୍ଭ ହୋଇଗଲା । ତାଙ୍କର ଶାସନକୁ ତାନାଶାହୀ (ଅତ୍ୟାଚାରପୂର୍ଣ୍ଣ) ଶାସନରୂପେ ଅଭିହିତ କରାଯିବା ସଙ୍ଗେସଙ୍ଗେ ତାଙ୍କୁ ହିନ୍ଦୁମାନଙ୍କର ସଂରକ୍ଷକ ଓ ମୁସଲମାନମାନଙ୍କର ଭକ୍ଷକରୂପେ ଚିତ୍ରଣ କରାଗଲା । ଧୀରେ ଧୀରେ ଏହି ସାମ୍ପ୍ରଦାୟିକତାପୂର୍ଣ୍ଣ ପ୍ରଚାର କାଶ୍ମୀରରେ ଉଗ୍ର ରୂପ ଧାରଣ କଲା, ଉନ୍ମୁକ୍ତ ସଭାସମିତିମାନଙ୍କରେ ବିଷୋଦ୍‌ଗାର କରାଯିବା ସଙ୍ଗେସଙ୍ଗେ ମହାରାଜାଙ୍କ ବିରୁଦ୍ଧରେ ବିକ୍ଷୋଭ ପ୍ରଦର୍ଶନ କରାଗଲା । ଶେଖ୍ ସାହେବଙ୍କ ଓଜସ୍ୱୀ ବାଣୀ ଓ ବ୍ୟକ୍ତିତ୍ୱ ଫଳରେ, ସେ ଖୁବ୍ ଶୀଘ୍ର ଲୋକପ୍ରିୟ ନେତାରୂପେ ଜନତାର

ଆଦରର ପାତ୍ର ହୋଇଗଲେ ତା’ ପରେ ସେ ‘ମୁସଲିମ୍ କନଫରେନ୍ସ’ର ପ୍ରଧାନ ନେତାରୂପେ ପରିଚିତ ହେଲେ ।

‘ଗୋଲ୍ ଟେବୁଲ୍ ବୈଠକ’ ସମାପ୍ତ ହେବା ପରେ ମହାରାଜା ହରି ସିଂହ ମହାରାଣୀ ତାରା ଦେବୀଙ୍କୁ ସଙ୍ଗରେ ନେଇ ୟୁରୋପର ଅନ୍ୟ ଦେଶଗୁଡ଼ିକର ପରିଭ୍ରମଣ ଆରମ୍ଭ କଲେ । ସେ ସମୟରେ ତାରା ଦେବୀ ଅନ୍ତଃସତ୍ତ୍ୱା ଥିଲେ । ତେଣୁ ସନ୍ ୧୯୩୦ ସାଲ ମାର୍ଚ୍ଚ ମାସ ୯ ତାରିଖରେ ଫ୍ରାନ୍ସ ଦେଶର ‘କେନ୍ସ’ ନାମକ ନଗରର ଏକ ହୋଟେଲରେ ତାଙ୍କ ଗର୍ଭରୁ ଏକ ପୁତ୍ରରତ୍ନ ଜାତ ହେଲା । ପୁତ୍ର ସନ୍ତାନଟିଏ ଲାଭ କରିବା ଫଳରେ ରାଜଦମ୍ପତିଙ୍କ ହୃଦୟ ଆନନ୍ଦରେ ଉଦ୍‌ବେଳିତ ହୋଇଉଠିଲା । କିନ୍ତୁ ଏହା ଗଲା ଉପରୁ—ପ୍ରାୟ ମେ’ କିମ୍ବା ଜୁନ୍ ମାସରେ ରାଜଦମ୍ପତି ନିଜ ରାଜ୍ୟକୁ ଫେରିଆସିଲେ । ସେତେବେଳକୁ କାଶ୍ମୀରର ଅବସ୍ଥା ଅତ୍ୟନ୍ତ ଗମ୍ଭୀର ହୋଇ ଉଠିଥିଲା । ବେଳେ ବେଳେ ମଧ୍ୟ ବାତାବରଣ ଅସମ୍ଭାଳ ପରି ବୋଧ ହେଉଥିଲା । ମହାରାଜା ହରି ସିଂହ ରାଜ୍ୟର ଏପରି ଶୋଚନୀୟ ପରିସ୍ଥିତି ଦେଖି ଆଶ୍ଚର୍ଯ୍ୟ ହେବା ସଙ୍ଗେ ସଙ୍ଗେ ତାଙ୍କ ମନରେ ଗଭୀର ଦୁଃଖ ଓ ଅନୁଶୋଚନା ଜାତ ହେଲା । ଏହି ସମୟରେ ଉତ୍ତେଜନାକାରୀମାନେ ଘଟଣାକୁ ଆହୁରି ଉତ୍ତେଜିତ କରାଇଦେଲେ । ଏହି ସୁଯୋଗରେ ଓ୍ୱେକ୍‌ଫିଲଡଙ୍କଦ୍ୱାରା ପ୍ରୋତ୍ସାହିତ ହୋଇ ଜାମ୍ମୁ ଜେଲଖାନା ମଧ୍ୟରେ ଜଣେକ ଷଡ଼ଯନ୍ତ୍ରକାରୀ ଧର୍ମଗ୍ରନ୍ଥ ‘କୁରାନ୍ ସରିଫ’ ପ୍ରତି ଅମର୍ଯ୍ୟାଦା ପ୍ରଦର୍ଶନ କଲା । ତା’ ଫଳରେ ଆଉ ଅବସ୍ଥା ସମ୍ଭାଳେ କିଏ ? ଶେଖ୍ ଅବ୍‌ଦୁଲ୍ଲା ପ୍ରମୁଖ ‘ମୁସ୍‌ଲିମ୍ କନ୍‌ଫରେନ୍ସ’ର ନେତୃବୃନ୍ଦ ସଭା ଓ ଶୋଭାଯାତ୍ରା ମାଧ୍ୟମରେ ବିଷୋଦ୍‌ଗାର କରିବା ସଙ୍ଗେସଙ୍ଗେ; ସାମାନ୍ୟ ଅଗ୍ନିକଣାରୁ ପ୍ରଳୟଙ୍କର ଅଗ୍ନିକାଣ୍ଡ ଘଟାଇ, ସମଗ୍ର କାଶ୍ମୀରର ବାୟୁମଣ୍ଡଳକୁ ବିଷାକ୍ତ କରିଦେଲେ । ମହାରାଜା ହରି ସିଂହ ପରିସ୍ଥିତିର ଗମ୍ଭୀରତା ଅନୁଭବ କରି, ଶେଖ୍ ଅବ୍‌ଦୁଲ୍ଲାଙ୍କ ସମେତ ମୁଖ୍ୟ ନେତାମାନଙ୍କୁ ଡକାଇ ପରିସ୍ଥିତିକୁ ସୁଧାରିବାଲାଗି ସମସ୍ତ ପ୍ରକାର ପ୍ରଯତ୍ନ କଲେ । କିନ୍ତୁ ଜାଣିଶୁଣି ରାଜ୍ୟର ବାତାବରଣକୁ ବିଷାକ୍ତ କରିବା ଉଦ୍ଦେଶ୍ୟରେ ସୃଷ୍ଟି କରାଯାଇଥିବା ପରିସ୍ଥିତି ଅବା ସୁଧୁରିପାରନ୍ତା କିପରି ? ମହାରାଜାଙ୍କର ପ୍ରୟାସ ବ୍ୟର୍ଥ ହେଲା । ତେଣୁ ଦେଶରେ ଶାସନ ଓ ଶୃଙ୍ଖଳା ସମସ୍ତ ବଜାୟ ରଖିବା ଉଦ୍ଦେଶ୍ୟରେ କାଶ୍ମୀର ସରକାରଙ୍କ ପକ୍ଷରୁ ତଥାକଥିତ ବିଶିଷ୍ଟ ନେତାମାନଙ୍କୁ ଗିରଫ କରାଗଲା । ସେହି ଗିରଫଦାରି ଫଳରେ ଶ୍ରୀନଗର

ସହରରେ ବନ୍ଦୀମାନଙ୍କୁ ମୁକ୍ତ କରିବାପର୍ଯ୍ୟନ୍ତ ଆନ୍ଦୋଳନ ଗ୍ଭଲି ଦୋକାନ ବଜାର ବନ୍ଦ ରହିଲା । ପ୍ରାୟ ଅଠର ଦିନବ୍ୟାପୀ ଏହି 'ବନ୍ଦ' ଆନ୍ଦୋଳନ ଗ୍ଭଲିବା ପରେ ଦୋକାନ ବଜାର ଖୋଲି ଶ୍ରୀନଗରର ବାତାବରଣ ପରିବର୍ତ୍ତିତ ହେଲା । ତା'ପରେ ପ୍ରାୟ ଅଳ୍ପ କେତେଦିନ ଯାଇଛି କି ନାହିଁ, 'ଜାମା ମସ୍‌ଜିଦ୍'ର 'ଜୁମ୍ମାନମାଜ' ପାଠ ଉତ୍ସବ ପରେ ଅବ୍‌ଦୁଲ୍ କାଦିର୍‌ନାମକ ଜନୈକଉଗ୍ରପନ୍ଥୀ ଉପସ୍ଥିତ ଜନତାକୁ ଉତ୍ତେଜିତ କରାଇ କହିଲେ :

"ଯେଉଁ ରାଜକର୍ମଚାରୀ ଅତ୍ୟାଗ୍ଭର କରୁଛି, ଏ ସଂସାର (ସଫହ୍-ଏ-ହସ୍ତୀ)ରୁ ଚିରଦିନଲାଗି ତା'ର ଅସ୍ତିତ୍ୱ ଲୋପ କରିଦିଅ ।"

ସରକାର ଅବ୍‌ଦୁଲ୍ କାଦିର୍‌ଙ୍କୁ ଗିରଫ କରିନେଇ ତାଙ୍କ ବିରୁଦ୍ଧରେ ମୋକଦ୍ଦମା ଚଳାଇଥିଲେ । ୧୯୩୧ ଜୁଲାଇ ୧୩ ତାରିଖ ଦିନ ଶ୍ରୀନଗରସ୍ଥିତ ସେଣ୍ଟ୍ରାଲ୍ ଜେଲଖାନା ସମ୍ମୁଖରେ ଅବ୍‌ଦୁଲ୍ କାଦିର୍‌ଙ୍କ ମୋକଦ୍ଦମାର ଫଏସଲା ଶୁଣିବା ଲାଗି 'ମୁସ୍‌ଲିମ୍ କନ୍‌ଫରେନ୍‌ସ୍'ର ହଜାର ହଜାର କର୍ମୀ ଏକତ୍ରିତ ହୋଇଗଲେ । ବିଚାରରେ କାଦିର୍ ତିନି ବର୍ଷ ଜେଲଦଣ୍ଡରେ ଦଣ୍ଡିତ ହେଲେ; କିନ୍ତୁ ଉପସ୍ଥିତ ଜନତାଙ୍କ ପକ୍ଷରେ ତାହା ଏକାବେଳକେ ଅସହ୍ୟ ହୋଇପଡ଼ିଲା । ସେମାନେ ସେହି ସମ୍ବାଦ ଶୁଣିବାଲାଗି ବିଗ୍ଭରାଳୟ ସମ୍ମୁଖରେ ଉପସ୍ଥିତ ହୋଇ ନ ଥିଲେ । ଲୋକମାନଙ୍କ ଗଣ୍ଡଗୋଳ କ୍ରମେ ଭୀଷଣ ଆକାର ଧାରଣ କଲା । ଜଣାଗଲା—ସତେ ଯେପରି ଶାସନକଳପକ୍ଷରୁ କୌଣସି ଆଶୁ ପ୍ରତିକାରର ବ୍ୟବସ୍ଥା ନ ହେଲେ, ଧର୍ମାନ୍ଧ ଲୋକମାନେ ଜେଲ୍ ଫାଟକ ଭାଙ୍ଗି ବନ୍ଦୀଙ୍କୁ ମୁକୁଳାଇ ନେବେ । ପରିଶେଷରେ ଅବସ୍ଥା ଅତି ସଙ୍ଗିନ୍ ହୋଇଉଠିବାରୁ ପୋଲିସ୍‌କୁ ଶାନ୍ତି ଓ ଶୃଙ୍ଖଳା ରକ୍ଷା କରିବା ଉଦ୍ଦେଶ୍ୟରେ ଗୁଳି ଚଳାଇବାକୁ ପଡ଼ିଲା । ସେହି ଗୁଳିଗ୍ଭଳନାରେ ସାତ ଜଣ ବ୍ୟକ୍ତି ପ୍ରାଣ ହରାଇଲେ । ଅବଶ୍ୟ ସଙ୍ଗେ ସଙ୍ଗେ ଉପସ୍ଥିତ ଉତ୍ତ୍ୟକ୍ତ ଜନତା ଛିନ୍ନଛତ୍ର ହୋଇଗଲେ; କିନ୍ତୁ ସେତିକରେ ଉତ୍ତେଜନାପୂର୍ଣ୍ଣ ପରିସ୍ଥିତିର କୌଣସି ପରିବର୍ତ୍ତନ ଘଟିଲା ନାହିଁ । ଲୋକମାନେ ସେହି ସାତ ଜଣଙ୍କ ଶବକୁ ଉଠାଇ ନେଇ 'ଜାମା ମସ୍‌ଜିଦ୍'କୁ ଘେନିଆସିଲେ । ତା'ପରେ, ସେହି ଷଡ଼ଯନ୍ତ୍ରକାରୀମାନେ ଅଗ୍ନିବୃଷ୍ଟି ଆରମ୍ଭ କରିଦେଲେ । ଏଭଳି କଦର୍ଯ୍ୟ ବାତାବରଣ ସୃଷ୍ଟି କରିବାକୁ ହିଁ ସେମାନେ କୌଣସି ନା କୌଣସି ପ୍ରକାର ଆଳ ଖୋଜି ବୁଲୁଥିଲେ । 'ଜାମା ମସଜିଦ୍'-ଠାରେ ଜନସମାଗମ ଅସମ୍ଭବ ମାତ୍ରାରେ ବୃଦ୍ଧି ପାଇଲା । ଏପରି ଦୂଷିତ

ବାୟୁମଣ୍ଡଳରେ ଜନତାର ବିକ୍ଷୋଭ ଯେପରି ବୃଦ୍ଧି ପାଇବାର କଥା, ଠିକ୍ ସେହିପରିଭାବରେ ଆନ୍ଦୋଳନ ଉଗ୍ରରୂପ ଧାରଣ କରିବାମାତ୍ରେ, ପୁଣି ପୋଲିସ୍-ପକ୍ଷରୁ ଗୁଳିଗୁଳନା କରାଗଲା । ଏହି ଗୁଳିଗୁଳନାରେ ଆହୁରି ଦଶଜଣ ବ୍ୟକ୍ତିଙ୍କର ପ୍ରାଣ ଗଲା ।

ଦିନକୁ ଦିନ ରାଜ୍ୟର ଶାନ୍ତିଶୃଙ୍ଖଳା ଭାଙ୍ଗି ପଡ଼ିଲା । ଅବଶ୍ୟ ସେତେବେଳକୁ ଚିଫ୍ ସେକ୍ରେଟେରୀ ପଦରୁ ଓ୍ୱେକ୍‌ଫିଲ୍‌ଡ୍‌ଙ୍କୁ ବାହାର କରି ଦିଆଯାଇଥିଲେ ହେଁ, ଇଂରେଜଙ୍କ ଶାସନକଳର ଇଙ୍ଗିତରେ ସେ ଯାହା କରିବାକୁ ଚାହୁଁଥିଲେ, ତାହା ସଫଳତାର ସହିତ ହାସଲ କରି ସାରିଥିଲେ । ତା’ପରେ ପରେ ଜାମୁ ଓ କାଶ୍ମୀର ରାଜ୍ୟରେ କିଛି ନା କିଛି ଗଣ୍ଡଗୋଳ ବରାବର ଲାଗିରହିଲା । ମହାରାଜା ହରି ସିଂହ ‘ଗୋଲ୍‌ଟେବୁଲ୍ ବୈଠକ’ରେ ଭାରତର ସ୍ୱାଧୀନତା ଓ ଭାରତୀୟଙ୍କ ପ୍ରତି ଶାସକଗୋଷ୍ଠୀର ସମଭାବ ପୋଷଣର ଯେଉଁ ମତ ବ୍ୟକ୍ତ କରିଥିଲେ; ସେ ସମ୍ବନ୍ଧରେ କିଛି ଗଠନମୂଳକ କାର୍ଯ୍ୟ ଆରମ୍ଭ କରିବା ତ ଦୂରର କଥା, ଶାନ୍ତିରେ ଟିକିଏ ନିଃଶ୍ୱାସ ମାରିବାପାଇଁ ମଧ୍ୟ ସମୟ ପାଇଲେ ନାହିଁ । ସେ କୌଣସିମତେ ଅବସର ପାଇଥିଲେ ହେଁ, ତାଙ୍କ ମନୋମତ ଯୋଜନାକୁ କାର୍ଯ୍ୟକାରୀ କରିପାରି ନ ଥିଲେ । କାରଣ ସେତେବେଳକୁ ଜାମୁ ଓ କାଶ୍ମୀର ରାଜ୍ୟରେ ସାମ୍ପ୍ରଦାୟିକ ଭେଦଭାବ ଅତି ଉଗ୍ରରୂପ ଧାରଣ କରିସାରିଥିଲା; ବିଶେଷତଃ ‘ମୁସ୍‌ଲିମ୍ କନ୍‌ଫରେନ୍‌ସ’ର ବିରୋଧୀ କାର୍ଯ୍ୟକଳାପ ଫଳରେ ଶ୍ରୀନଗରର ବାତାବରଣ ନିତାନ୍ତ କଳୁଷିତ ହୋଇ-ଉଠିଲା । ହିନ୍ଦୁ ମୁସଲ୍‌ମାନ୍‌ମାନଙ୍କ ମଧ୍ୟରେ ଭେଦଭାବର ବିଷବୀଜ ଅଙ୍କୁରିତ ହୋଇସାରିଥିଲା । ପରମ୍ପରାକ୍ରମେ ଚଳି ଆସୁଥିବା ଭ୍ରାତୃଭାବପୂର୍ଣ୍ଣ ସମ୍ପର୍କରେ ସନ୍ଦେହ ସୃଷ୍ଟି ହୋଇଥିଲା । ସମୟକ୍ରମେ ‘ମୁସ୍‌ଲିମ୍ କନ୍‌ଫରେନ୍‌ସ’ର ନେତୃବୃନ୍ଦଙ୍କ ଗତିବିଧି ଆହୁରି ସନ୍ଦେହଜନକ ହୋଇଉଠିଲା । ସେମାନେ ସରଳ ନିଷ୍କପଟ ଜନତାକୁ ଭ୍ରମପୂର୍ଣ୍ଣ ମାର୍ଗରେ ପରିଚାଳିତ କରାଇ, ଜାତି ଜାତି ମଧ୍ୟରେ ଭେଦଭାବକୁ ଆହୁରି ବଢ଼ାଇଦେଲେ ।

ମହାରାଜା ହରି ସିଂହ କେତେଦୂର ସାମ୍ପ୍ରଦାୟିକ ମନୋଭାବଠାରୁ ଦୂରରେ ଥିଲେ; ଉଦାହରଣସ୍ୱରୂପ ଏଠାରେ ଗୋଟିଏ ମାତ୍ର ଘଟଣାର ଉଲ୍ଲେଖ କରାଯାଇପାରେ ।

୧୯୩୭ ମସିହାରେ 'ପୁଁଛ' ଅଞ୍ଚଳର କେତେକ ମୁସଲ୍‌ମାନ୍‌ଙ୍କଦ୍ୱାରା ଗୋବଧ କରାଗଲା । ତେଣୁ ଏପ୍ରକାର ଗୋବଧ ବିରୁଦ୍ଧରେ ହିନ୍ଦୁଜନତା ଆପତ୍ତି ଅଭିଯୋଗ କରି ମୋକଦ୍ଦମା ଆରମ୍ଭ କଲେ । ପରିଶେଷରେ ରାଜ୍ୟ-ଉଚ୍ଚତମ-ନ୍ୟାୟାଳୟର ପ୍ରଧାନ ବିଚାରପତି ଅବ୍‌ଦୁଲ୍‌କୟୁମ୍ ରାୟ ଦେଲେ—'କୌଣସି ଧାର୍ମିକ ଦୃଷ୍ଟିକୋଣରୁ ଗୋବଧ କରାଯାଇ ନାହିଁ କିମ୍ବା ହିନ୍ଦୁମାନଙ୍କ ଧାର୍ମିକ ଭାବନାରେ ଆଘାତ ଦେବା ଅଭିଯୁକ୍ତ ବ୍ୟକ୍ତିମାନଙ୍କର ଉଦ୍ଦେଶ୍ୟ ନ ଥିଲା ।' ସେହି ଦୃଷ୍ଟିରୁ ପ୍ରଧାନ ବିଚାରପତି ଅପରାଧୀଙ୍କ ପ୍ରତି କଠୋର ଦଣ୍ଡବିଧାନ କରି ନ ଥିଲେ । ବିଚାରପତିଙ୍କର ଏହି ନିଷ୍ପତ୍ତି ବିରୁଦ୍ଧରେ ଜାମ୍ମୁ ଅଞ୍ଚଳରେ; ଦିନେ ଦୁଇଦିନ ନୁହେଁ, ପଞ୍ଚତିରିଶ ଦିନ ଧରି ତୀବ୍ର ପ୍ରତିକ୍ରିୟା ସୃଷ୍ଟି ହୋଇ ଧର୍ମଘଟ ଓ ବିକ୍ଷୋଭ ପ୍ରଦର୍ଶନ ଚାଲିଲା । ପ୍ରତ୍ୟକ୍ଷଦର୍ଶୀଙ୍କ ବିବରଣୀରୁ ଜଣାଯାଏ ଯେ, ଜାମ୍ମୁର ଇତିହାସରେ ସେଭଳି ଧର୍ମଘଟ ଓ ବିକ୍ଷୋଭ ପ୍ରଦର୍ଶନ କେବେହେଲେ ଅନୁଷ୍ଠିତ ହୋଇ ନ ଥିଲା । ସହର ଅଞ୍ଚଳରେ ତ ଏହା ବିରୁଦ୍ଧରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା, ପରନ୍ତୁ ଗ୍ରାମ ଓ ସହରତଳି ଅଞ୍ଚଳରେ ମଧ୍ୟ ଦୋକାନବଜାର ଦୀର୍ଘଦିନ ଧରି ବନ୍ଦ ରହିଥିଲା । ଏସବୁ ସତ୍ତ୍ୱେ ମହାରାଜା ଦୃଢ଼ତାର ସହିତ ପରିସ୍ଥିତିର ସମ୍ମୁଖୀନ ହେଲେ । ତାଙ୍କ ମତରେ—'ନ୍ୟାୟ ସର୍ବୋପରି ଏବଂ ନ୍ୟାୟାଧୀଶଙ୍କ ନିଷ୍ପତ୍ତି ଅକାଟ୍ୟ ସେ ବିଚାର ଠିକ୍ ହେଉ କିମ୍ବା ଭୁଲ୍ ହେଉ, ତା' ବିରୁଦ୍ଧରେ କୌଣସି ଅଭିଯୋଗ ଶୁଣାଯାଇ ପାରିବ ନାହିଁ ।

ଏହିପରିଭାବରେ ଦେଖିବାକୁ ଗଲେ—ରାଜା ହରି ସିଂହ ଥିଲେ ଭାରତର ସର୍ବପ୍ରଥମ ଦେଶୀୟ ରାଜ୍ୟର ଶାସକ, ଯେ କି ୧୯୩୯ ମସିହା ଅକ୍ଟୋବର ୩୧ ତାରିଖରେ ଘୋଷଣା କରି କହିଥିଲେ :

"ଆଜି ତାରିଖଠାରୁ ରାଜ୍ୟର ସମସ୍ତ ସରକାରୀ ମନ୍ଦିରରେ ହରିଜନମାନଙ୍କୁ ଦେବଦର୍ଶନ ଓ ପୂଜା ଅର୍ଚ୍ଚନା କରିବାର ପୂର୍ଣ୍ଣ ଅଧିକାର ଦିଆଯାଉଛି । ସେମାନେ ଗ୍ରାମ ଓ ସହରତଳି ଅଞ୍ଚଳରେ ମଧ୍ୟ ସେମାନଙ୍କଠାରୁ ଉଚ୍ଚ ଜାତିରୂପେ ପରିଚିତ ବ୍ରାହ୍ମଣ, ରାଜପୁତ୍ର ଓ ବୈଶ୍ୟଆଦିମାନଙ୍କ ସହିତ କୂଅ ଓ ବାମ୍ପୀରୁ ଜଳ ବାହାର କରିବାର ଅଧିକାର ଲାଭ କଲେ ।"

ସେ ଯାଏଁ ପର୍ଯ୍ୟନ୍ତ କୂଅ ଓ ବାମ୍ପୀରୁ ପାଣି ବାହାର କରିବା ତ ଦୂରର କଥା, ସେମାନେ ତଉଡିର ଉପରକୁ ଉଠିବାର ମଧ୍ୟ ସୁବିଧା ପାଉ ନ ଥିଲେ ।

ନାବାଳକ ପିଲାମାନେ ବିଡ଼ି ତମାଖୁ ଆଦି ଧୂମପାନ ନ କରିବା, ଗ୍ରାମାଞ୍ଚଳରେ ପଞ୍ଚାୟତ ଶାସନର ବୁନିଆଦି ପକାଇବା, ଜନସାଧାରଣଙ୍କର ସୁଖସମୃଦ୍ଧି ନିମିତ୍ତ ନଦୀ ନାଳ ଉପରେ ପୋଲ ନିର୍ମାଣ କରିବା ତଥା ବିଧବାମାନଙ୍କୁ ପୁନର୍ବିବାହ ଲାଗି ଅନୁମତି ଦେବା ଆଦି ବହୁ ଜନହିତକର ଉନ୍ନତିମୂଳକ କାର୍ଯ୍ୟମାନ ମହାରାଜା ହରି ସିଂହ ଆରମ୍ଭ କରାଇଥିଲେ । ଏଇଥିରୁ ତାଙ୍କ ଶାସନ ଦକ୍ଷତା ସମ୍ବନ୍ଧରେ ବେଶ୍ ଅନୁମାନ କରାଯାଇପାରେ ।



# ତିନି

**ଶେ**ଖ୍ ଅବ୍ଦୁଲ୍ଲାଙ୍କ ବର୍ତ୍ତ୍ମାନ ଚିନ୍ତାଧାରା ହିଁ ତାଙ୍କୁ ଅନ୍ତର୍ଦ୍ୱନ୍ଦ୍ୱରେ ପକାଇଲା । ସେ ନିଜେ ଅନୁଭବ କଲେ—'କାଶ୍ମୀର ମୁସ୍‌ଲିମ୍ କନ୍‌ଫରେନ୍‌ସ୍' ଗୋଟିଏ ସାମ୍ପ୍ରଦାୟିକ ସଂସ୍ଥା ଏବଂ ସେହି ସଂସ୍ଥାଦ୍ୱାରା ସେ ନିଜ ଈପ୍‌ସିତ ଲକ୍ଷ୍ୟରେ ପହଞ୍ଚି ପାରିବେ ନାହିଁ । ସେହି ସଂସ୍ଥା ମାଧ୍ୟମରେ ଯାହା କିଛି ଅର୍ଥ ତାଙ୍କୁ ମିଳିବ, ତଦ୍ୱାରା ତାଙ୍କର ଭବିଷ୍ୟତ ବିଶେଷ କଲ୍ୟାଣକର ହେବ ନାହିଁ । ଅନ୍ୟପକ୍ଷରେ; ପୂଜ୍ୟ ଗାନ୍ଧିଜୀଙ୍କର ଆଦର୍ଶ, ତାଙ୍କ ନେତୃତ୍ୱରେ କଂଗ୍ରେସର ଅଦ୍ଭୁତ ସଙ୍ଗଠନ ଶକ୍ତି, ଲୋକପ୍ରିୟତା, ରୀତିନୀତି, ଅନେକ ସଂସ୍ଥା ବଦଳରେ ଗୋଟିଏ ଦଳର ପରିକଳ୍ପନା ଏବଂ କଂଗ୍ରେସଦଳର କାର୍ଯ୍ୟକଳାପ ଆଦି ଅବ୍‌ଦୁଲ୍ଲାଙ୍କ ମସ୍ତିଷ୍କରେ ଆଲୋଡ଼ନ ସୃଷ୍ଟି କରିବା ସଙ୍ଗେସଙ୍ଗେ ତାଙ୍କ ହୃଦୟକୁ ମଧ୍ୟ ସ୍ପନ୍ଦିତ କରିବାକୁ ଲାଗିଲା । ଧୀରେ ଧୀରେ ଶେଖ୍ ସାହେବ ସେହିଆଡ଼କୁ ଆକର୍ଷିତ ହେଲେ ଏବଂ ତତ୍ ସଙ୍ଗେସଙ୍ଗେ ମଧ୍ୟ ପଣ୍ଡିତ ଜବାହରଲାଲ ନେହରୁଙ୍କ ସହିତ ତାଙ୍କର ପ୍ରଗାଢ଼ ବନ୍ଧୁତା ବୃଦ୍ଧି ପାଇଲା । ଦୁହେଁ ଦୁହିଁଙ୍କୁ ଅନ୍ତରଙ୍ଗ ବନ୍ଧୁଭାବରେ ସମାଦର କଲେ । ତା' ଫଳରେ ଉଭୟଙ୍କ ମଧ୍ୟରେ ଘନିଷ୍ଠତା ଦିନକୁ ଦିନ ବୃଦ୍ଧି ପାଇବାକୁ ଲାଗିଲା । ପରିଣାମରେ ଶେଖ୍ ଅବ୍‌ଦୁଲ୍ଲା 'କାଶ୍ମୀର ମୁସଲିମ କନ୍‌ଫରେନ୍‌ସ୍, ଛାଡ଼ି ନୂତନ ଦଳ 'ନେସ୍‌ନାଲ କନ୍‌ଫରେନ୍‌ସ୍'ରେ ଯୋଗଦେଲେ । ଉକ୍ତ ନବଗଠିତ ଦଳରେ ପୂର୍ବରୁ ସର୍ଦ୍ଦାର ବୁଧ୍ ସିଂହ, ପଣ୍ଡିତ କଶ୍ୟପଲାଲ କଲମ, ପଣ୍ଡିତ ପ୍ରେମନାଥ ବଜାଜ, ଲାଲା ଗିରଧରଲାଲ ଆନନ୍ଦ ଆଦି ପ୍ରସିଦ୍ଧ ବ୍ୟକ୍ତିମାନେ ସଦସ୍ୟ ଥିଲେ । ଉକ୍ତ 'କନ୍‌ଫରେନ୍‌ସ୍'ର ଅଧ୍ୟକ୍ଷ ପଦରେ ଥାଇ ଗୁଲାମ ମହମ୍ମଦ ସାଦ୍ଦିକ (କାଶ୍ମୀରର ଭୂତପୂର୍ବ ମୁଖ୍ୟମନ୍ତ୍ରୀ) ନିଜ ଅଭିଭାଷଣରେ କହିଥିଲେ :

"କାଶ୍ମୀରର ଜନସାଧାରଣଙ୍କର ସ୍ୱାଧୀନତା ସଂଗ୍ରାମ ସହିତ ଯେଉଁ ସମ୍ପର୍କ ରହିଛି, ତା'ର ମୁଖ୍ୟ ଦାୟିତ୍ୱ ପଣ୍ଡିତ ଜବାହରଲାଲ ନେହରୁଙ୍କ ଉପରେ

ବେଶ୍ ନିର୍ଭର କରୁଛୁ । ତାଙ୍କର ପ୍ରଶଂସନୀୟ ପଥପ୍ରଦର୍ଶନ ଫଳରେ 'ନେସ୍‌ନାଲ କନ୍‌ଫରେନ୍‌ସ' ଲୋକତାନ୍ତ୍ରିକ ମାର୍ଗରେ ଅଗ୍ରସର ହୋଇ-ଯାଉଛି । ଆମେ ସ୍ୱରାଷ୍ଟ୍ରରକ୍ଷାର ଏକମାତ୍ର ଲକ୍ଷ୍ୟ ସମ୍ବନ୍ଧରେ ଯେକୌଣସି ବିଷୟର ବିମର୍ଷ କରିବାକୁ ଯିବା, ସେଥିରେ ତାଙ୍କର ମହତ୍ତ୍ୱପୂର୍ଣ୍ଣ ଉପଦେଶର ଇଙ୍ଗିତ ରହିବ ହିଁ ରହିବ ! ତାଙ୍କର ନିର୍ଦ୍ଦେଶ ବ୍ୟତୀତ, କୌଣସି କାର୍ଯ୍ୟପନ୍ଥାରେ ଅଗ୍ରସର ହେବା କେବଳ ଆମ୍ଭମାନଙ୍କ ପକ୍ଷରେ ଅସୁବିଧା-ଜନକ ନୁହେଁ ଅସମ୍ଭବ ମଧ୍ୟ···।"

ଧୀରେ ଧୀରେ 'ନେସ୍‌ନାଲ କନ୍‌ଫରେନ୍‌ସ୍'ର କାର୍ଯ୍ୟକ୍ରମ ଲୋକପ୍ରିୟ ହେବାକୁ ଲାଗିଲା । ହିନ୍ଦୁ, ମୁସଲ୍‌ମାନ୍, ଶିଖ, ଖ୍ରୀଷ୍ଟିଆନ ସମସ୍ତେ କାନ୍ଧକୁ କାନ୍ଧ ମିଳାଇ ଗୋଟିଏ ନୂତନ କାଶ୍ମୀର ଯୋଜନା ପ୍ରସ୍ତୁତ କଲେ ଏବଂ ସେହି ଯୋଜନାକୁ କାର୍ଯ୍ୟକାରୀ କରାଇବା ଉଦ୍ଦେଶ୍ୟରେ ସମସ୍ତେ ଏକମନରେ ପ୍ରଯତ୍ନଶୀଳ ହୋଇପଡ଼ିଲେ । ଶେଖ୍ ଅବ୍‌ଦୁଲ୍ଲା ଏହି ସଙ୍ଗଠନର ଅଗ୍ରଣୀ ହୋଇଗଲେ ଏବଂ ତାଙ୍କର ଅତୀତର କାର୍ଯ୍ୟକଳାପ ମଧ୍ୟ ପରିବର୍ତ୍ତିତ ହୋଇଗଲା । ସେ ଜଣେ ପ୍ରସିଦ୍ଧ ଗାନ୍ଧୀବାଦୀଭାବରେ ନିଜକୁ ପ୍ରସ୍ତୁତ କରି, ତାଙ୍କର (ଗାନ୍ଧୀଙ୍କ) ପ୍ରଦର୍ଶିତ ପନ୍ଥାରେ କାଶ୍ମୀରର ଭବିଷ୍ୟତ ଗଠନ କରିବାରେ ମନପ୍ରାଣ ଢାଳିଦେଲେ । ରାଜ୍ୟବ୍ୟାପୀ ସତ୍ୟାଗ୍ରହ ଆନ୍ଦୋଳନ ଚାଲିଲା; ନିରୀହ ପ୍ରଜାମାନଙ୍କର ସୁଖ ସୁବିଧାପ୍ରତି ଦୃଷ୍ଟି ଦେଇ କାର୍ଯ୍ୟ କରିବାରୁ ଶେଖ ଅବଦୁଲ୍ଲାଙ୍କ ବ୍ୟକ୍ତିତ୍ୱ ଦିନକୁ ଦିନ ବିକଶିତ ହୋଇଉଠିଲା । ଧୀରେ ଧୀରେ ସାଧାରଣ ଜନତାଙ୍କ ମଧ୍ୟରେ ତାଙ୍କର ସମ୍ମାନ ବୃଦ୍ଧି ପାଇବାକୁ ଲାଗିଲା । ସମୟର ପ୍ରବାହ ଅନୁସାରେ ସେ ଜଣେ ଆଦର୍ଶ ଲୋକପ୍ରିୟ ନେତାରୂପେ ନିଜକୁ ଗଢ଼ିପାରିଲେ । ଏହି ସମୟରେ 'ନେସ୍‌ନାଲ କନ୍‌ଫରେନ୍‌ସ୍'ଦ୍ୱାରା ପଣ୍ଡିତ ଜବାହରଲାଲଜୀ ନିମନ୍ତ୍ରିତ ହେଲେ ଏବଂ କାଶ୍ମୀରର ଜନସାଧାରଣ ତାଙ୍କୁ ଅବିସ୍ମରଣୀୟ ହାର୍ଦ୍ଦିକ ସମ୍ବର୍ଦ୍ଧନା ଜଣାଇଲେ । ପଣ୍ଡିତଜୀ କାଶ୍ମୀର ଜନତାର 'ମଉଡ଼ମଣି'ରୂପେ ଜନତାର ହୃଦୟରେ ଆସନ ଦୃଢ଼ କରି ବସିଲେ ।

ଏହି ସମୟର ଅବ୍ୟବହିତ ପରେ ପୂଜ୍ୟ ବାପୁଜୀଙ୍କ 'ଭାରତ ଛାଡ଼' ଧ୍ୱନି ଚାରିଆଡ଼େ ପ୍ରତିଧ୍ୱନିତ ହେବାକୁ ଲାଗିଲା । ଭାରତର ଗୋଟିଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ସମଗ୍ର ଭାରତବର୍ଷରେ ନବଚେତନା ଜାଗ୍ରତ ହେଲା ।

ସ୍ୱାଧୀନତା ସଂଗ୍ରାମର ଉନ୍ମାଦନାରେ ଉନ୍ମତ୍ତ ସୈନିକମାନେ ଦେଶମାତୃକାର ବଳିବେଦୀରେ ଜୀବନ ଉତ୍ସର୍ଗ କରିଦେଇ ସ୍ୱାଧୀନ ସଙ୍ଗୀତର ଆଳାପରେ ଉଦ୍‌ବୁଦ୍ଧ ହୋଇଉଠିଲେ । ଭାରତର ସ୍ୱାଧୀନତା ଆନ୍ଦୋଳନକୁ ସମର୍ଥନ ଜଣାଇ 'ନେସ୍‌ନାଲ୍ କନ୍‌ଫରେନସ୍'ର କର୍ଣ୍ଣଧାରମାନେ ଶ୍ରୀନଗରର ଏକ ବିରାଟ ସଭାରେ ସହାନୁଭୂତି ପ୍ରଦର୍ଶନପୂର୍ବକ ପ୍ରସ୍ତାବ ଗ୍ରହଣ କରିବା ସଙ୍ଗେ ସଙ୍ଗେ, ଭାରତରୁ ଇଂରେଜ ଶାସନର ଆଶୁ ବିଲୟ ଲାଗି ଦୃଢ଼ ଦାବି ଜଣାଇଲେ । ଏହି ଜନ-ଆନ୍ଦୋଳନ ଧୀରେ ଧୀରେ ବୃଦ୍ଧିପାଇ ଚାରିଆଡ଼େ ସଭାସମିତି ଓ ଶୋଭାଯାତ୍ରା ଜରିଆରେ ପ୍ରତିବାଦ ପ୍ରଦର୍ଶନ କରାଗଲା । ଅତ୍ୟାବଶ୍ୟକୀୟ ଜିନିଷପତ୍ରର ଦରଦାମ ଅତିମାତ୍ରାରେ ବୃଦ୍ଧି ପାଇବା ଫଳରେ, ବିକ୍ଷୋଭ ତୀବ୍ର ଆକାର ଧାରଣ କଲା । ଜନସାଧାରଣଙ୍କ ଅଭାବ-ଅସୁବିଧାପ୍ରତି ଭ୍ରୂକ୍ଷେପ ନ କରି ସ୍ୱାଧୀନଚେତାଙ୍କ ତଥାକଥିତ ପ୍ରତିଷ୍ଠାଜନକ ସ୍ୱର ବନ୍ଦ କରିଦେଇ ସେମାନଙ୍କ ବ୍ୟକ୍ତିତ୍ୱକୁ ଦଳିଦେବା ଉଦ୍ଦେଶ୍ୟରେ 'ହିନ୍ଦୁସଭା'ର ନେତା ଶ୍ରୀ ଗୋପାଳ ଦତ୍ତ ଓ କବିରାଜ ବିଷ୍ଣୁ ଗୁପ୍ତଙ୍କୁ ଗିରଫ କରିନେଲେ । ଏହି ନେତାଦ୍ୱୟଙ୍କ ଗିରଫ ଫଳରେ ଆନ୍ଦୋଳନରୂପକ ପ୍ରଜ୍ୱଳିତ ଅଗ୍ନିକୁଣ୍ଡରେ ଘୃତାହୁତି ପଡ଼ି ଚାରିଆଡ଼େ ଉତ୍ତେଜନାପୂର୍ଣ୍ଣ ବାତାବରଣର ପ୍ରବଳ ଉଗ୍ର ବହ୍ନି ଜଳିଲା । ତା'ରି ଫଳରେ ଜନସାଧାରଣଙ୍କ ପକ୍ଷରୁ ଏକ ବିରାଟ ପଟୁଆର ବାହାରିଲା । ଏହି ବିକ୍ଷୋଭ ପଟୁଆରରେ ହିନ୍ଦୁ, ମୁସଲମାନ୍ ଓ ଶିଖ ଧର୍ମାବଲମ୍ବୀ ଜନତା ନିର୍ବିଶେଷରେ ହଜାର ହଜାର ସଂଖ୍ୟକ ଜନତା ସମ୍ମିଳିତ ହୋଇଥିଲେ । ବିକ୍ଷୋଭ ପ୍ରଦର୍ଶନକାରୀ ଜନତା ସମବେତ କଣ୍ଠରେ 'ହାୟ୍ ରେଟ୍‌ଟୀ', 'ହାୟ୍ ରେଟ୍‌ଟୀ' ଧ୍ୱନି କରି ଗଗନ-ପବନ କମ୍ପାଇଦେଲେ । ଶୋଭା-ଯାତ୍ରାରେ ଭାଗ ନେଇଥିବା ଲୋକମାନେ ସହରର ବିଭିନ୍ନ ମାର୍ଗ ଦେଇ ଅଗ୍ରସର ହୋଇ 'ସିଟିଚୌକ୍'ଠାରେ ଏକତ୍ରିତ ହେଲେ । ଏଠାରେ ପୋଲିସମାନେ ଏକ ଭୁଲ କରି ବସିଲେ । ସେମାନେ ଜନତାର ଦାବିପ୍ରତି ସହାନୁଭୂତିଶୀଳ ନ ହୋଇ, ସମବେତ ଜନତାକୁ ଛିନ୍ନଛତ୍ର କରିବା ଉଦ୍ଦେଶ୍ୟରେ 'ଲାଠିଚାର୍ଜ' କଲେ । ତା'ଫଳରେ ସାଧାରଣତଃ ଯେଉଁ ପ୍ରତିକ୍ରିୟାର ସମ୍ଭାବନା ଥିଲା, ତାହା ହିଁ ଘଟିଲା । ଜନତାପକ୍ଷରୁ ନିର୍ଦ୍ଦୟ ପୋଲିସଙ୍କ ଉପରକୁ ଢେଲା ପଥର ବୃଷ୍ଟି ହେବାକୁ ଲାଗିଲା । ତା'ପରେ ପୋଲିସମାନଙ୍କ ପକ୍ଷରୁ ଯଥାଶୀଘ୍ର ସମ୍ଭବ, ପ୍ରତିକ୍ରିୟାସ୍ୱରୂପ, ଗୁଳିବୃଷ୍ଟି ଆରମ୍ଭ ହେଲା । ଏହି ଗୁଳିକାଣ୍ଡରେ ଦୁଇ ଜଣ ମୁସଲମାନ ଓ ତିନି'ଜଣ ହିନ୍ଦୁ ମୃତ୍ୟୁବରଣ କଲେ । ସଙ୍ଗେ ସଙ୍ଗେ ଜାମ୍ମୁ ସହରରେ 'କର୍ଫ୍ୟୁ' ଜାରି ହୋଇଗଲା ।

ପରଦିନ ହଜାର ହଜାର ବ୍ୟକ୍ତି ଗୁଳିକାଣ୍ଡରେ ମୃତବ୍ୟକ୍ତିଙ୍କ ଶବଗୁଡ଼ିକୁ ନେବାଲାଗି ଡାକ୍ତରଖାନା ସମ୍ମୁଖରେ ଏକତ୍ରିତ ହେଲେ । ଶବଗୁଡ଼ିକର ବ୍ୟବଚ୍ଛେଦ ପରେ ସେମାନଙ୍କୁ ଦେଇ ଦିଆଗଲା । ହିନ୍ଦୁମାନେ ମୁସଲମାନମାନଙ୍କ 'କଫିନ୍' ଉଠାଇଲେ ଏବଂ ମୁସଲମାନମାନେ ହିନ୍ଦୁମାନଙ୍କ 'କୋକେଇ' ଉଠାଇ ଶୋଭାଯାତ୍ରାରେ ଅଗ୍ରସର ହେଲେ । ହିନ୍ଦୁମାନେ 'ଆଲ୍ଲା' 'ଆଲ୍ଲା' ଓ ମୁସଲ୍‌ମାନମାନେ 'ରାମନାମ୍ ସତ୍ୟ ହୈ' ଧ୍ୱନିକରି ଶ୍ମଶାନ ଅଭିମୁଖରେ ଯାତ୍ରା କଲେ । ଭ୍ରାତୃତ୍ୱବନ୍ଧନର ସେ ଦୃଶ୍ୟ, ବାସ୍ତବିକ ଅବିସ୍ମରଣୀୟ ! କେବଳ ସେତିକି ନୁହେଁ, ଗୋଟିଏ ସ୍ଥାନରେ ହିନ୍ଦୁ ଓ ମୁସଲମାନଙ୍କ ଶବଗୁଡ଼ିକୁ ନିଜ ନିଜର ସମ୍ପ୍ରଦାୟଗତ ସଂସ୍କାର ଅନୁସାରେ ଜଳାଇ ଦିଆଗଲା ଓ କବର ଦିଆଗଲା । ପ୍ରକୃତରେ ସେ ଦୃଶ୍ୟ ଥିଲା, ଅଭୂତପୂର୍ବ ଓ ଆଶ୍ଚର୍ଯ୍ୟଜନକ । ଏହି ଘଟଣାର ଦିନକ ପରେ, ମହାରାଜା ହରି ସିଂହଙ୍କୁ ଶ୍ରୀନଗରରେ ସମ୍ବାଦ ଦିଆଗଲା । ମହାରାଜା ଏ ସମ୍ବାଦ ପାଇବାମାତ୍ରେ, ପ୍ରଧାନମନ୍ତ୍ରୀ କୈଳାସନାରାୟଣ ହସ୍କରଙ୍କୁ ପ୍ରକୃତ ତଥ୍ୟର ଅନୁସନ୍ଧାନ ଲାଗି ଜାମ୍ମୁ ପଠାଇଦେଲେ ଏବଂ ଏପରି ଦୁର୍ଭାଗ୍ୟଜନକ ପରିସ୍ଥିତି ଯୋଗୁଁ ଦୁଃଖ ପ୍ରକାଶ କରିବା ସଙ୍ଗେ ସଙ୍ଗେ ତାତ୍କାଳିକ ସାହାଯ୍ୟ ଲାଗି, ନିଜର ହାତ ପାଣ୍ଠିରୁ ପଚିଶ ହଜାର ଟଙ୍କା ଦେବା ଲାଗି ଘୋଷଣା କଲେ । ମହାରାଣୀ ତାରା ଦେବୀ ଓ ଯୁବରାଜ କରଣ ସିଂହଙ୍କ ପକ୍ଷରୁ ମଧ୍ୟ ପାଞ୍ଚ ପାଞ୍ଚ ହଜାର ଟଙ୍କା ସାହାଯ୍ୟ ଉଦ୍ଦେଶ୍ୟରେ ଦିଆଯିବାର ଘୋଷଣା ପ୍ରକାଶ ପାଇଲା । ଏତଦ୍‌ବ୍ୟତୀତ ମହାରାଜା ହରି ସିଂହ, ଦରିଦ୍ର ଜନତାଙ୍କ ସାହାଯ୍ୟ ଉଦ୍ଦେଶ୍ୟରେ ଦୁଇ ଲକ୍ଷ ଟଙ୍କାର ଗୋଟିଏ 'ସାହାଯ୍ୟ ପାଣ୍ଠି' (Relief Fund) ଖୋଲିଲେ । ଗୁଳିକାଣ୍ଡ ସମ୍ପର୍କରେ ପ୍ରକୃତ ତଥ୍ୟ ବାହାର କରିବାଲାଗି ମହାରାଜା ରାଜ୍ୟର ବିଭିନ୍ନ ରାଜନୈତିକ ଦଳର ନେତୃବର୍ଗଙ୍କୁ ଅନୁମତି ଦେଲେ । 'ନେସ୍‌ନାଲ୍ କନ୍‌ଫରେନ୍‌ସ' ପକ୍ଷରୁ ଶେଖ୍ ଅବ୍‌ଦୁଲ୍ଲା ଓ ମିର୍ଜା ଅଫଜଲ୍ ବେଗ୍ ଜାମ୍ମୁ ଯାଇ ଘଟଣା ସମ୍ପର୍କରେ ଅନୁସନ୍ଧାନ ଆରମ୍ଭ କଲେ । ଅନୁସନ୍ଧାନ କାର୍ଯ୍ୟ ଶେଷ ହେବାପରେ ସରକାରଙ୍କ ସହିତ କଥାବାର୍ତ୍ତା ଆରମ୍ଭ ହେଲା । ସେହି ଆଲୋଚନା ଫଳରେ ସମସ୍ତ ରାଜବନ୍ଦୀଙ୍କୁ ମୁକ୍ତ କରାଗଲା ଏବଂ ଗୁଳିକାଣ୍ଡ ସମ୍ବନ୍ଧରେ ବିଚାର ବିଭାଗୀୟ ତଦନ୍ତ କରାଯିବା ଲାଗି ସରକାରଙ୍କ ମତ ଘୋଷିତ ହେଲା । ତା'ର ଫଳରେ ଦୀର୍ଘ ନ'ଦିନଧରି ଚାଲିଥିବା ଜାମ୍ମୁ ସହରର 'ହରତାଳ' ସମାପ୍ତ ହୋଇ ସ୍ୱାଭାବିକ ଅବସ୍ଥା ଫେରିଆସିଲା ।

୧୯୪୪ ମସିହା ଜୁନ୍ ମାସରେ 'ଅଖିଳ ଭାରତୀୟ ମୁସ୍‌ଲିମ୍ ଲିଗ୍‌ର ସଭାପତି ମହମ୍ମଦ ଅଲି ଜିନ୍ନା ଶ୍ରୀନଗର ଆସିଲେ । 'ନେସ୍‌ନାଲ୍ କନ୍‌ଫରେନ୍‌ସ' ଓ 'ମୁସ୍‌ଲିମ୍ କନ୍‌ଫରେନ୍‌ସ' ପକ୍ଷରୁ ପୃଥକ୍ ପୃଥକ୍‌ଭାବରେ ସ୍ୱାଗତ ସମ୍ବର୍ଦ୍ଧନା ଜ୍ଞାପନ କରାଗଲା । ନେସ୍‌ନାଲ୍ କନ୍‌ଫରେନ୍‌ସ' ପକ୍ଷରୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇ ଶେଖ୍ ଅବ୍‌ଦୁଲ୍ଲା କହିଥିଲେ :

"ଆପଣଙ୍କ ମତବାଦ ସହିତ ଆମ ଚିନ୍ତାଧାରାର ବିଭେଦ ଥିଲେ ମଧ୍ୟ ଆଜି ଆମେ କାଶ୍ମୀରର ଅଧିବାସୀଗଣ ଆପଣଙ୍କୁ ଜଣେ ପ୍ରତିଷ୍ଠିତ ହିନ୍ଦୁସ୍ତାନୀ ଭାବରେ ସ୍ୱାଗତ ଜଣାଉଛୁଁ । ଆମେ ଆଶା କରୁ—ଆପଣ ହିନ୍ଦୁସ୍ତାନର ନେତୃବର୍ଗଙ୍କ ସହିତ ସମ୍ମିଳିତ ହୋଇ, ଏପରି କୌଣସି ନିଷ୍ପତ୍ତିରେ ପହଞ୍ଚିବାକୁ ଚେଷ୍ଟା କରିବେ, ଯାହା ଫଳରେ କୋଟି କୋଟି ଜନତା ବହୁଦିନର ଦାସତ୍ୱ-ବନ୍ଧନରୁ ମୁକ୍ତ ହୋଇ ପାରିବେ ।"

ଦ୍ୱିତୀୟ ଦିନ, ମହମ୍ମଦ ଅଲି ଜିନ୍ନା 'ମୁସଲିମ୍ କନ୍‌ଫରେନ୍‌ସ୍'ର ଅନ୍ୟ ଏକ ସଭାରେ ଶେଖ୍ ଅବ୍‌ଦୁଲ୍ଲାଙ୍କୁ ଜବାବ ଦେଇ କହିଲେ :

"ମୁସଲମାନମାନଙ୍କର ଖୁଦା ଏକ, କଲ୍‌ମା ଏକପ୍ରକାର ଓ କାର୍ଯ୍ୟକ୍ଷେତ୍ର ଏକ । ତେଣୁ ମୁଁ କାଶ୍ମୀରର ମୁସଲ୍‌ମାନମାନଙ୍କଠାରେ ଗୋଟିଏ ଦରଖାସ୍ତ କରୁଛି—ସେ 'ମୁସ୍‌ଲିମ୍ କନ୍‌ଫରେନ୍‌ସ'ରେ ଯୋଗଦେଇ ନିଜର ଦାବିକୁ ବଳବତ୍ତର କରିବାରେ ଆପ୍ରାଣ ଚେଷ୍ଟା କରନ୍ତୁ ।"

ମି: ଜିନ୍ନାଙ୍କର ଏ ପ୍ରସ୍ତାବର ଜବାବ ଦେଇ ଶେଖ୍ ଅବଦୁଲ୍ଲା ଆଉ ଗୋଟିଏ ସାଧାରଣ ସଭାରେ କହିଥିଲେ :

"ମୋର ତେର ବର୍ଷର ଅଭିଜ୍ଞତାରୁ ମୁଁ ଭଲଭାବରେ ଜାଣିପାରିଛି ଯେ, ଏହି ଅଞ୍ଚଳର ସମସ୍ତ ପ୍ରକାର ଅସୁବିଧାର ଦୂରୀକରଣ ଲାଗି ହିନ୍ଦୁ, ମୁସଲମାନ, ଶିଖ ଆଦି ଜନସାଧାରଣଙ୍କ ମଧ୍ୟରେ ଭ୍ରାତୃତ୍ୱ ଭାବର ପ୍ରତିଷ୍ଠା ଏକାନ୍ତ ଆବଶ୍ୟକ ।"

ଏହିପରି ଭାବରେ ମହମ୍ମଦ୍ ଅଲୀ ଜିନ୍ନା ଓ ଶେଖ୍ ଅବ୍‌ଦୁଲ୍ଲାଙ୍କ ମଧ୍ୟରେ ବାଦ-ପ୍ରତିବାଦ ଲାଗି ରହିଲା । ତା'ଫଳରେ ଦିନକୁ ଦିନ ଜିନ୍ନାଙ୍କର ବିରକ୍ତି ବୃଦ୍ଧି ପାଇଲା । ପରିଶେଷରେ ଶେଖ୍ ଅବଦୁଲ୍ଲା, କାଶ୍ମୀରରୁ ବାହାରିଯିବାଲାଗି ଜିନ୍ନାଙ୍କୁ ବାଧ୍ୟ କଲେ । ତଥାପି ଜିନ୍ନା ସାହେବ ଆଉରି କିଛିଦିନ ରହିବାକୁ

ଅପଚେଷ୍ଟା ଚଳାଇଲେ । ତାହା ଆଜି ସମ୍ଭବ ହୁଅନ୍ତା କିପରି ? ଜନତା ନିଜର ପ୍ରିୟତମ ନେତା ଶେଖ୍ ଅବ୍ଦୁଲ୍ଲାଙ୍କ କଥନାନୁସାରେ ଜିନ୍ନାଙ୍କୁ ଶ୍ରୀନଗର ଛାଡ଼ିବା-ଲାଗି ବାଧ୍ୟ କଲେ । ଜିନ୍ନା କେଉଁ ମତଲବ୍‌ରେ କେଜାଣି, ଶ୍ରୀନଗରରୁ 'ବାରାମୁଲା' ଗ୍ଲଲଗଲେ; କିନ୍ତୁ ସେଠାରେ ମଧ୍ୟ ତାଙ୍କ ଅବସ୍ଥା ଦୟନୀୟ ହୋଇ ଉଠିଲା । ଯଦି ପୋଲିସ ତାଙ୍କୁ ନେଇ ରାଜ୍ୟର ସୀମାନ୍ତ'କୋହାଲା' ପାରକରାଇ ଦେଇ ନ ଥା'ନ୍ତେ, ତା'ହେଲେ କିଏ ଜାଣେ, ତାଙ୍କର ଅବସ୍ଥା କ'ଣ ହୋଇଥା'ନ୍ତା !

ଭାରତର ଜନସାଧାରଣଙ୍କ ହୃଦୟରେ ପଣ୍ଡିତ ଜବାହରଲାଲ ନେହରୁ ଯେପରି ସ୍ଥାନ ଅଧିକାର କରିଥିଲେ, ଠିକ୍ ସେହିପରି ଜାମ୍ମୁ ଓ କାଶ୍ମୀରର ଜନତା ଆନ୍ତରିକତାର ସହିତ ଶେଖ୍ ଅବ୍ଦୁଲ୍ଲାଙ୍କୁ ସମ୍ମାନ ପ୍ରଦର୍ଶନ କରୁଥିଲେ । ତାଙ୍କ ଅତୀତର ଇତିହାସକୁ ଜନସାଧାରଣ ଏକାବେଳକେ ପାଶୋରି ଦେଇଥିଲେ । ସେତେବେଳେ ସେ ଥିଲେ—ସହାନୁଭୂତିର ପାତ୍ର, ଦୁଃଖସୁଖର ସାଥୀ ତଥା ଜନତାର ଚଲାପଥରେ ପଥିକ । ସେ ସମୟରେ ତାଙ୍କର ସ୍ୱାର୍ଥ ବୋଲି କିଛି ନ ଥିଲା; ସେ ଥିଲେ—ଜନତାର ସେବକ, ଜନସାଧାରଣଙ୍କ ନିର୍ଦ୍ଦେଶର ପରିପାଳକ । ଧୀରେ ଧୀରେ ଜାମ୍ମୁ ଓ କାଶ୍ମୀରରେ ତାଙ୍କର ପ୍ରତିଷ୍ଠା ବୃଦ୍ଧି ପାଇଲା ଏବଂ ରାଜ୍ୟର ଜନସାଧାରଣଙ୍କ ଉପରେ 'ନେସ୍‌ନାଲ୍ କନ୍‌ଫରେନ୍‌ସ'ର ପ୍ରଭାବ ପ୍ରତିଫଳିତ ହେବାକୁ ଲାଗିଲା ।

ସନ୍ ୧୯୪୫ ସାଲ ଅଗଷ୍ଟ ମାସରେ 'ନେସ୍‌ନାଲ କନ୍‌ଫରେନ୍‌ସ୍‌ର' ଷଷ୍ଠ ବାର୍ଷିକ ସମ୍ମେଳନର ଆୟୋଜନ କରାଗଲା । ସମ୍ମେଳନର ପ୍ରଧାନ ଉଦ୍ୟୋକ୍ତାମାନଙ୍କଦ୍ୱାରା ନିମନ୍ତ୍ରିତ ହୋଇ ପଣ୍ଡିତ ଜବାହରଲାଲଜୀ, ମୌଲାନା ଅବୁଲ୍‌କଲମ୍ ଆଜାଦ, ସୀମାନ୍ତ-ଗାନ୍ଧୀ ଅବ୍ଦୁଲ୍ ଗଫ୍‌ଫାର ଖାଁ, ମୃଦୁଲା ସାରାଭାଇ, ଓ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଆଦି ଏହି ଅଧିବେଶନରେ ସମ୍ମିଳିତ ହେବାଲାଗି ଶ୍ରୀନଗରରେ ଉପସ୍ଥିତ ହେଲେ । ଏହି ନେତୃବୃନ୍ଦଙ୍କ ସମ୍ମାନାର୍ଥ ଏକ ବିରାଟ 'ନୌକା ପଟୁଆର' ବାହାର କରାଗଲା । ଏହି ପଟୁଆରରେ ପ୍ରାୟ ଆଠ ଶହ ନୌକା ସମ୍ମିଳିତ ହୋଇଥିଲେ । ଦୁଇପଟରେ ହଜାର ହଜାର ଜନତା ଛିଡ଼ା ହୋଇ ପୁଷ୍ପବୃଷ୍ଟିଦ୍ୱାରା ପ୍ରିୟ ନେତାଙ୍କୁ ହାର୍ଦ୍ଦିକ ସ୍ୱାଗତ ଜଣାଇଲେ । ବାସ୍ତବିକ୍ ଦର୍ଶନୀୟ ଥିଲା ସେ ଦୃଶ୍ୟ ! କିନ୍ତୁ ସେହି ପଟୁଆର ଯାଇ 'ଅଲୀକଦଲ' ନିକଟରେ ପହଞ୍ଚିବାକ୍ଷଣି 'ମୁସ୍‌ଲିମ୍ କନ୍‌ଫରେନ୍‌ସ୍' ପକ୍ଷରୁ ଟେକାପଥର ବୃଷ୍ଟି ହେଲା । ଉକ୍ତ ଗଣ୍ଡଗୋଳର ବିରୋଧ କରି 'ନେସ୍‌ନାଲ୍ କନ୍‌ଫରେନ୍‌ସ୍'ର

କର୍ମୀମାନେ ଟେକାପଥର ବୃଷ୍ଟି ଆରମ୍ଭ କରିଦେଲେ । ଉଭୟ ପକ୍ଷର ଟେକା-ପଥର ମାଡ଼ରେ ଅନେକ ବ୍ୟକ୍ତି ଆହତ ହେଲେ; ଏପରିକି 'ନେସ୍‌ନାଲ କନ୍-ଫରେନ୍‌ସ'ର କେତେକ କର୍ମୀ ଡାକ୍ତରଖାନାରେ ଭର୍ତ୍ତି ହେଲେ ଏବଂ ଜଣେ କର୍ମୀଙ୍କର ମଧ୍ୟ ଡାକ୍ତରଖାନାରେ ମୃତ୍ୟୁ ଘଟିଲା । ସେହି ଗଣ୍ଡଗୋଳରେ କେତେଜଣ ପୋଲିସ ଆହତ ହୋଇଥିଲେ । କୌଣସି ପ୍ରକାରରେ, ଶୋଭାଯାତ୍ରା ଯାଇ ସଭାମଣ୍ଡପ ନିର୍ମିତ ହୋଇଥିବା 'ହଜୁରିବାଗ୍'ରେ ପହଞ୍ଚିଗଲା । ପ୍ରାୟ ଏକ ଲକ୍ଷ ଲୋକଙ୍କ ଜୟଧ୍ୱନି ତଥା ଆନନ୍ଦ-ଉଲ୍ଲାସର ବାତାବରଣ ମଧ୍ୟରେ ସଭାକାର୍ଯ୍ୟ ଆରମ୍ଭ ହେଲା । ନିଜର ଦୀର୍ଘ ଭାଷଣ ମଧ୍ୟରେ ଶେଖ୍ ଅବ୍‌ଦୁଲ୍ଲା 'ମୁସ୍‌ଲିମ୍ କନ୍‌ଫରେନ୍‌ସ' ଦ୍ୱାରା ସୃଷ୍ଟି କରାଯାଇଥିବା ଗଣ୍ଡଗୋଳର ନିନ୍ଦାବାଦ କରି କହିଲେ:—

"ଏହି ଗଣ୍ଡଗୋଳ ପଛରେ ଶାସକ ଗୋଷ୍ଠୀ ଓ 'ମୁସ୍‌ଲିମ୍ କନ୍-ଫରେନ୍‌ସ'ର ଚକ୍ରାନ୍ତ ରହିଛି । ଯଦି ଜିନ୍ନା ସାହେବ ଭାବୁଥା'ନ୍ତି ଯେ, ରାଜନୈତିକ ବିଶ୍ୱାସଘାତକଙ୍କ ସହିତ ହାତମିଳାଇ ସେ ଉନ୍ନତି କରିବେ; ତା'ହେଲେ, ତାହା ତାଙ୍କର ଭ୍ରମଧାରଣା ଓ ସେ କଳ୍ପନାଲୋକରେ ଭାସି ଭାସି ଅଗ୍ରଗତି କରୁଛନ୍ତି । ପଞ୍ଜାବର ମୁସ୍‌ଲିମ୍ ଲିଗ୍‌ର ନେତୃବୃନ୍ଦ ଓ ଲିଗ୍ ସମର୍ଥକ ପ୍ରେସଗୁଡ଼ିକର କାର୍ଯ୍ୟକଳାପ ନିତାନ୍ତ ଲଜ୍ଜାଜନକ ଓ ଇସଲାମ୍ ବିରୋଧୀ ମନୋଭାବ ! ଆମକୁ ଦୁଃଖର ସହିତ କହିବାକୁ ପଡ଼ୁଛି, ଶାସକ ଗୋଷ୍ଠୀଙ୍କୁ ଏ ଏବୁର ଖବର ଥିଲେ ମଧ୍ୟ ଠିକ୍ ସମୟରେ ହସ୍ତକ୍ଷେପ କରି ଏପ୍ରକାର ଗଣ୍ଡଗୋଳକୁ ରୋକି ପାରିଲେ ନାହିଁ × × × ମୌଲାନା ଆଜାଦ୍‌ଙ୍କ ଆତ୍ମତ୍ୟାଗ ତଥା ଯୋଗ୍ୟତାର ତୁଳନାରେ ମିଃ ଜିନ୍ନା ତାଙ୍କର ପଦଧୂଳିକୁ ମଧ୍ୟ ସରି ହେବେ ନାହିଁ । 'ମୁସ୍‌ଲିମ କନ୍‌ଫରେନ୍‌ସ'ର ଏପ୍ରକାର ଜନବିରୋଧୀ କାର୍ଯ୍ୟକଳାପର ଉପଯୁକ୍ତ ଜବାବ ଦିଆଯିବ ! ଏହି ବିରୋଧୀ ମନୋଭାବର ଉପଯୁକ୍ତ ଜବାବ ଦେବା ଆମର କର୍ତ୍ତବ୍ୟ । ଆମେ ଏ ଘଟଣାକୁ ସାମାନ୍ୟ ମନେକରି ଭୁଲିଯିବୁ ନାହିଁ, ବରଂ ଇହାର ଜବାବ ପଥରରେ ଦିଆଯିବ । ମୁସ୍‌ଲିମ୍ ଲିଗ୍ ଘୃଣା ଓ ବୈମନସ୍ୟର ବୀଜ ବପନ କରିବାଲାଗି ଶ୍ରୀନଗରରେ ପ୍ରବେଶ କରିଛି । କିନ୍ତୁ ଏ ରାଜ୍ୟର ଚିରାଚରିତ ଶାନ୍ତିର କାନନରେ ଅଗ୍ନିକଣିକାର ବୃଷ୍ଟିଲାଗି ଆମେ କେବେହେଲେ ସୁଯୋଗ ଦେବୁ ନାହିଁ ।"

ଏହି ଘଟଣାର ଗୃରି ମାସ ପରେ 'ପ୍ରଦୟୁମ୍ନର' ନାମକ ସ୍ଥାନରେ ଏକ ପ୍ରଦର୍ଶନୀ ଉଦ୍‌ଘାଟନର ଉତ୍ସବରେ ଶେଖ୍ ଅବ୍‌ଦୁଲ୍ଲା ଯେଉଁ ଭାଷଣ ଦେଇଥିଲେ; ତାହାର କେତେକାଂଶ ଏଠାରେ ଉଦ୍ଧାର କରିବା, କେତେକ ଦୃଷ୍ଟିକୋଣରୁ ଅତ୍ୟନ୍ତ ଆବଶ୍ୟକ ତଥା ବିଶେଷ ବିଚାରଣୀୟ ମଧ୍ୟ ।

ଶେଖ୍ ଅବଦୁଲ୍ଲା କହିଥିଲେ :

"ପାକିସ୍ତାନ କିଂବା ଏହି ଧରଣର ଅନ୍ୟ ଯେକୌଣସି ଧ୍ୱନି ସ୍ୱାଧୀନତା ପ୍ରାପ୍ତିଠାରୁ ହଜାର ହଜାର ମାଇଲ ଦୂରରେ ରହି ବାଧା ସୃଷ୍ଟି କରୁଛି । ଏଭଳି ଅବାସ୍ତବ ଧ୍ୱନି ଫଳରେ ସ୍ୱାଧୀନଚେତା ବୀର ସୈନିକଙ୍କ ଅନ୍ତରର ବ୍ୟାକୁଳତାକୁ କେବେହେଲେ ରୋକ ହେବ ନାହିଁ । ସେମାନେ ଦେଶୀୟ ରାଜ୍ୟଗୁଡ଼ିକ ସମେତ ଭାରତର ସ୍ୱାଧୀନତା ହାସଲ କରିବେ ହିଁ କରିବେ ! ପାକିସ୍ତାନର ମୂଳଭିତ୍ତି ଭିନ୍ନ ଭିନ୍ନ ଦୁଶ୍ଚିନ୍ତାର ପାରସ୍ପରିକ ସମ୍ପର୍କରେ ଗଠିତ । ଆର୍ଥିକ ତଥା ଜୀବନଧାରଣୋପଯୋଗୀ ଉପାୟ ତଥା ଧାର୍ମିକ ଦୃଷ୍ଟିକୋଣରୁ ମଧ୍ୟ ପାକିସ୍ତାନ ଏକ ପୀଡ଼ନକ ହେବା ସଙ୍ଗେ ସଙ୍ଗେ ଗୋଟିଏ ଗଳଗ୍ରହ ହୋଇ ରହିବ !"



# ଘର

ମହାରାଜା ହରି ସିଂହଙ୍କ ପୁତ୍ର ଯୁବରାଜ କରଣ ସିଂହ ତିନି ବର୍ଷ ବୟସର ହୋଇଥିବାବେଳେ ତାଙ୍କ ରହିବାଲାଗି ଏକ ସ୍ୱତନ୍ତ୍ର ମହଲର ବ୍ୟବସ୍ଥା କରାଯାଇଥିଲା । ତାଙ୍କର ଘରୋଇ ଡାକ ନାମ ଥିଲା 'ଟାଇଗର୍' । ତାଙ୍କର ଦେଖାଶୁଣା ଓ ଶିକ୍ଷାଦୀକ୍ଷାଲାଗି ଇଂରେଜ ଅଭିଭାବକ ନିଯୁକ୍ତ କରାଯାଇଥିଲା । କୌଣସି ବାଳକକୁ ଯୋଗ୍ୟ ତଥା ପ୍ରତିଭାଶାଳୀ କରି ଗଠନ କରିବାକୁ ହେଲେ, ତାକୁ ସେହିପରି ସୁସ୍ଥ ବାତାବରଣରେ ରଖାଯିବା ଆବଶ୍ୟକ, ଏହା ହିଁ ଥିଲା—ମହାରାଜା ହରି ସିଂହଙ୍କ ମତ । ତାଙ୍କ ମତରେ—ଅନୁକୂଳ ବାତାବରଣର ଅଭାବରେ ଅବୋଧ ବାଳକର ପ୍ରତିଭା ସମୁଚିତରୂପେ ବିକଶିତ ହୋଇପାରେ ନାହିଁ । ତେଣୁ ସେ ନିଜର ବିଚାରଧାରା ଅନୁସାରେ ପରିଚାଳିତ ହୋଇ ମହାରାଣୀ ତାରା ଦେବୀଙ୍କୁ ମଧ୍ୟ ଦିନରେ ଗୋଟିଏ ଘଣ୍ଟା ମାତ୍ର ପୁତ୍ର ସହିତ ଦେଖା କରିବାର ସୁବିଧା ଦେଇଥିଲେ ଏବଂ ନିଜେ ମଧ୍ୟ ସପ୍ତାହରେ କେବଳ ଦୁଇ ଦିନ ପୁତ୍ର ସହିତ ସାକ୍ଷାତ୍ କରୁଥିଲେ । ଏଗାର ବର୍ଷ ବୟସ ପର୍ଯ୍ୟନ୍ତ ଯୁବରାଜ କରଣ ସିଂହଙ୍କ ଲାଳନପାଳନ ଏହିପରି ଏକ ସୁସ୍ଥ ବାତାବରଣରେ ହୋଇଥିଲା । ତା' ପରେ ତାଙ୍କୁ 'ଦୁନ' ସ୍କୁଲକୁ ପାଠ ପଢ଼ିବାଲାଗି ପଠାଯାଇଥିଲା । ତାଙ୍କୁ 'ଦୁନ' ସ୍କୁଲକୁ ପଠାଯିବା ସମ୍ବନ୍ଧରେ ନିଜେ କରଣ ସିଂହ କହନ୍ତି :

"ବାପା ଜାଣିଶୁଣି ମୋର ନାମ 'ଦୁନ' ସ୍କୁଲରେ ଲେଖାଇଥିଲେ । ତାଙ୍କ ଦୂରଦର୍ଶିତା ସମ୍ବନ୍ଧରେ ସେତେବେଳେ ମୁଁ ଅବଶ୍ୟ ଜାଣିପାରୁ ନ ଥିଲି; କିନ୍ତୁ ଏବେ ମୁଁ ବେଶ୍ ତା'ର ପରିଣାମ ସମ୍ବନ୍ଧରେ ଧାରଣା କରିପାରୁଛି । ମୋତେ ଯଦି 'ଦୁନ' ସ୍କୁଲକୁ ପଠା ନ ଯାଇ ରାଜକୁମାରଙ୍କ ପାଠଶାଳା କିମ୍ବା ଅନ୍ୟ କୌଣସି ଆଡ଼ମ୍ବରପୂର୍ଣ୍ଣ ବିଦ୍ୟାଳୟକୁ ପଠାଯାଇଥାନ୍ତା, ତା' ହେଲେ ବୋଧହୁଏ, ଦୁନିଆର ବିଭିନ୍ନ ରୀତିନୀତି ଓ

ସମାଜର ଭିନ୍ନ ଭାବନା ସହିତ ମୁଁ ଏବେ ଯେପରି ସୁପରିଚିତ, ସେପରି ହୋଇପାରି ନ ଥାନ୍ତି । ଆଜି ମୁଁ ଯେପରି ଭାବରେ କର୍ମଠ ଓ ଆତ୍ମନିର୍ଭରଶୀଳ ହୋଇପାରିଛି, ତାହା କେବଳ ସେହି ବିଦ୍ୟାଳୟର ଅବଦାନ । ପ୍ରାୟ ଚଉଦ ବର୍ଷ ବୟସରେ ମୁଁ 'ସିନିଅର୍ କେମ୍ବ୍ରିଜ୍' ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲି ଏବଂ ତା'ପରେ ମୋର ପାଠପଢ଼ା ବନ୍ଦ ହୋଇଗଲା ।"

ମହାରାଜା ହରି ସିଂହ ମୂଳରୁ ପଣ୍ଡିତ ଜବାହରଲାଲ ନେହରୁଙ୍କର ବିରୋଧୀ ଥିଲେ । ତାଙ୍କ ବିରୋଧର ମୁଖ୍ୟ କାରଣ ଥିଲା—ନେହରୁଜୀ ଶେଖ୍ ଅବ୍ଦୁଲ୍ଲାଙ୍କୁ ଅତ୍ୟଧିକ ସମର୍ଥନ କରୁଥିଲେ । କିନ୍ତୁ କରଣ ସିଂହ ଥିଲେ ପଣ୍ଡିତ ନେହରୁଜୀଙ୍କର ଅନନ୍ୟଭକ୍ତ ଓ ପ୍ରଶଂସକ । ତାଙ୍କର ଭାଷାରେ କହିବାକୁ ଗଲେ,

"ମୁଁ ପଣ୍ଡିତଜୀଙ୍କର ସମସ୍ତ ପୁସ୍ତକ ପିତାଜୀଙ୍କର ଅଗୋଚରରେ ପଢ଼ିସାରିଥିଲି । ତାଙ୍କପ୍ରତି, ତାଙ୍କର ବ୍ୟକ୍ତିତ୍ୱପ୍ରତି ତଥା ତାଙ୍କର ଚିନ୍ତାଧାରାପ୍ରତି ମୋ' ହୃଦୟରେ ଗଭୀର ଶ୍ରଦ୍ଧା ଜାତ ହୋଇଥିଲା । ମୁଁ ତାଙ୍କୁ ଏକପ୍ରକାର ମୋ' ଜୀବନର ଆଦର୍ଶରୂପେ ଗ୍ରହଣ କରିନେଇଥିଲି । ସେତେବେଳେ ମୋର ଚିନ୍ତାଧାରା ଓ ବିଚାର କରିବାର ଯେତିକି ଶକ୍ତି ଥିଲା, ସେହି ଅନୁସାରେ ମୁଁ ପିତାଜୀଙ୍କର ସମସ୍ତ କାର୍ଯ୍ୟକୁ ଅସଙ୍ଗତ ଓ ହାନିକାରକ ବୋଲି ମନେ କରୁଥିଲି । ଅବଶ୍ୟ ମୁଁ ପିତାଜୀଙ୍କ ଉପରେ ମନେ ମନେ ଖୁବ୍ ବିରକ୍ତ ହୋଇଥିଲି; କିନ୍ତୁ ସେତେବେଳେ ନୀରବ ରହିବା ବ୍ୟତୀତ ମୋର ଆଉ ଉପାୟ କ'ଣ ଥିଲା ? ଏହାରି ମଧ୍ୟରେ କାଶ୍ମୀରରେ ଏକ ଅଭିନବ ଆନ୍ଦୋଳନ ମୁଣ୍ଡ ଟେକିଲା । ଶେଖ୍ସାହେବ୍ 'କାଶ୍ମୀର୍ ଚ୍ଛୋଡ଼୍ ଦୋ' (କାଶ୍ମୀର ଛାଡ଼ିଦିଅ) ନାମକ ଏକ ନୂତନ ଧ୍ୱନିମାଧ୍ୟମରେ ପୁଣି ସମଗ୍ର ରାଜ୍ୟରେ ଉତ୍ତେଜନା ସୃଷ୍ଟି କରିବାକୁ ଚେଷ୍ଟା ଚଳାଇଲେ ।"

୧୯୪୬ ମେ ୬ ତାରିଖରେ ନେସ୍ନାଲ୍ କନ୍ଫରେନ୍ସ'ର ମୁଖ୍ୟ ନେତା ଶେଖ୍ ମହମ୍ମଦ୍ ଅବ୍ଦୁଲ୍ଲା 'କାଶ୍ମୀର ଚ୍ଛୋଡ଼୍ ଦୋ' ନାମକ ଏକ ନୂତନ ଆନ୍ଦୋଳନ ଚଳାଇବା ସଙ୍ଗେସଙ୍ଗେ 'ଅମୃତସର ସନ୍ଧିକୁ ଭଙ୍ଗ କର' (ଅହଦ୍ନାମା ଅମୃତ୍ସର୍ ତୋଡ଼୍ ଦୋ) ଧ୍ୱନି ଉଠାଇ ଆନ୍ଦୋଳନକୁ ସବୁଦୃଷ୍ଟିରୁ

ସଫଳ କରାଇବା ଉଦ୍ଦେଶ୍ୟରେ ଯଥାସମ୍ଭବ ତାକୁ କାର୍ଯ୍ୟରେ ପରିଣତ କରାଇଲେ । ଶୋଭାଯାତ୍ରା ବାହାର କରାଗଲା, ସ୍ଥାନେ ସ୍ଥାନେ ସଭାସମିତି ଜରିଆରେ ଆନ୍ଦୋଳନକୁ ଉଗ୍ରରୂପ ଦିଆଗଲା ଏବଂ ଶେଖ୍ ଅବ୍ଦୁଲ୍ଲା ନିଜର ଓଜସ୍ୱିନୀ ଭାଷଣରେ ସାଧାରଣ ଜନତା ମଧ୍ୟରେ ଉତ୍ତେଜନା ସୃଷ୍ଟି କଲେ । ମହାରାଜା ଗୁଲାବ୍ ସିଂହଙ୍କ ସହିତ କରାଯାଇଥିବା ଅମୃତସର ସନ୍ଧିଚୁକ୍ତିକୁ ସେ 'ଲଜ୍ଜାଜନକ ଅତ୍ୟାଚାର' (ଶର୍ମନାକ୍ ଗଦ୍ଦାରି) ଆଖ୍ୟା ଦେବା ସଙ୍ଗେସଙ୍ଗେ ଆହୁରି ମଧ୍ୟ କହିଥିଲେ :

"ଗୁଲାବ୍ ସିଂହ ଓ ତାଙ୍କ ବଂଶଧରଙ୍କ ଅତ୍ୟାଚାରର ପ୍ରତିଶୋଧ ମୁଁ ନେବି ! ଈଶ୍ୱର ଏକ ଶତ ବର୍ଷ ପରେ ଏହି 'ସନ୍ଧି' ବିରୁଦ୍ଧରେ ଲୋକମତ ଜାଗ୍ରତ କରିବାଲାଗି ସୁବିଧା ଓ ସୁଯୋଗ ଦେଇଛନ୍ତି ଏବଂ ଯେପର୍ଯ୍ୟନ୍ତ ଭାରତ-ବର୍ଷରେ ଜଣେ ମାତ୍ର ସନ୍ତାନ ଜୀବିତ ରହିଛି, ସେ ପର୍ଯ୍ୟନ୍ତ ମୁଁ ଗୁଲାବ୍ ସିଂହଙ୍କର ସେହି ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମ ଚଳାଉଥିବି ; ଏହି ନିର୍ଲଜ୍ଜ କୁକୁରମାନଙ୍କର ସର୍ବନାଶ ହେବା ପର୍ଯ୍ୟନ୍ତ କେହି ଶାନ୍ତିରେ ନିଃଶ୍ୱାସ ମାରିବା ଉଚିତ୍ ନୁହେଁ ! ନିଜର ଖାଦ୍ୟକୁ ଅନ୍ୟ ହାତରେ ବିକ୍ରି କରିବାଭଳି ଚଉତିରିଶ ଲକ୍ଷ ଅଧିବାସୀଙ୍କ ଭାଗ୍ୟକୁ ବିକ୍ରି କରାଯାଇଛି । ଏ ରାଜ୍ୟର ପ୍ରତ୍ୟେକ ପ୍ରଜା ଦୁଇଟଙ୍କା ଲେଖାଏଁ ଚାନ୍ଦା ଦିଅନ୍ତୁ; ମୁଁ ମହାରାଜା ହରି ସିଂହଙ୍କୁ କହିବି—ସେ କାଶ୍ମୀର ଛାଡ଼ି ତାଙ୍କ ପୂର୍ବ ପୁରୁଷ ଯେଉଁ କ୍ଷୁଦ୍ର ଜାଗିରରୁ ଆସିଥିଲେ, ସେଠାକୁ ଚାଲିଯାଆନ୍ତୁ ।"

ଶେଖ ଅବ୍ଦୁଲ୍ଲାଙ୍କର ଏହି ଧ୍ୱନି ଶୁଣି, ଶ୍ରୀନଗରର ଶିକ୍ଷିତ ସମାଜ ଓ ଜାମୁର ସାଧାରଣ ଜନତା ଏହାର ବିରୋଧ କରିବାକୁ ଲାଗିଲେ । ଶେଖ୍ ସାହେବଙ୍କର ଏପ୍ରକାର ଅଭିମତ ଫଳରେ ସେମାନଙ୍କ ହୃଦୟରେ ଅଶେଷ ଦୁଃଖ ଅନୁଭୂତ ହୋଇଥିଲା । ତାଙ୍କର ସେହି ଭାଷଣ ଫଳରେ ପାରସ୍ପରିକ ଭାତୃତ୍ୱ ବନ୍ଧନରେ କେତେକ ପରିମାଣରେ ଅବିଶ୍ୱାସ ଜାତ ହୋଇଥିଲା । ତେଣୁ ସେମାନେ ଏହାକୁ ଏକ ଅଶୋଭନୀୟ ଧ୍ୱନି ବୋଲି ମତ ଦେଇଥିଲେ । ତାଙ୍କଭଳି ନେତାଙ୍କଠାରୁ ଏପ୍ରକାର ଆଶା କରାଯାଉ ନ ଥିଲା । ନିଜକୁ ମହାତ୍ମା ଗାନ୍ଧୀଙ୍କର ଶିଷ୍ୟରୂପେ ପରିଚିତ କରାଉଥିବା ବ୍ୟକ୍ତି ଏତେ ନୀଚସ୍ତରକୁ ଖସିଯାଇ ଗାଳିଗୁଲଜ କରିପାରନ୍ତି, ଏକଥା କେହିହେଲେ ପସନ୍ଦ କଲେ ନାହିଁ ଏବଂ

ତା ଫଳରେ ରାଜ୍ୟର ଭବିଷ୍ୟତ ଗଭୀର ତମସାଚ୍ଛନ୍ନ ହେବାର ଆଶଙ୍କା କଲେ । ନିଜେ କଂଗ୍ରେସର ତତ୍କାଳୀନ ସଭାପତି ଆଚାର୍ଯ୍ୟ କୃପାଳନୀ ମେ ୨୫ ତାରିଖରେ ଜାମ୍ମୁଠାରେ ଏକ ସାଧାରଣ ସଭାରେ ଭାଷଣ ଦେଇ କହିଲେ :

କାଶ୍ମୀର ଛାଡ଼ ଚାଲିଯାଅ—ଏପ୍ରକାର ଧ୍ୱନି କରି ବିକ୍ଷୋଭ ପ୍ରଦର୍ଶନ କରିବା ଆଦୌ ଶୋଭନୀୟ କାର୍ଯ୍ୟ ନୁହେଁ । ମହାତ୍ମା ଗାନ୍ଧୀ, ସାତ ସମୁଦ୍ର ତେର ନଈ ସେପାରିର ବିଦେଶୀ ଇଂରେଜମାନଙ୍କ ବିରୁଦ୍ଧରେ "ଭାରତ ଛାଡ଼" ଡାକରା ଦେଇଥିଲେ । କିନ୍ତୁ ମହାରାଜା ହରି ସିଂହଙ୍କ ବିରୁଦ୍ଧରେ ଏପ୍ରକାର ଆହ୍ୱାନ ଜଣାଇ ବିକ୍ଷୋଭ ପ୍ରଦର୍ଶନ କରିବା ଆଦୌ ଉଚିତ ନୁହେଁ । ତାଙ୍କର ଏ ଦେଶରେ ଅଧିକାର ଅଛି ଏବଂ ସେ ଆମରି ଭାଇ !"

ମେ ୨୦ ତାରିଖରେ ଶେଖ୍ ଅବଦୁଲ୍ଲାଙ୍କୁ ଗିରଫ କରାଗଲା । ତାଙ୍କ ଗିରଫଦାରୀର ଖବର ଶ୍ରୀନଗରରେ ବିଜୁଳି ପରି ବ୍ୟାପିଯିବାରୁ ଚାରିଆଡ଼େ ଅଗ୍ନିଶିଖା ଜଳିଉଠିଲା । ଅବ୍ଦୁଲ୍ଲାଙ୍କ ସମର୍ଥକମାନେ ଚାରିଆଡ଼େ ଭଙ୍ଗାରୁଜା ଆରମ୍ଭ କରିଦେଲେ । ସରକାରୀ ବ୍ୟବସ୍ଥାରେ ନାନାପ୍ରକାର ବାଧା ସୃଷ୍ଟି ହେଲା ଏବଂ ବିକ୍ଷୋଭକାରୀମାନେ ପୋଲଗୁଡ଼ିକୁ ନଷ୍ଟଭ୍ରଷ୍ଟ କରିଦେଇ ଯାନବାହନ ଗତାଗତରେ ଭୀଷଣ ବାଧା ସୃଷ୍ଟି କଲେ ।

ଦିନକୁ ଦିନ ପରିସ୍ଥିତି ଗମ୍ଭୀର ହୋଇଉଠିଲା । ତେଣୁ ସରକାରଙ୍କ ପକ୍ଷରୁ ପୋଲିସ-ବ୍ୟବସ୍ଥା ପରିବର୍ତ୍ତେ ସୈନ୍ୟବାହିନୀକୁ ଡାକରା ପଡ଼ିଲା । ସହରରେ 'କର୍ଫ୍ୟୁ' ଜାରି ହୋଇଗଲା ଏବଂ କେତେକ ସ୍ଥାନରେ ମଧ୍ୟ ଗୁଳି ଚଳାଇବାକୁ ପଡ଼ିଲା । ସେହି ଗୁଳିକାଣ୍ଡ ଫଳରେ କେତେକ ବ୍ୟକ୍ତି ଆହତ ହେଲେ ଏବଂ କେତେକ ମଧ୍ୟ ମୃତ୍ୟୁ ବରଣ କଲେ । ତା'ପରେ ଧୀରେ ଧୀରେ ଶ୍ରୀନଗରର ବାତାବରଣ ଶାନ୍ତ ହୋଇଯାଇ ଦୋକାନବଜାର ଖୋଲିବାକୁ ଲାଗିଲା ଓ ପୂର୍ବପରି ସ୍ୱାଭାବିକ ଗତିରେ କାରବାର ଚାଲିଲା । ମେ ୨୮ ତାରିଖରେ ପଣ୍ଡିତ ଜବାହରଲାଲଙ୍କ କାଶ୍ମୀରର ପ୍ରଧାନମନ୍ତ୍ରୀଙ୍କୁ ତାରବାର୍ତ୍ତାରେ ଜଣାଇଲେ :

"ଖବରକାଗଜରୁ ଶେଖ୍ ଅବ୍ଦୁଲ୍ଲା ଓ ଅନ୍ୟାନ୍ୟ ବ୍ୟକ୍ତିଙ୍କ ଉପରେ ଚାଲିଥିବା ମୋକଦ୍ଦମା ବିଷୟ ଜାଣିଲି । ମୁଁ ସେମାନଙ୍କ ସପକ୍ଷରେ ଉଚିତ ସଫେଇଲାଗି ବ୍ୟବସ୍ଥା କରିବାକୁ ଚାହୁଁଛି । ଏଣୁ ଅନୁରୋଧ—ଏ ସମ୍ପର୍କରେ ମୋତେ ପୂର୍ଣ୍ଣ ସୁବିଧା ଦିଆଯାଉ !"

କାଶ୍ମୀର ପ୍ରଧାନମନ୍ତ୍ରୀ ଉତ୍ତରରେ ତାରବାର୍ତ୍ତା ଦେଇ ଲେଖିଲେ :

"ଆପଣଙ୍କ ତାରବାର୍ତ୍ତା ମିଳିଲା । ଆଇନ-ଅନୁମୋଦିତ ପନ୍ଥାରେ ଅପରାଧୀମାନଙ୍କ ଆବେଦନ ଅନୁସାରେ ସେମାନଙ୍କୁ ପୂର୍ଣ୍ଣ ସୁବିଧା ଓ ସୁଯୋଗ ଦିଆଯିବ ।"

ଏହାପରେ ମହାରାଜା ହରି ସିଂହଙ୍କ ନିକଟକୁ ପଣ୍ଡିତ ନେହରୁଙ୍କ ତାରବାର୍ତ୍ତା ଆସିଲା । ସେ ସେଥିରେ କେତେ ଜଣ ଆଇନଜ୍ଞଙ୍କ ସହିତ ଶ୍ରୀନଗର ଆସି ଶେଖ୍ ଅବ୍ଦୁଲ୍ଲାଙ୍କ ପକ୍ଷ ସମର୍ଥନ କରି ମୋକଦ୍ଦମା ଚଳାଇବାକୁ ଅନୁମତି ଚାହିଁ ଥିଲେ । ମହାରାଜା ତାରବାର୍ତ୍ତାରେ ପଣ୍ଡିତଜୀଙ୍କୁ ଉତ୍ତର ଦେଇ ଲେଖିଲେ :

"ଆଇନଜ୍ଞଙ୍କ ସାହାଯ୍ୟ ସମ୍ବନ୍ଧରେ ପ୍ରଧାନ ବିଚାରପତିଙ୍କ ଅନୁମତି ଆବଶ୍ୟକ; କାରଣ ସେ'ହିଁ ଏହି ମୋକଦ୍ଦମା ସମ୍ପର୍କରେ ସର୍ବେସର୍ବା କର୍ତ୍ତା । ଆପଣଙ୍କର ଏଠାକୁ ଆସିବାଦ୍ୱାରା ଅସୁବିଧାଜନକ ପରିସ୍ଥିତି ସୃଷ୍ଟି ହେବ । ଏହାଦ୍ୱାରା କେବଳ ପରିସ୍ଥିତି ଭୀଷଣ ଆକାର ଧାରଣ କରିବ, ମାତ୍ର ବାତାବରଣ ଶାନ୍ତ ପଡ଼ିବ ନାହିଁ ।"

ମହାରାଜାଙ୍କର ଏହି ତାରବାର୍ତ୍ତା ସତ୍ତ୍ୱେ ପଣ୍ଡିତ ଜବାହରଲାଲ ନେହରୁ ଶ୍ରୀନଗର ଯିବାଲାଗି ଘୋଷଣା କରିଦେଲେ । ଅବଶ୍ୟ ଏ ପ୍ରକାର ଅଯଥା ହସ୍ତକ୍ଷେପ ବିରୁଦ୍ଧରେ ଗାନ୍ଧୀଜୀ ଓ ସର୍ଦ୍ଦାର ପଟେଲ ସମ୍ମତି ପ୍ରକାଶ କରି ନ ଥିଲେ; କିନ୍ତୁ ପଣ୍ଡିତଜୀଙ୍କୁ ଏବା ବୁଝାଇବ କିଏ ?

୧୯୪୬ ଜୁନ୍ ୨୦ ତାରିଖ ଦିନ ସକାଳ ୯ ଘଣ୍ଟା ସମୟରେ 'କୋହାଲା' ନାମକ ସ୍ଥାନରେ ଭାରତ- କାଶ୍ମୀରର ସୀମାନ୍ତବର୍ତ୍ତୀ ପୋଲ ପାର ହେଉଥିବା ସମୟରେ ପଣ୍ଡିତ ନେହରୁଙ୍କୁ କାଶ୍ମୀରର ପୋଲିସ ଗିରଫ କରିନେଲେ ।

ତାଙ୍କ ସହିତ ଖାଁ ଆବ୍ଦୁଲ ଗଫୁର ଖାନ୍ ମଗନ୍‌ଲାଲ୍ ଓ ପଣ୍ଡିତ ଦ୍ୱାରିକାନାଥ କାଚରୁ ମଧ୍ୟ କାଶ୍ମୀର ଯାଇଥିଲେ । କିନ୍ତୁ ସେ ଦୁହିଁଙ୍କୁ ଗିରଫ କରା ନ ଯାଇ ଶ୍ରୀନଗର ଯିବାଲାଗି କୌଣସି ସୁବିଧା ଦିଆଯାଇ ଥିଲା ।

ପଣ୍ଡିତ ନେହରୁଙ୍କୁ ଡାକବଙ୍ଗଳାରେ ସସମ୍ମାନ ରଖାଗଲା । ପରଦିନ ମୌଲାନା ଅବୁଲକଲମ୍ ଆଜାଦ୍‌ଙ୍କ ଅନୁରୋଧମତେ ମହାରାଜା ହରି ସିଂହ ପଣ୍ଡିତଜୀଙ୍କୁ ଖଲାସ କରିଦେବା ଲାଗି ଆଦେଶ ଦେଲେ । କଂଗ୍ରେସର କାର୍ଯ୍ୟକାରୀ ସମିତିର ଏକ ଜରୁରୀ ବୈଠକରେ ଯୋଗଦେବାର ଆବଶ୍ୟକତା ଥିବାରୁ, ନେହେରୁ ସଙ୍ଗେସଙ୍ଗେ ଦିଲ୍ଲୀ ଫେରିଗଲେ ।

● ● ●

# ପାଞ୍ଚ

ରାଜ୍ୟର ଡଙ୍ଗାହଙ୍ଗାମା ଓ ରାଜନୈତିକ ଉତ୍ଥାନ ପତନ ମଧ୍ୟରେ ଯୁବରାଜ କରଣ ସିଂହଙ୍କର ପାଠ୍ୟକ୍ରମ ନିୟମିତଭାବରେ ଚାଲିଥିଲା । ସେ ଘରୋଇ ଭାବରେ ଏଲାହାବାଦର 'ଇଣ୍ଟରମିଡିଏଟ ବୋର୍ଡ଼'ରେ ଆବେଦନ ପତ୍ର ପୂରଣ କରି ପରୀକ୍ଷା ଦେଇଥିଲେ ଏବଂ ଉକ୍ତ ପରୀକ୍ଷାରେ ସେ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ । ଯୁବରାଜ କରଣ ସିଂହଙ୍କଠାରେ ଈଶ୍ୱରଦତ୍ତ ପ୍ରତିଭା ପୂର୍ଣ୍ଣମାତ୍ରାରେ ବିକଶିତ—ଏଥିରେ କିଛିହେଲେ ସନ୍ଦେହ ନାହିଁ । କିନ୍ତୁ ତାଙ୍କର ଜୀବନ-ପ୍ରବାହକୁ ଉଚିତ୍ ମାର୍ଗରେ ପ୍ରବାହିତ କରିବାର ଦାୟିତ୍ୱ ନ୍ୟସ୍ତ ଥିଲା ତାଙ୍କ ମାତା ମହାରାଣୀ ତାରାଦେବୀଙ୍କ ଉପରେ । ସଂସାରର ବିଭିନ୍ନ ପରିସ୍ଥିତି ସମ୍ବନ୍ଧରେ ଜ୍ଞାନାର୍ଜ୍ଜନ କରିବା ଦିଗରେ ଯୁବରାଜ କରଣ ସିଂହଙ୍କ ଏକ ପୁରୁଷରତ୍ନରେ ପରିଣତ କରିବାଲାଗି ମହାରାଣୀ ସଦାସର୍ବଦା ଚେଷ୍ଟା କରୁଥିଲେ । ତା' ସଙ୍ଗେସଙ୍ଗେ ମହାରାଣୀଙ୍କ ଚେଷ୍ଟାରେ ମଧ୍ୟ ଏକ ବିଶେଷତ୍ୱ ଥିଲା । ସେ କେବଳ 'ଏହା କରିବା ଉଚିତ୍' ବୋଲି ନ ଶିଖାଇ ନିଜେ କାର୍ଯ୍ୟରେ ପରିଣତ କରି ଶିକ୍ଷା ଦେଉଥିଲେ । ତାରାଦେବୀ ଭଜନ-ପୂଜନଦ୍ୱାରା ନିଜ ମୋକ୍ଷର ମାର୍ଗ ପରିଷ୍କାର କରୁଥିଲେ ମଧ୍ୟ ପ୍ରଜାମାନଙ୍କର ଦୁଃଖସୁଖରେ ଭାଗ ନେଇ ଲୋକ-କଲ୍ୟାଣକର ଆଦର୍ଶ ସ୍ଥାପନ କରୁଥିଲେ । ଅନେକ ଅବସରରେ ସେ ଖରାବର୍ଷାପ୍ରତି ଭ୍ରୂକ୍ଷେପ ନ କରି, ନିଜେ ବୁଲିବୁଲି ଅନ୍ନବସ୍ତ୍ର ବଣ୍ଟନପୂର୍ବକ ବିପନ୍ନ ପ୍ରଜାମାନଙ୍କୁ ସୁଖ ସୁବିଧା ପ୍ରଦାନ କରୁଥିଲେ । ଏସବୁର ପ୍ରଭାବ ଯୁବକ କରଣ ସିଂହଙ୍କ ଉପରେ ଅତ୍ୟଧିକ ମାତ୍ରାରେ ପଡ଼ିଥିଲା । ଈଶ୍ୱରଙ୍କ ଆରାଧନା ଓ ପରମାତ୍ମାଙ୍କୁ ସର୍ବଶକ୍ତିମାନ୍‌ରୂପେ ସ୍ୱୀକାର କରି କର୍ମପଥରେ ଅଗ୍ରସର ହେବାଭଳି ଜ୍ଞାନ ଓ ଦୃଢ଼ତା, ଯୁବରାଜ କରଣ ସିଂହଙ୍କର ସେହି ଦିନରୁ ଉଦୟ ହୋଇଥିଲା । ପିଲାଟି ଦିନରୁ ସେ ପୂର୍ଣ୍ଣ ଈଶ୍ୱରବାଦୀ ହୋଇଯାଇଥିଲେ । କରଣ ସିଂହଙ୍କର ଏ ପ୍ରକାର

ଅଟଳ ବିଶ୍ୱାସ, ଏକଦା ତାଙ୍କ ରୋଗାବସ୍ଥାରେ ଆହୁରି ସୁଦୃଢ଼ ହୋଇଯାଇଥିଲା। ହଠାତ୍ ବିନାକାରଣରେ ତାଙ୍କର ଡାହାଣପଟ ଅର୍ଣ୍ଣା ତଳଭାଗରେ ବ୍ୟଥା ଆରମ୍ଭ ହେଲା। ସେଥିଲାଗି ଅନେକ ଔଷଧପତ୍ରର ବ୍ୟବସ୍ଥା କରାଗଲା; ମାତ୍ର କୌଣସିମତେ ବ୍ୟଥାର ଉପଶମ ହେଲା ନାହିଁ। ପରିଶେଷରେ ତାଙ୍କୁ ବମ୍ବେ ନିଆଯାଇ ବିଶେଷଜ୍ଞମାନଙ୍କ ସହିତ ପରାମର୍ଶ କରାଗଲା। ଡାକ୍ତରମାନେ ରୋଗ ନିର୍ଣ୍ଣୟ କରି 'ପ୍ଲାଷ୍ଟର୍' କରିଦେଲେ। ତେଣୁ ତାଙ୍କର ଚଲାବୁଲା ଏକାବେଳକେ ବନ୍ଦ ହୋଇଗଲା। ସ୍ୱଚ୍ଛନ୍ଦ ବାୟୁପରି ବିଚରଣ କରିବା ଅବସ୍ଥାରେ ତାଙ୍କର ଏ ବ୍ୟାଧି ଅଶେଷ କଷ୍ଟଦାୟକ ହୋଇଥିଲା; ମାତ୍ର ଆଉ ବା ଉପାୟ କ'ଣ ଥିଲା ? ତା'ପରେ ଯୁବରାଜ ବମ୍ବେରୁ ଶ୍ରୀନଗର ଫେରିଆସିଲେ। ସେହି ସମୟର ଅନୁଭୂତି ସମ୍ବନ୍ଧରେ ସେ ନିଜେ କହନ୍ତି :

"ମୋର ସମୟତକ ପୁସ୍ତକ ଅଧ୍ୟୟନ ଓ ଭଜନ ପୂଜନରେ ଅତିବାହିତ ହେଉଥିଲା। ତା'ଫଳରେ ମୁଁ ବିଶେଷ ଭାବରେ ସନ୍ତୋଷ ତଥା ଆନନ୍ଦ ଅନୁଭବ କରୁଥିଲି। ହଁ, ଅବଶ୍ୟ ବେଳେ ବେଳେ ମନରେ ଅନେକ ପ୍ରକାର ଦୁଶ୍ଚିନ୍ତା ତଥା ନାନାପ୍ରକାର ଆଶଙ୍କା ଜାତ ହେଉଥିଲା। କିନ୍ତୁ ପର ମୁହୂର୍ତ୍ତରେ ମାତାଙ୍କ ପ୍ରଦତ୍ତ ଈଶ୍ୱରବିଶ୍ୱାସପ୍ରତି ଅଟଳ ଆସ୍ଥା ଜାତ ହେବାକ୍ଷଣି, ମୋ' ମନର ସମସ୍ତ ଦୁର୍ଭାବନା ଦୂର ହୋଇଯାଉଥିଲା। ଆହୁରି ମଧ୍ୟ ତା'ଫଳରେ ମୋ' ହୃଦୟରେ ଅଶେଷ ଆତ୍ମବଳ ଜାଗ୍ରତ ହେଉଥିଲା ଏବଂ ଜୀବନପ୍ରତି ମୁଁ ଅଧିକ ଆସ୍ଥାବାନ୍ ହୋଇଉଠୁଥିଲି। ମାତାଙ୍କ ପ୍ରଦତ୍ତ ସେହି ଐଶୀଶକ୍ତି ଫଳରେ ମୁଁ ସଂସାରର ଯେ କୌଣସି କଷ୍ଟସାଧ୍ୟ କାର୍ଯ୍ୟ କରିବାରେ ଆଦୌ ପଶ୍ଚାତ୍ପଦ ହେଉ ନାହିଁ।"

ସମୟର ଚକ୍ର ଗଡ଼ିଚାଲିଲା; ଦେଶ ଭାଗ ଭାଗ ହେଲା, ଅଖଣ୍ଡ ହିନ୍ଦୁସ୍ଥାନ ମଧ୍ୟରେ 'ପାକିସ୍ଥାନ' ନାମକ ଅନ୍ୟ ଏକ ସୀମାରେଖା ଅଂକିତ ହୋଇଗଲା। ଏହି ପରିବର୍ତ୍ତନ ମୁହୂର୍ତ୍ତରେ ଭାରତର ଲୋକେ ପାକିସ୍ଥାନକୁ ଓ ପାକିସ୍ଥାନର ଲୋକେ ହିନ୍ଦୁସ୍ଥାନ ମଧ୍ୟକୁ ପ୍ରାଣଭୟରେ ପଳାଇ ଆସିଲେ। ଏହି ଅଦଳବଦଳ ଫଳରେ; ଲୁଟତରାଜ ଓ ହାଣକାଟ ଆରମ୍ଭ ହୋଇଗଲା। ହଜାର ହଜାର ଲୋକେ ହାଣମୁହଁରେ ପଡ଼ିଲେ, ଝିଅବୋହୂଙ୍କର ମାନମହତ ସରିଲା ଏବଂ କିଏ ଜାଣେ, ଆହୁରି କେତେ କ'ଣ ଅଘଟଣ ଘଟିଗଲା। ଏସବୁ ଦୁର୍ଘଟଣା ଘଟିବାରେ ଆଦୌ ଅସ୍ୱାଭାବିକତା ନ ଥିଲା; କାରଣ ପାକିସ୍ଥାନର ମୂଳ ଭିତ୍ତି ହିଁ

ସାମ୍ପ୍ରଦାୟିକତା ଉପରେ ପ୍ରତିଷ୍ଠିତ ହୋଇଥିଲା । ଦେଶ ଭାଗ ଭାଗ ହୋଇଯିବା ପରେ ଦେଶୀୟ ରାଜ୍ୟଗୁଡ଼ିକର ମିଶ୍ରଣ ସମ୍ପର୍କରେ ପ୍ରଶ୍ନ ଉଠିଲା; ବିଶେଷତଃ ଜାମୁ ଓ କାଶ୍ମୀର ରାଜ୍ୟର ମିଶ୍ରଣ ଉପରେ ଅଧିକ ଗୁରୁତ୍ୱ ଆରୋପ କରାଗଲା । ଉଭୟ ଭାରତ ସରକାର ଓ ମହାରାଜା ହରି ସିଂହଙ୍କ ପକ୍ଷରେ ମଧ୍ୟ ଏହା ଏକ ଜଟିଳତମ ପ୍ରଶ୍ନର ଆକାର ଧାରଣ କଲା । ତେଣେ କାଶ୍ମୀର ରାଜ୍ୟକୁ ବଳପୂର୍ବକ ଦଖଲ କରିନେବାକୁ ପାକିସ୍ତାନ ସରକାର ବ୍ୟାକୁଳ ହୋଇ ଅବସରର ଅପେକ୍ଷାରେ ରହିଁ ରହିଲା । କାରଣ, ତା' ଫଳରେ ସେ ଭାରତ ପକ୍ଷରେ ଏକ ଗୃହସମରେ ପରିଣତ ହୋଇଥାନ୍ତା । ମିଶ୍ରଣ ପ୍ରଶ୍ନର ସମାଧାନ ମହାରାଜା ହରି ସିଂହଙ୍କ ଉପରେ ନିର୍ଭର କରୁଥିଲା ଏବଂ ଇଂରେଜଙ୍କ ସହିତ ଚୁକ୍ତିନାମା ଅନୁସାରେ ତାଙ୍କର ନିଷ୍ପତ୍ତି ହିଁ ଶେଷ ନିଷ୍ପତ୍ତିରୂପେ ଗୃହୀତ ହେବାର ବିଧାନ ଥିଲା । ହରି ସିଂହଙ୍କପରି କର୍ତ୍ତବ୍ୟପରାୟଣ ଓ ଧର୍ମନିଷ୍ଠ ମହାରାଜାଙ୍କୁ ସମସ୍ତ ପ୍ରକାର ଅସୁବିଧାରେ ପକାଇ ବଦନାମ କରାଇବାକୁ ଇଂରେଜ ସରକାର ତଥା ଶେଖ୍ ଅବ୍ଦୁଲ୍ଲା କୌଣସି ପ୍ରକାର ଉପାୟର ଅବଶେଷ ରଖି ନ ଥିଲେ । ତେଣୁ ତାଙ୍କ ମନରେ ସବୁଠାରୁ ବଡ଼ ଚିନ୍ତା ଥିଲା—ସେ ଯିବେ କୁଆଡ଼େ ? ବ୍ୟକ୍ତିଗତ ଭାବରେ ଜଣେ ଆଦର୍ଶ ଭାରତୀୟ ଦୃଷ୍ଟିରୁ ସେ ଭାରତ ସହିତ ମିଳିତ ହେବାକୁ ଚାହୁଁଥିଲେ ଏବଂ ତାହା ମଧ୍ୟ ତାଙ୍କପକ୍ଷରେ ଲାଭଜନକ ବୋଲି ଜଣାପଡ଼ୁଥିଲା । କିନ୍ତୁ ଜଣେ ଦେଶୀୟ ରାଜ୍ୟର ଶାସକଭାବରେ ସେ ନିଜେ ମନର ଚିନ୍ତାଧାରାକୁ ମାନିନେବାକୁ ପ୍ରସ୍ତୁତ ନ ଥିଲେ । ବହୁ ପୂର୍ବରୁ କାଶ୍ମୀରର ଜନତା ବିପଥଗାମୀ ହୋଇଥିବାରୁ ମହାରାଜା ବିଶେଷ ଚିନ୍ତିତ ଥିଲେ; ଅଧିକନ୍ତୁ ମିଶ୍ରଣ ପ୍ରଶ୍ନ ଉପରେ କାଳେ କେହି ତାଙ୍କୁ ଆକ୍ଷେପ କରି ପକ୍ଷପାତ ଦୋଷରେ ଦୋଷୀ କରିବ, ସେଥିଲାଗି ତାଙ୍କର ଚିନ୍ତା ଦ୍ୱିଗୁଣିତ ହୋଇପଡ଼ିଲା ।

ଅନ୍ୟ ପକ୍ଷରେ, ପାକିସ୍ତାନ ସହିତ ସମ୍ମିଳିତ ହେବା ମଧ୍ୟ ସମ୍ଭବପର ନ ଥିଲା । ଏ ସମ୍ପର୍କରେ କେତେକ କାରଣ ଥିଲା—ଜାମୁର ଜନସାଧାରଣ ପାକିସ୍ତାନର ରାଜନୈତିକ ସ୍ଥିତି ତଥା ମତିଗତି ସମ୍ବନ୍ଧରେ ସାବଧାନ ଥିଲେ । ତେଣୁ ସେମାନେ ପାକିସ୍ତାନ ସହିତ ମିଶ୍ରଣ ପ୍ରସ୍ତାବକୁ ଆଦୌ ପସନ୍ଦ କରୁ ନ ଥିଲେ । ପରିଶେଷରେ ବହୁତ ବିଚାରବିମର୍ଶ ପରେ ସେ କୌଣସି ସ୍ୱାଧୀନ ଦେଶ ସହିତ ନ ମିଶିବା ଲାଗି ନିଷ୍ପତ୍ତି କଲେ ! ତାଙ୍କର ବିଚାରଧାରାକୁ ନିର୍ବିରୋଧରେ ସମର୍ଥନ କଲେ ପ୍ରଧାନମନ୍ତ୍ରୀ ରାମଚନ୍ଦ୍ର କାକ୍ । ପ୍ରଧାନମନ୍ତ୍ରୀ ଯେ କେବଳ ସମର୍ଥନ କଲେ

ତା' ନୁହେଁ; ସେ ଏଣୁତେଣୁ ଭ୍ରମ ଧାରଣା ଦେଇ ନିଜ ସ୍ୱାଧୀନଭାବେ ଦୃଢ଼ ରହିବା ଲାଗି ମହାରାଜାଙ୍କୁ ପ୍ରବର୍ତ୍ତାଇଲେ। ଆହୁରି ମଧ୍ୟ ରାମଚନ୍ଦ୍ର କାକ୍ କାଶ୍ମୀର ରାଜ୍ୟର ଭବିଷ୍ୟତ ସମ୍ପର୍କରେ ନାନାପ୍ରକାର ସନ୍ଦେହ ଦେଖାଇ ତାଙ୍କୁ ବିବ୍ରତ କରିଦେଲେ। ସେ ଧାରଣା ଦେଇଥିଲେ—ବର୍ତ୍ତମାନ ସେ ଯେଉଁ ପ୍ରଭୁତ୍ୱ ଜାହିର କରିପାରନ୍ତି, ଯଦି ଭାରତ କିମ୍ବା ପାକିସ୍ତାନ ସହିତ ସମ୍ମିଳିତ ହେଲେ ତାଙ୍କର ସେ ପ୍ରଭୁତ୍ୱ ରହିବ ନାହିଁ। ପ୍ରଧାନମନ୍ତ୍ରୀ କାକ୍ ଏହି ଭ୍ରାନ୍ତ ଧାରଣାକୁ ବାରମ୍ବାର ଦୋହରାଇବାକୁ ଲାଗିଲେ; ତା' ଫଳରେ ପ୍ରଧାନମନ୍ତ୍ରୀଙ୍କ ପରାମର୍ଶପ୍ରତି ଅବହେଳା ପ୍ରଦର୍ଶନ କରିବା ମହାରାଜାଙ୍କ ପକ୍ଷରେ ସମ୍ଭବ ହେଲା ନାହିଁ। ପରିଣାମରେ ମହାରାଜା ହରି ସିଂହ ଭବିଷ୍ୟତ ଚିନ୍ତା ନ କରି ନିଜେ ପ୍ରଧାନମନ୍ତ୍ରୀଙ୍କ ଷଡ଼ଯନ୍ତ୍ରର ଶିକାର ହୋଇଗଲେ। କିନ୍ତୁ ତେଣେ ପ୍ରଧାନମନ୍ତ୍ରୀ କାକ୍ ପାକିସ୍ତାନ ସହିତ ଷଡ଼ଯନ୍ତ୍ରରେ ଲିପ୍ତ ଥିଲେ। ତାଙ୍କର ଯୋଜନା ଥିଲା ଭିନ୍ନ ଧରଣର। ତେଣୁ ସେ ନିଜ ଯୋଜନାର ସଫଳତା ନିମିତ୍ତ ମହାରାଜାଙ୍କୁ ଭ୍ରାନ୍ତ ଧାରଣା ଦେଇ ଏପରି ବିଭ୍ରାନ୍ତ କରୁଥିଲେ।

ଆହୁରି ମଧ୍ୟ ମହାରାଜାଙ୍କୁ ରାଜ୍ୟର ପଣ୍ଡିତ ଓ ଜ୍ୟୋତିଷମାନେ ଅଧିକ ବିଭ୍ରାନ୍ତ କରିଦେଲେ। କାରଣ ସେମାନଙ୍କ ଗଣନାନୁସାରେ କାଶ୍ମୀର ରାଜ୍ୟ ନିକଟ ଭବିଷ୍ୟତରେ ଏକ ମହାନ ରାଜ୍ୟରେ ପରିଣତ ହେବାର ସମ୍ଭାବନା ଥିଲା। ସେହି ଅନୁସାରେ ସେମାନେ ମଧ୍ୟ ମହାରାଜା ହରି ସିଂହଙ୍କୁ ଏକ ସ୍ୱପ୍ନିଳ ବାସ୍ତବର ଛବି ଦେଖାଇ ପ୍ରଲୁବ୍ଧ କରି ରଖିଲେ। ତେଣୁ ମହାରାଜା ଜାମ୍ମୁ ଓ କାଶ୍ମୀର ରାଜ୍ୟକୁ ଏକ ସ୍ୱତନ୍ତ୍ର ରାଜ୍ୟରେ ପରିଣତ କରି ନିଜ ଯୋଜନାକୁ ସଫଳ କରାଇବାରେ ଅଧିକ ତତ୍ପର ହୋଇପଡ଼ିଲେ। ଏହାଫଳରେ ଧର୍ମରକ୍ଷା ହେବା ସଙ୍ଗେ ସଙ୍ଗେ ତାଙ୍କର କର୍ତ୍ତବ୍ୟପରାୟଣତାର ସୁରକ୍ଷା ହୋଇପାରିଲା ଏବଂ ନିଜର ବ୍ୟକ୍ତିଗତ ସ୍ୱାର୍ଥସିଦ୍ଧି ମଧ୍ୟ ହୋଇପାରୁଥିବା ପରି ତାଙ୍କୁ ଜଣାପଡ଼ିଲା। ତେଣୁ ସେ ପାକିସ୍ତାନ କିଂବା ଭାରତ—କାହାରି ସହିତ କାଶ୍ମୀରର ମିଶ୍ରଣ ଲାଗି ତତ୍ପର ହେଲେ ନାହିଁ।

ଏହା ମଧ୍ୟରେ ମହାତ୍ମା ଗାନ୍ଧୀ ଶ୍ରୀନଗର ଆସିଲେ। ରାଜ୍ୟର ଅନେକ ପ୍ରମୁଖ ସରକାରୀ କର୍ମଚାରୀ ତଥା ମହାରାଜାଙ୍କ ଶାଳକ ଠାକୁର ନିତ୍ୟଚନ୍ଦ୍ର କଟୋଚ ଗାନ୍ଧିଜୀଙ୍କ ସହିତ ସାକ୍ଷାତ୍ କଲେ। ସେ ମହାତ୍ମା ଗାନ୍ଧୀଙ୍କଠାରେ ନିବେଦନ ଜଣାଇ କହିଲେ :

"ଆପଣ ରାଜପ୍ରାସାଦକୁ ଯାଇ ମହାରାଜା ହରି ସିଂହଙ୍କୁ ଭାରତ ସହିତ କାଶ୍ମୀର ରାଜ୍ୟର ସଂମିଶ୍ରଣ ଲାଗି ପରାମର୍ଶ ଦିଅନ୍ତୁ । କାରଣ ମହାରାଣୀ ତାରା ଦେବୀ ଓ ରାଜ୍ୟର ଅନ୍ୟାନ୍ୟ ଶୁଭଚିନ୍ତକମାନେ ଏହା ହିଁ ଚାହାନ୍ତି ।"

ଠାକୁର ନଚିନ୍ତଚନ୍ଦ୍ରଙ୍କ ଅନୁରୋଧମତେ ଗାନ୍ଧିଜୀ ମହାରାଜାଙ୍କ ସହିତ ସାକ୍ଷାତ୍ କରିବାଲାଗି ସମ୍ମତି ପ୍ରଦାନ କଲେ । ତା'ପରେ ନଚିନ୍ତଚନ୍ଦ୍ର ମହାରାଜାଙ୍କ ସହିତ ସାକ୍ଷାତ୍ କରି ଗାନ୍ଧିଜୀଙ୍କ ସହିତ ଆଲୋଚନା ଚଳାଇବାଲାଗି ପ୍ରସ୍ତାବ ଦେଲେ । "ନା, କିଛି ଦରକାର ନାହିଁ" ବୋଲି ମତ ଦେଇ ମହାରାଜା କଟୌଚଙ୍କ ପ୍ରସ୍ତାବ ସ୍ୱୀକାର କଲେ ନାହିଁ । ତଥାପି ନଚିନ୍ତଚନ୍ଦ୍ର ଚେଷ୍ଟା ଚଳାଇଥାନ୍ତି । ପରିଶେଷରେ ମହାରାଜା କୌଣସିମତେ ଗାନ୍ଧିଜୀଙ୍କ ସହିତ ସାକ୍ଷାତ୍ କରିବାଲାଗି ସମ୍ମତ ହେଲେ । ନଚିନ୍ତଚନ୍ଦ୍ର ଗାନ୍ଧିଜୀଙ୍କୁ ନିଜ ମୋଟରରେ ବସାଇ ରାଜମହଲକୁ ନେଇଗଲେ । ବର୍ତ୍ତମାନ ସୁଦ୍ଧା ସେହି 'ଚିନାର' ବୃକ୍ଷ ମହାରାଜା ହରି ସିଂହ ଓ ପୂଜ୍ୟ ଗାନ୍ଧିଜୀଙ୍କ ଆଲୋଚନାର ମୂକସାକ୍ଷୀରୂପେ ରହିଛି—ଯାହାର ଛାୟାରେ ବସି ରାଷ୍ଟ୍ରପିତା ମହାତ୍ମାଜୀ ରାଜନେ ହରି ସିଂହଙ୍କ ସହିତ ପ୍ରାୟ ଦୁଇଘଣ୍ଟା କାଳ ଆଲୋଚନା କରିଥିଲେ । ତାଙ୍କର ଆଲୋଚନାର ପ୍ରତ୍ୟକ୍ଷ ସାକ୍ଷୀରୂପେ ଏକମାତ୍ର ବ୍ୟକ୍ତି ଥିଲେ—ଯୁବରାଜ କରଣ ସିଂହ । ତାହା ହିଁ ଥିଲା ମହାତ୍ମାଜୀଙ୍କ ସହିତ ଯୁବରାଜଙ୍କର ପ୍ରଥମ ଓ ଶେଷ ସାକ୍ଷାତ୍ ।

ଗାନ୍ଧିଜୀ ଓ ହରି ସିଂହଙ୍କ ଆଲୋଚନା ସଫଳ ନ ହେବାରୁ ଶୁଭଚିନ୍ତକମାନଙ୍କ ମନରେ ଗଭୀର ଦୁଃଖ ଜାତହେଲା । ସେମାନେ କିଂକର୍ତ୍ତବ୍ୟବିମୂଢ଼ ହୋଇରହିଲେ । ହଁ, କେବଳ ଏତିକି ହେଲା; ଶ୍ରୀନଗରରୁ ଗାନ୍ଧିଜୀଙ୍କ ଫେରିବାର ଅଳ୍ପ କେତେଦିନ ପରେ ପ୍ରଧାନମନ୍ତ୍ରୀ ରାମଚନ୍ଦ୍ର କାକ୍‌ଙ୍କୁ ତାଙ୍କ ପଦବୀରୁ ବିଦାୟ ନେବାକୁ ପଡ଼ିଲା । ତାଙ୍କର ଘୃଣିତ ଷଡ଼ଯନ୍ତ୍ର ସମ୍ବନ୍ଧରେ ମହାରାଜା ହରି ସିଂହ କେତେକ ପ୍ରମାଣ ପାଇପାରିଲେ । ୧୯୪୭ ଅଗଷ୍ଟ ୧୦ ତାରିଖରେ ରାମଚନ୍ଦ୍ର କାକ୍ ପ୍ରଧାନମନ୍ତ୍ରୀ ପଦରୁ ବିଦାୟ ନେଇ ସମସ୍ତ କାଗଜ ପତ୍ର ଓ ଦାୟିତ୍ୱ ବୁଝାଇ ଦେଇଥିଲେ । କାକ୍‌ଙ୍କ ପରେ ଠାକୁର ଜନକ ସିଂହ ପ୍ରଧାନମନ୍ତ୍ରୀଭାବରେ ନିଯୁକ୍ତି ପାଇଲେ ଏବଂ ୧୯୪୭ ଅଗଷ୍ଟ ୧୨ ତାରିଖରେ ଜାମ୍ମୁ ଓ କାଶ୍ମୀର ସରକାରଙ୍କର ଏକ ପ୍ରେସ ବିଜ୍ଞପ୍ତି ପ୍ରକାଶ ପାଇଲା :

“ଜାମ୍ମୁ ଓ କାଶ୍ମୀରର ପ୍ରଧାନମନ୍ତ୍ରୀ, ଭାରତ ଓ ପାକିସ୍ତାନର ‘ଷ୍ଟେଟ୍ ରିଲେସନ୍ ଡିପାର୍ଟମେଣ୍ଟ’କୁ ତାରବାର୍ତ୍ତାରେ ଅବଗତ କରାଇ ଦେଇଛନ୍ତି ଯେ, ଜାମ୍ମୁ ଓ କାଶ୍ମୀରର ସରକାର ଆଜସୁଦ୍ଧା ଇଂରେଜମାନଙ୍କ ସହିତ ଯେଉଁ ସମ୍ପର୍କ ସ୍ଥାପନ କରିଆସିଛନ୍ତି, ଇଂରେଜ ଶାସନର ବିଲୋପ ହେବାପରେ ମଧ୍ୟ ଭାରତ ଓ ପାକିସ୍ତାନ ଉଭୟ ସରକାରଙ୍କ ସହିତ ସେହି ସମ୍ପର୍କ ରକ୍ଷାକରିବେ । ତାଙ୍କ ସରକାର ଉଭୟ ସ୍ୱାଧୀନ ସରକାରଙ୍କ ସହିତ “ଷ୍ଟେଣ୍ଡଷ୍ଟିଲ ଏଗ୍ରିମେଣ୍ଟ” (“ଚୁକ୍ତିବଦ୍ଧ ସ୍ଥିତାବସ୍ଥା”)ର ନୀତି ପାଳନ କରିବେ ।”



# ଛଅ

ମହାରାଜା ହରି ସିଂହଙ୍କର ଏ ପ୍ରକାର ନିଷ୍ପତ୍ତି ପାକିସ୍ତାନକୁ ସୁହାଇଲା । କାରଣ, ସେମାନେ ମଧ୍ୟ ଏଇଭଳି ଏକ ସୁଯୋଗ ଲାଗି ଅପେକ୍ଷା କରିଥିଲେ । ସତେ ଯେପରି, ମହାରାଜା ପାକିସ୍ତାନ ଶାସକଙ୍କ ମନ ଜାଣି ନିଷ୍ପତ୍ତି କରିଛନ୍ତି । ରାମଚନ୍ଦ୍ର କାକ୍‌ଙ୍କୁ ପ୍ରଧାନମନ୍ତ୍ରୀ ପଦରୁ ତଡ଼ି ଦିଆଯାଇଥିଲେ ହେଁ, ତାଙ୍କଦ୍ୱାରା ଯେଉଁ ଷଡ଼ଯନ୍ତ୍ର ଖଞ୍ଜାଯିବାର କଥା, ସେଥିରେ ପାକିସ୍ତାନ ସରକାର ସଫଳତା ହାସଲ କରିପାରିଥିଲେ । ପାକିସ୍ତାନ ଚାହୁଁଥିଲା—କୌଣସିମତେ ତା'ର ଉଦ୍ଦେଶ୍ୟ ସାଧିତ ହେଉ; ତେଣୁ କାଶ୍ମୀରକୁ ଘରଢିଙ୍କିରେ ପରିଣତ କରି ବଂଶନିପାତ କରିବା ଥିଲା ତାର ଉଦ୍ଦେଶ୍ୟ; ଯେପରି ଉପାୟରେ ହେଉ ନା କାହିଁକି, ଉଦ୍ଦେଶ୍ୟ ସଫଳ ହେଲେ ହେଲା । ପାକିସ୍ତାନର ଅସଲ ଉଦ୍ଦେଶ୍ୟ ସାଧିତହେବାର କିଛିଦିନ ପରେ ଲକ୍ଷ୍ୟହାସଲ ଲାଗି ସେଠାକାର ଶାସକଦଳ ଲାଗିପଡ଼ିଲେ । ସେମାନେ କୌଶଳକ୍ରମେ ଷଡ଼ଯନ୍ତ୍ର ଆରମ୍ଭ କରିଦେଲେ । ତାଙ୍କର ଏହି ଷଡ଼ଯନ୍ତ୍ରକୁ ପୂର୍ଣ୍ଣପ୍ରାଣରେ ସଫଳ କରିବାଲାଗି ଜଣେ ବିଶ୍ୱସ୍ତ ଶକୁନି ମଧ୍ୟ ମିଳିଗଲେ । ସେ ସୁଚତୁର ବ୍ୟକ୍ତି ହେଉଛନ୍ତି—କାଶ୍ମୀରର ଭୂତପୂର୍ବ ପ୍ରଧାନମନ୍ତ୍ରୀ କାକ୍‌ଙ୍କର ବିଶ୍ୱସ୍ତ ବନ୍ଧୁ ଓ ମହାରାଜା ହରି ସିଂହଙ୍କ ଅନ୍ନରେ ପ୍ରତିପାଳିତ କାଶ୍ମୀରର ସେନାଧ୍ୟକ୍ଷ ଜେନେରାଲ ଏଚ୍. ଏଲ୍. ସ୍କଟ୍ । ଜେନେରାଲ ସ୍କଟ୍ ଥିଲେ ଅତ୍ୟନ୍ତ ବୁଦ୍ଧିମାନ, ସତର୍କ ଓ ବିଚକ୍ଷଣ କୂଟନୀତିଜ୍ଞ ! ଏହି ଘଟଣାର ସୂତ୍ରପାତ ହେବାପୂର୍ବରୁ ମଧ୍ୟ ତାଙ୍କର ଯୋଜନାବଦ୍ଧ କାର୍ଯ୍ୟକ୍ରମ ଗୋପନରେ ଚାଲିଥିଲା । ସେ 'ତାତିଲା ଜାଉ'ର ମଝିରେ ହାତ ନ ପୂରାଇ ପାଖରୁ ପାଖରୁ ଖାଇବାକୁ ଆରମ୍ଭ କରିଥିଲେ । ସେଭଳି କୂଟନୀତିରେ ମଧ୍ୟ ତାଙ୍କୁ ସଫଳତା ମିଳିବାର ଯଥେଷ୍ଟ ସମ୍ଭାବନା ଥିଲା । ତେଣୁ ସେ ହଠାତ୍ 'ତାତିଲା ଜାଉ'ର ମଝିରେ ହାତ ପୂରାଇବାକୁ ଚାହୁଁ ନ ଥିଲେ । କାରଣ, ସେପରି କରିଥିଲେ ହାତରେ ଫୋଟକା ହେବାର ସମ୍ଭାବନା ଥିଲା । ସେପରି କାମ ଅବା ସେ କରନ୍ତେ କାହିଁକି ? ସେ

ତାଙ୍କର ଯୋଜନାକୁ ସଫଳ କରାଇବା ଉଦ୍ଦେଶ୍ୟରେ ପାକିସ୍ତାନ ଓ କାଶ୍ମୀରର ସୀମା ସରହଦ୍‌ରେ ଗୁପ୍ତ ଷଡ଼ଯନ୍ତ୍ର ଆରମ୍ଭ କରିଦେଲେ । ବିଶେଷତଃ ସେ 'ଗିଲଗିଟ୍' ଅଞ୍ଚଳରେ ଅଧିକ ତତ୍ପର ହୋଇପଡ଼ିଲେ । କାରଣ, ସ୍ୱାଧୀନତା ପୂର୍ବରୁ 'ଗିଲ୍‌ଗିଟ୍' ଅଞ୍ଚଳରେ ଇଂରେଜମାନଙ୍କର ଏକ ସେନାଛାଉଣି ଥିଲା ଏବଂ ଉକ୍ତ ସେନାଛାଉଣି ଅଧୀନରେ ଗୋଟିଏ ସୈନ୍ୟଦଳ ରହିଥିଲା । ସେ ସେନାବାହିନୀର ନାମ ଥିଲା "ସ୍କାଉଟ୍" । ସ୍ୱାଧୀନତା ଘୋଷଣା ହେବାମାତ୍ରେ ଇଂରେଜମାନେ ମଧ୍ୟ 'ଗିଲଗିଟ୍' ଅଞ୍ଚଳ ଛାଡ଼ି ଚାଲିଗଲେ ଏବଂ ସେ ସେନାଛାଉଣିର ପରିଚାଳନା ଦାୟିତ୍ୱ ମହାରାଜା ହରି ସିଂହଙ୍କ ଉପରେ ପଡ଼ିଲା । ମହାରାଜା ରାଜ୍ୟର ସୁରକ୍ଷା ଓ ଯୋଜନାବଦ୍ଧ ଶାସନ ଉଦ୍ଦେଶ୍ୟରେ ବ୍ରିଗେଡ଼ିଅର୍ ଘନଶ୍ୟାର ସିଂହଙ୍କୁ 'ଗିଲ୍‌ଗିଟ୍' ଅଞ୍ଚଳର 'ଗଭର୍ଣ୍ଣର'ରୂପେ ମନୋନୀତ କରି ଯଥାଶୀଘ୍ର ସମ୍ଭବ ସେଠାକୁ ପଠାଇଦେଲେ ।

୧୯୪୭ ଜୁଲାଇ ୩୦ ତାରିଖରେ ବ୍ରିଗେଡିଅର୍ ଘନସାର ସିଂହ 'ଗିଲଗିଟ୍' ଅଞ୍ଚଳର ଦାୟିତ୍ୱ ନେବାକୁ ସେଠାରେ ଉପସ୍ଥିତ ହେଲେ । ସେଠାକାର ଅନ୍ୟାନ୍ୟ ବ୍ୟବସ୍ଥାର ସୁପରିଚାଳନା ଲାଗି ଜେନେରାଲ ସ୍କଟ୍ ମଧ୍ୟ ତାଙ୍କ ସହିତ ସେଠାକୁ ଯାଇଥିଲେ । ସେ ସେଠାକାର ପରିସ୍ଥିତି ସମ୍ବନ୍ଧରେ ପ୍ରତ୍ୟକ୍ଷ ଜ୍ଞାନାର୍ଜନ କରି ମହାରାଜା ହରି ସିଂହଙ୍କୁ ଅବଗତ କରାଇବା ଉଦ୍ଦେଶ୍ୟରେ ସେଠାକୁ ଯାଇଥିଲେ । କିନ୍ତୁ ତାଙ୍କର ପ୍ରକୃତ ଉଦ୍ଦେଶ୍ୟ ଥିଲା—ଭିନ୍ନ ଧରଣର; ଅର୍ଥାତ୍ ତାଙ୍କ ଗୁପ୍ତ ଯୋଜନାକୁ କାର୍ଯ୍ୟକାରୀ କରାଇବା । ସେହିଦିନ ସନ୍ଧ୍ୟା ସମୟରେ ନବନିଯୁକ୍ତ ଗଭର୍ଣ୍ଣର୍ ବ୍ରିଗେଡିଅର୍ ଘନସାର ସିଂହ ଓ ଜେନେରାଲ୍ ସ୍କଟ୍‌ଙ୍କ ସମ୍ମାନାର୍ଥ ସେନାଛାଉଣିର ସମସ୍ତ ପଦସ୍ଥ କର୍ମଚାରୀ ଏକତ୍ରିତ ହୋଇଥିଲେ । ସେହି ଅଭିନନ୍ଦନ ଉତ୍ସବରେ ସ୍କଟ୍‌ଙ୍କ ପୂର୍ବନିର୍ଦ୍ଧାରିତ ଯୋଜନା ଅନୁସାରେ ସ୍କାଉଟମାନଙ୍କର ଅଧ୍ୟକ୍ଷ ମେଜର୍ ବାବର୍ ଖାଁ ଛିଡ଼ାହୋଇ କହିଲେ :

> "ଯଦି ଜାମ୍ମୁ ଓ କାଶ୍ମୀରର ସରକାର ତାଙ୍କ ଦାବି ସହାନୁଭୂତିର ସହିତ ବିଚାର ନ କରନ୍ତି, ତା ହେଲେ ସେ ଓ ତାଙ୍କର ସମସ୍ତ ସହଯୋଗୀ ପାକିସ୍ତାନର ସୈନ୍ୟଦଳରେ ଯୋଗଦେବାକୁ ସିଦ୍ଧାନ୍ତ କରିଛନ୍ତି ।"

ଜେନେରାଲ୍ ସ୍କଟ୍ ଲୋକଦେଖାଣିଆଭାବରେ ବାବର ଖାଁଙ୍କର ସମସ୍ତ ଦାବିକୁ ଲିପିବଦ୍ଧ କରିନେଲେ ଏବଂ ତତ୍ ସଙ୍ଗେସଙ୍ଗେ ସେମାନଙ୍କ ଦାବି

ପୂରଣ କରିବା ଲାଗି ଆଶ୍ୱାସନା ମଧ୍ୟ ଦେଲେ । ଉପସ୍ଥିତ କ୍ଷେତ୍ରରେ ସେ 'ସ୍କାଉଟ୍'ମାନଙ୍କୁ ମହାରାଜା ହରି ସିଂହ ତଥା ରାଜ୍ୟ ସରକାରଙ୍କ ପ୍ରତି ବିଶ୍ୱାସ-ଭାଜନ ହେବାଲାଗି ଉପଦେଶ ଦେଲେ । କାର୍ଯ୍ୟକ୍ରମର ସମାପ୍ତିପରେ ବ୍ରିଗେଡିଅର୍ ଘନସାର ସିଂହ ଏକାନ୍ତରେ ଜେନେରାଲ୍ ସ୍କଟ୍‌ଙ୍କୁ ପଚାରିଲେ—

"ଆପଣତ ସମସ୍ତଙ୍କୁ ଆଶ୍ୱାସନା ଦେଇଦେଲେ; ମାତ୍ର ଯେତେଦୂର ସମ୍ଭବ ସେମାନଙ୍କ 'ପେନ୍‌ସନ୍' ଦାବିକୁ କୌଣସିମତେ ରାଜ୍ୟସରକାରଙ୍କ ପକ୍ଷରୁ ପୂରଣ କରାଯାଇପାରିବ ନାହିଁ ।"

: "କାହିଁକି, ଅସୁବିଧା କ'ଣ" ?

: "କାରଣ, ପ୍ରତି ପଞ୍ଚମ ବର୍ଷରେ 'ସ୍କାଉଟ୍'ମାନଙ୍କର କାର୍ଯ୍ୟକାଳ ଶେଷ ହୋଇଯିବ । ଏପରି ପରିସ୍ଥିତିରେ, ଏତେ ଲୋକଙ୍କର 'ପେନ୍‌ସନ୍' ବୋଝ ରାଜ୍ୟ ସରକାର ମୁଣ୍ଡାଇ ପାରିବେ କିପରି ? ବିଶେଷତଃ ଇଂରେଜ ସରକାର ଯେତେବେଳେ ଏଭଳି ଦାବିକୁ ପୂରଣ କରିପାରି ନ ଥିଲେ, ଏହା ରାଜ୍ୟ ସରକାର କିପରି ତୁଲାଇ ପାରିବେ ?"

ଜେନେରାଲ ସ୍କଟ୍ ଟିକିଏ ଗମ୍ଭୀର ହୋଇଯାଇ ମୁଣ୍ଡ ହଲାଇ କହିଲେ—

"ତା'ତ ସତ, କିନ୍ତୁ ଏଥିଲାଗି ମୁଁ ବିଶେଷଭାବରେ ଚେଷ୍ଟା କରିବି; କାରଣ, ଏହା ମଧ୍ୟ ରାଜ୍ୟ ପକ୍ଷରେ ଏକ ଅତ୍ୟାବଶ୍ୟକୀୟ ବ୍ୟବସ୍ଥା ।"

'ରେସିଡେଣ୍ଟ'ର ମେଜର୍ ବେକନ୍ ତଥା ଅନ୍ୟାନ୍ୟ ପଦାଧିକାରୀ-ମାନଙ୍କ ସହିତ ତାଙ୍କର ଯେଉଁସବୁ ଗୁପ୍ତ ଆଲୋଚନା ଥିଲା, ସେସବୁକୁ ସଫଳତାର ସହିତ ଶେଷ କରି, ଜେନେରାଲ ସ୍କଟ୍ ଶ୍ରୀନଗରରୁ ଫେରି ଆସିଲେ । ସ୍କଟ୍‌ଙ୍କର ଫେରିଯିବା ପରେ ସେଠାକାର ଅଫିସ୍‌ରେ କାର୍ଯ୍ୟ କରୁଥିବା ସମସ୍ତ କର୍ମଚାରୀ ଏକଜୁଟ ହୋଇ ଗଭର୍ଣ୍ଣର୍‌ଙ୍କଠାରେ, ସେମାନଙ୍କ ବେତନ ବୃଦ୍ଧି ଲାଗି, ଦାବି ଜଣାଇଲେ ଏବଂ ଦାବି ପୂରଣ ନ ହେଲେ, ସେମାନେ ଆନନ୍ଦର ସହିତ ପାକିସ୍ତାନ ସରକାରଙ୍କ ଅଧୀନରେ ସ୍ୱୀକାର କରିବାକୁ ଆଗ୍ରହୀ ବୋଲି ମଧ୍ୟ ପ୍ରଚ୍ଛନ୍ନ ଧମକ ଦେଲେ । ଗଭର୍ଣ୍ଣର୍ ସମସ୍ତଙ୍କୁ ଆଶ୍ୱାସନା ଦେବା ସଙ୍ଗେ ସଙ୍ଗେ, ସବୁ ବିଷୟ ଲେଖି ସରକାରଙ୍କୁ ଜଣାଇଦେବା ଲାଗି ପ୍ରତିଶ୍ରୁତି ଦେଲେ । କିନ୍ତୁ କର୍ମଚାରୀମାନଙ୍କ ପକ୍ଷରେ ଅପେକ୍ଷା କରିବା ଲାଗି ସମୟ ନ ଥିଲା । ସେମାନଙ୍କ ଦାବି ମାତ୍ର ଥିଲା ଏକ ଛଳନା; ତେଣୁ ସେମାନେ ସରକାରୀ କାମକୁ ଅଚଳ କରିଦେଇ ପୂର୍ଣ୍ଣ ହରତାଳ ଆରମ୍ଭ କରିଦେଲେ ।

ଅନ୍ୟ ଦିଗରେ ପାକିସ୍ତାନର ସୀମା-ସରିହଦ୍‌କୁ ଲାଗିରହିଥିବା 'ଚିଲାସ' ଅଞ୍ଚଳରେ କ୍ୟାପ୍‌ଟେନ୍ ହେମିଲ୍‌ଟନ୍ ନାମକ ଅଫିସରଙ୍କ ନେତୃତ୍ୱରେ 'ପାକିସ୍ତାନ ଜିନ୍ଦାବାଦ୍' ଧ୍ୱନି ଶୁଣାଗଲା । ଆହୁରି ମଧ୍ୟ 'ପୁଁଜି' ନାମକ ସ୍ଥାନରେ ପୂର୍ବରୁ ନିଯୁକ୍ତ ଥିବା ସୈନ୍ୟମାନଙ୍କୁ ଉଠାଇନେଇ, ତାଙ୍କ ସ୍ଥାନରେ ଜେନେରାଲ୍ ସ୍କଟ୍ ଶ୍ରୀନଗରରୁ ଅନ୍ୟ ଏକ ସେନାଦଳ ପଠାଇଦେଲେ । ସେହି ସେନାଦଳର ନାୟକ କ୍ୟାପ୍‌ଟେନ୍ ହୁସେନ୍ ଖାଁ 'ବାଁଘପୁର' ନାମକ ସ୍ଥାନରେ ପହଞ୍ଚିବା ମାତ୍ରେ, ପାକିସ୍ତାନର ସମର୍ଥନ କରି ବିକ୍ଷୋଭ ଆରମ୍ଭ କରିଦେଲେ ଏବଂ ପାକିସ୍ତାନର ସ୍ଥାନୀୟ ସମର୍ଥକ ଓ ଅନ୍ୟାନ୍ୟ ଲୋକମାନଙ୍କୁ ଏକତ୍ରିତ କରି ବୁଝାସୁଝା କରାଇଲେ ତଥା ସେମାନଙ୍କର ଅସୁବିଧାପ୍ରତି ଦୃଷ୍ଟି ଦେଇ କାର୍ଯ୍ୟ କରିବାକୁ ପ୍ରତିଶ୍ରୁତି ଦେଲେ ।

'ଗିଲ୍‌ଗିଟ୍' ଅଞ୍ଚଳର ପରିସ୍ଥିତି ଦିନକୁଦିନ ଜଟିଳ ହୋଇପଡ଼ିଲା । ବାତାବରଣ ଗମ୍ଭୀରରୁ ଗମ୍ଭୀରତର ହେବାକୁ ଲାଗିଲା । ଏ ସମ୍ବନ୍ଧରେ ପୁଙ୍ଖାନୁପୁଙ୍ଖ ବିଚାର କରି ଗଭର୍ଣ୍ଣର୍ ଘନସାର ସିଂହ କାଶ୍ମୀର ସରକାର ଓ ଜେନେରାଲ୍ ସ୍କଟ୍‌ଙ୍କୁ ଅନେକ ଜରୁରୀ ପତ୍ର ଲେଖିଲେ; ମାତ୍ର ଖଣ୍ଡିଏ ହେଲେ ପତ୍ରର ଉତ୍ତର ଆସିଲା ନାହିଁ ।

ଏହା ମଧ୍ୟରେ ଭାରତ ସହିତ ଜାମ୍ମୁ ଓ କାଶ୍ମୀରର ମିଶ୍ରଣ ସମ୍ପର୍କୀୟ ଆଲୋଚନା, ପାକିସ୍ତାନଦ୍ୱାରା ଆକ୍ରମଣ, ଜେନେରାଲ୍ ସ୍କଟ୍‌ଙ୍କ ବହିଷ୍କାର ଆଦେଶ, 'ମୁଜାଫରାବାଦ୍'ରେ ନିଯୁକ୍ତ ସେନାଦଳର ଅଧ୍ୟକ୍ଷ ଶେର୍ ଅଲ୍ଲୀଙ୍କ ବିଦ୍ରୋହ ଓ ପାକିସ୍ତାନ୍‌ଦ୍ୱାରା 'ମୁଜାଫରାବାଦ୍'ର ଅଧିକାର ଆଦି ଗୁରୁତ୍ୱପୂର୍ଣ୍ଣ ସମାଚାର ଗଭର୍ଣ୍ଣର୍ ଘନସାର ସିଂହଙ୍କୁ ମିଳିଲା । ତା'ପରେ ତାଙ୍କର ଚିନ୍ତା ଦିନକୁ ଦିନ ବୃଦ୍ଧି ପାଇଲା । କିନ୍ତୁ ତା' ସତ୍ତ୍ୱେ, ସେ ନିଜ କର୍ତ୍ତବ୍ୟରେ ଅଟଳ ରହିଲେ । ସେ କୌଣସିମତେ ରାଜ୍ୟର ବିଶ୍ୱସ୍ତ କର୍ମଚାରୀମାନଙ୍କୁ ଅସହାୟ ଅବସ୍ଥାରେ ସେହି ବିପଦପୂର୍ଣ୍ଣ ସ୍ଥାନରେ ଛାଡ଼ି ନିଜେ ପଳାଇଆସିବାକୁ ପସନ୍ଦ କଲେ ନାହିଁ । ତା'ପରେ ହଠାତ୍ ଦିନେ ମେଜର୍ ବ୍ରାଉନ୍, ହୈଦର୍ ଖାଁ ଓ ମେଜର୍ ବାବର୍ ଖାଁଙ୍କ ନେତୃତ୍ୱରେ 'ସ୍କାଉଟ୍'ମାନେ ଆସି ଗଭର୍ଣ୍ଣର୍‌ଙ୍କ ବାସଭବନକୁ ଘେରି-ଗଲେ । ଉଭୟ ପକ୍ଷରୁ ଗୁଳି ଚାଲିଲା । ବ୍ରିଗେଡ଼ିଅର୍ ଘନସାର ସିଂହଙ୍କ ଡ୍ରାଇଭର ମାଖନ ସିଂହ ଓ ଅର୍ଦ୍ଦଳି ହସାର ସିଂହ ଘରର ଝରକାବାଟେ 'ସ୍କାଉଟ୍'ମାନଙ୍କ ଉପରକୁ ଗୁଳି ବୃଷ୍ଟିକଲେ । କିଛି ସମୟ ପରେ ବିଦ୍ରୋହୀମାନେ

‘ମେସିନ୍‌ଗନ୍’ ଚଳାଇବା ଆରମ୍ଭ କରିଦେଇ ଖବର ପଠାଇଲେ—ଯଦି ପନ୍ଦର ମିନିଟ୍ ମଧ୍ୟରେ ଗଭର୍ଣ୍ଣର୍ ଆତ୍ମସମର୍ପଣ ନ କରନ୍ତି, ତା'ହେଲେ ସେମାନେ କେବଳ ଘନଶ୍ୟାମ ସିଂହଙ୍କୁ ନୁହେଁ, ସମସ୍ତ ହିନ୍ଦୁ କର୍ମଚାରୀଙ୍କୁ ତଥା ରାଜ୍ୟ ଶାସନର ସମସ୍ତ ସମର୍ଥକଙ୍କୁ ଗୁଳିରେ ଉଡ଼ାଇଦେବେ । ତା' ପରେ ପରେ ଗଭର୍ଣ୍ଣର୍ ନିଜର ସମର୍ଥକମାନଙ୍କ ସହିତ ଆତ୍ମସମର୍ପଣ କରିବାମାତ୍ରେ ବିଦ୍ରୋହୀ ‘ସ୍କାଉଟ୍’ମାନେ ସମସ୍ତଙ୍କୁ ବନ୍ଦୀ କଲେ ।

ଏଣେ ପାକିସ୍ତାନ ମଧ୍ୟ ଲୁଗା, ଲୁଣ, ତେଲ, ପେଟ୍ରୋଲ ଆଦି ଅତ୍ୟାବଶ୍ୟକୀୟ ଜିନିଷଗୁଡ଼ିକୁ କାଶ୍ମୀରଭିତରକୁ ପଠାଇବା ବନ୍ଦକରିଦେଲା । ଦୁଇଆଡ଼ୁ ରାଜ୍ୟସରକାରଙ୍କୁ ଅସୁବିଧାରେ ପକାଇ ଅନ୍ତର୍ବିଦ୍ରୋହଫଳରେ, ଯେକୌଣସିମତେ କାଶ୍ମୀରକୁ ଆୟତ୍ତକରିବା ଥିଲା ପାକିସ୍ତାନର କୌଶଳ । ଅତ୍ୟାବଶ୍ୟକୀୟ ଜିନିଷଗୁଡ଼ିକ ନ ମିଳିବାଫଳରେ ଦରଦାମ ହୁ ହୁ କରି ବଢ଼ିଚାଲିଲା; ଏପରିକି, ଲୁଣ ସେର ପାଞ୍ଚ ଟଙ୍କା ହୋଇଗଲା । ସୁବିଧାବାଦୀମାନେ ଏହି ଗଣ୍ଡଗୋଳିଆ ପରିସ୍ଥିତିରେ ବେଶ୍ ସ୍ୱାର୍ଥସାଧନରେ ଲାଗିପଡ଼ିଲେ । ସେମାନେ କାହିଁକି ବା ଦେଶର ଭଲ-ମନ୍ଦରେ ଦାୟୀ ହୁଅନ୍ତେ ? ସେମାନେ ଚାହାନ୍ତି, ତାଙ୍କର ଲାଭ ! ବର ମରୁ କନ୍ୟା ମରୁ ; ପୁରୋହିତ ଚାହେଁ ତତ୍‌କାଳୀନ ପୂଜାପାଠରୁ ଦି'ପଇସା ଭଲଭାବରେ ହାତପଇଠ କରିବା !

ଯା' ମଧ୍ୟରେ ମହାରାଜାଙ୍କ ବିରୋଧୀ ଓ ଅବ୍‌ଦୁଲ୍ଲାଙ୍କ ସମର୍ଥକମାନେ ‘ହୋ ହଲ୍ଲା’ ମଚାଇ ରାଜ୍ୟର ପରିସ୍ଥିତିକୁ ଆହୁରି ଜଟିଳ କରିଦେଲେ । ପୁଞ୍ଚ, କୋଟଲୀ ଓ ରାୱଲକୋଟ୍ ଆଦି ଅଞ୍ଚଳରେ ନିଯୁକ୍ତ ମୁସଲମାନ ସୈନ୍ୟମାନେ ପ୍ରତ୍ୟକ୍ଷ ବିଦ୍ରୋହ କରି ପାକିସ୍ତାନୀ ସେନାମାନଙ୍କ ସହିତ ହାତ ମିଳାଇଦେଲେ । ଦିନକୁ ଦିନ ଜାମ୍ମୁ ଓ କାଶ୍ମୀର ରାଜ୍ୟର ପରିସ୍ଥିତି ଭୟାବହ ହୋଇଉଠିଲା । ମହାରାଜା ହରି ସିଂହ ରାଜ୍ୟର ଚିନ୍ତାଜନକ ପରିସ୍ଥିତି ଦେଖି ବିବ୍ରତ ହୋଇପଡ଼ିଲେ ଏବଂ କ୍ରମବର୍ଦ୍ଧମାନ ଜଟିଳତା ସମ୍ପର୍କରେ, କେତେକ ଶୁଭଚିନ୍ତକ ବିଶିଷ୍ଟ ବ୍ୟକ୍ତିଙ୍କ ସହିତ ଘନଘନ ପରାମର୍ଶ କଲେ । ପୂର୍ବରୁ ତିନି ବର୍ଷ ଜେଲ୍ ଦଣ୍ଡରେ ଦଣ୍ଡିତ-ହୋଇଥିବା ଶେଖ୍ ଅବ୍‌ଦୁଲ୍ଲାଙ୍କୁ ଖଲାସ୍ କରିଦେଇ ଅବସ୍ଥାକୁ ଆୟତ୍ତାଧୀନ କରିବାଲାଗି ସମସ୍ତେ ମତ ଦେଲେ । ବିଶେଷତଃ କାଶ୍ମୀରର ଆଭ୍ୟନ୍ତରୀଣ ପରିସ୍ଥିତିର ସୁବ୍ୟବସ୍ଥା ଉଦ୍ଦେଶ୍ୟରେ ଏହା ମଧ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟପରି ବୋଧହେଲା । ଫଳରେ ୧୯୪୭ ସାଲ ସେପ୍ଟେମ୍ବର ୧୯ ତାରିଖରେ ଶେଖ୍

ଅବଦୁଲ୍ଲାଙ୍କୁ ଖଲାସ କରିଦିଆଗଲା । ଅକ୍ଟୋବର ଏକ ତାରିଖରେ ଶ୍ରୀନଗରର 'ହଜୁରିବାଗ୍'ଠାରେ, ତାଙ୍କ ସମ୍ବର୍ଦ୍ଧନା ଉଦ୍ଦେଶ୍ୟରେ ଅନୁଷ୍ଠିତ ସଭାରେ ଭାଷଣ ଦେଇ ଶେଖ୍ ଅବଦୁଲ୍ଲା କହିଥିଲେ :

> "ମୋ' ଶରୀରରେ ବିନ୍ଦୁଏ ମାତ୍ର ରକ୍ତ ଥିବାପର୍ଯ୍ୟନ୍ତ, ମୁଁ କେବେହେଲେ ଦୁଇଟି ଦେଶର ପ୍ରଶ୍ନଉପରେ ବିଶ୍ୱାସ କରିବି ନାହିଁ କିମ୍ବା ସାଂପ୍ରଦାୟିକ ଭେଦଭାବପୂର୍ଣ୍ଣ ବୁନିଆଦ ଉପରେ ଏ ରାଜ୍ୟର (ଜାମୁ ଓ କାଶ୍ମୀରର) ମୂଳପତ୍ତନ ସ୍ଥାପନ କରିବାରେ ସାହାଯ୍ୟ କରିବି ନାହିଁ ।"

ଏହି ବ୍ୟବସ୍ଥା ଫଳରେ ଶ୍ରୀନଗରରେ ଆଶାର ଆଲୋକ ଝଲସି ଉଠିଥିଲେ ମଧ୍ୟ ଭବିଷ୍ୟତ୍ ଘନ-ଅନ୍ଧକାରପୂର୍ଣ୍ଣଭଳି ଅନୁମାନ କରାଯାଉଥିଲା । ପାକିସ୍ତାନର ଦୁରଭିସନ୍ଧି ସମ୍ବନ୍ଧରେ ଆଉ କାହାରି ସନ୍ଦେହ ରହିଲା ନାହିଁ । ଜାମୁ ଓ କାଶ୍ମୀର ରାଜ୍ୟକୁ ଭାରତ ସହିତ ମିଶାଇ ଦେବାର ଘୋଷଣା କରିଦେବା ଲାଗି; ମହାରାଜାଙ୍କର ବନ୍ଧୁବାନ୍ଧବ ଓ ରାଜ୍ୟର ଶୁଭେଚ୍ଛୁମାନେ ବାରମ୍ବାର ତାଙ୍କ ଉପରେ ପ୍ରଭାବ ପକାଇଲେ । ସେମାନଙ୍କ ମତରେ—'ଏହା ନ କଲେ ପରିସ୍ଥିତି ଅତି ସାଂଘାତିକ ହୋଇ ଜାମୁ ଓ କାଶ୍ମୀର ରାଜ୍ୟର ସର୍ବନାଶ ଘଟାଇବ।' ମହାରାଣୀ ତାରା ଦେବୀ ଓ ତାଙ୍କ ଭାଇ ଠାକୁର ନିଚିନ୍ତଚନ୍ଦ୍ର ବିଶେଷ ଚିନ୍ତିତ ହୋଇ, ମହାରାଜାଙ୍କ ନିଷ୍ପତ୍ତି ବଦଳାଇବା ଲାଗି ସମସ୍ତ ପ୍ରକାର ଚେଷ୍ଟା କଲେ, କିନ୍ତୁ ମହାରାଜା ନିଜ ନିଷ୍ପତ୍ତିରୁ ତିଳେହେଲେ ବିଚଳିତ ହେଲେ ହେଲେ ନାହିଁ । ଖୁବ୍ ସମ୍ଭବତଃ ସେ ଭାରତ ସହିତ ଜାମୁ ଓ କାଶ୍ମୀର ରାଜ୍ୟକୁ ନ ମିଶାଇବା ଲାଗି ଏକପ୍ରକାର ଜିଦ୍ ଧରି ବସିଥିଲେ । ନୋହିଲେ, ସେ ପରିସ୍ଥିତିରେ କେବଳ ବିଜ୍ଞତାର ଏକମାତ୍ର କାର୍ଯ୍ୟ ଥିଲା—ଭାରତ ସହିତ କାଶ୍ମୀର ରାଜ୍ୟର ମିଶ୍ରଣ ଏବଂ ତାହା ହିଁ ଥିଲା—ଦୂରଦର୍ଶିତାର କାର୍ଯ୍ୟ !



# ସାତ

ସନ୍ ୧୯୪୭ ଅକ୍ଟୋବର ୨୪ ତାରିଖ ଦଶହରା । ଏ ଦିନ ପ୍ରତିବର୍ଷ ଜାମ୍ମୁ ଓ କାଶ୍ମୀର ମହାରାଜା 'କଣ୍ଠମାଳୁ' ପଡ଼ିଆରେ 'ସଲାମୀ' ନିଅନ୍ତି । ମହାରାଜା ହରି ସିଂହ ମଧ୍ୟ ପୂର୍ବ ପରମ୍ପରା ଅନୁସାରେ ସେହି ଶୁଭ ଦିନରେ 'ସଲାମୀ' ନେଇ ଫେରି ଆସିବା ସମୟରେ ହଠାତ୍ ଶ୍ରୀନଗରର ବିଜୁଳିବତି ଲିଭିଯିବାରୁ ଜଣାଗଲା—'ମାହୁରା' ପାୱାର୍ ହାଉସ୍ ପାକିସ୍ତାନୀ ଆକ୍ରମଣକାରୀଙ୍କ ହାତରେ ପଡ଼ିଗଲାଣି । ଶ୍ରୀନଗରଠାରୁ ମାହୁରାର ଦୂରତ୍ୱ ମାତ୍ର ପଚିଶ ମାଇଲ । ଏ ଖବର ପ୍ରଚାରିତ ହେବା ମାତ୍ରେ ସହରରେ କଳୁଆ ଭୟ ମାଡ଼ି ବସିଲା । ମହାରାଜା ହରି ସିଂହ ଏ ଖବର ପାଇବା ମାତ୍ରେ ଅବାକ୍ ହୋଇ ରହିଗଲେ; ସତେ ଯେପରି, କେହି ତାଙ୍କ ଗାଲରେ ଏକ ନିର୍ଘାତ ଚପେଟାଘାତ କଲା ! ସେତେବେଳେ ଯାଇ ସେ ଅନୁମାନ କରିପାରିଲେ—ରାଜ୍ୟର ପରିସ୍ଥିତି କ'ଣ ଏବଂ ଶାସକଭାବରେ ନିଜର ସ୍ଥିତି କେଉଁଠି ? ତା ସଙ୍ଗେସଙ୍ଗେ ତାଙ୍କୁ ମଧ୍ୟ ଖବର ମିଳିଲା—ମୁଜାଫରାବାଦ୍‌ରେ ନିଯୁକ୍ତ କର୍ଣ୍ଣେଲ ନାରାୟଣ ସିଂହଙ୍କୁ ତାଙ୍କର ବିଦ୍ରୋହୀ ସୈନ୍ୟମାନେ ନିର୍ମମ ଭାବରେ ହତ୍ୟା କରିଛନ୍ତି ଏବଂ ପରିଶେଷରେ ସେମାନେ ମଧ୍ୟ ପାକିସ୍ତାନର ଆକ୍ରମଣକାରୀଙ୍କ ସହିତ ଯୋଗଦାନ କରିଛନ୍ତି । ଆହୁରି ମଧ୍ୟ, ସେଠାରେ ନିଯୁକ୍ତଥିବା ସମସ୍ତ ହିନ୍ଦୁସୈନ୍ୟଙ୍କୁ ହତ୍ୟା କରାଯାଇଛି । ଏପ୍ରକାର ଭୟଙ୍କର ଲୋମହର୍ଷଣକାରୀ ସମ୍ବାଦ ଶୁଣିବାପରେ ମହାରାଜାଙ୍କର ଚୈତନ୍ୟ ଉଦୟ ହେଲା ଏବଂ ରାଜ୍ୟର ପରିସ୍ଥିତି ସମ୍ବନ୍ଧରେ ତାଙ୍କର ପୂର୍ଣ୍ଣଧାରଣା ହୋଇଗଲା । ସେ ଏଥର ବିଶ୍ୱାସଘାତକ ଦଳର ଷଡ଼ଯନ୍ତ୍ର ସମ୍ବନ୍ଧରେ ସଠିକ ଧାରଣା କରିପାରିଲେ । ତା ସଙ୍ଗେସଙ୍ଗେ ମଧ୍ୟ ସେ ନିଜର ବୁଦ୍ଧିହୀନତା ତଥା ବିବେକ ବିରୁଦ୍ଧର ପ୍ରତିକ୍ରିୟା ସମ୍ବନ୍ଧରେ ଅନୁଶୋଚନା କରିବାକୁ ଲାଗିଲେ ଏବଂ ଅତୀତର ନିଜର କାର୍ଯ୍ୟକଳାପ ଉପରେ 'ନିଜେ

କ୍ରୋଧ ପ୍ରକାଶ ନ କରି ରହି ପାରିଲେ ନାହିଁ । ଏତଦ୍‌ବ୍ୟତୀତ, ନିଜର କର୍ତ୍ତବ୍ୟ-ହୀନତା ତଥା ଅଦୂରଦର୍ଶିତା ଉପରେ ମଧ୍ୟ ତାଙ୍କର ଅଧିକ କ୍ରୋଧ ଜାତ ହେଲା । ସେ ସଙ୍ଗେସଙ୍ଗେ ଭାରତ ସହିତ 'ଜାମ୍ମୁ ଓ କାଶ୍ମୀର'ର ମିଶ୍ରଣ ଲାଗି ସିଦ୍ଧାନ୍ତ କରିଦେଲେ ଏବଂ ସେହିଦିନ ରାତିରେ ନିଜର ଉପପ୍ରଧାନମନ୍ତ୍ରୀ ରାମ୍‌ଲାଲ୍ ବତ୍ରାଙ୍କୁ ଭାରତ ସହିତ ଜାମ୍ମୁ ଓ କାଶ୍ମୀରର ମିଶ୍ରଣ ସପକ୍ଷରେ ମତଦେଇ, ଭାରତ ସରକାରଙ୍କୁ ପତ୍ର ଲେଖି ଯଥାଶୀଘ୍ର ସମ୍ଭବ ଦିଲ୍ଲୀ ଚାଲିଯିବା ଲାଗି ଆଦେଶ ଦେଲେ । ସେ ଗୋଟିଏ ଗୋଟିଏ ସ୍ୱତନ୍ତ୍ରପତ୍ର ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲଜୀ ଓ ଉପପ୍ରଧାନମନ୍ତ୍ରୀ ତଥା ସ୍ୱରାଷ୍ଟ୍ରବିଭାଗ ମନ୍ତ୍ରୀ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ନାମରେ ଲେଖି ତୁରନ୍ତ ସୈନିକ ସହାୟତା ଲାଗି ଅନୁରୋଧ ଜଣାଇଲେ । ସେପରି ବିପଜ୍ଜନକ ପରିସ୍ଥିତି ସତ୍ତ୍ୱେ ମହାରାଜା ହରି ସିଂହ ଶ୍ରୀନଗରରେ ରହିବା ଲାଗି ସିଦ୍ଧାନ୍ତ କରିଥିଲେ । ସେ କୌଣସିମତେ, ସେପରି ଅସୁବିଧାଜନକ ଅବସ୍ଥାରେ ମଧ୍ୟ, ଆତ୍ମରକ୍ଷା ଉଦ୍ଦେଶ୍ୟରେ ନିଜର ପ୍ରଜାମାନଙ୍କୁ ଅସହାୟଭାବେ ଛାଡ଼ିଦେଇ ଅନ୍ୟ କୌଣସି ସୁରକ୍ଷିତ ସ୍ଥାନକୁ ପଳାଇଯିବାଲାଗି ମନସ୍ଥ କଲେ ନାହିଁ । ଏହାଦ୍ୱାରା ତାଙ୍କର ମନୁଷ୍ୟତ୍ୱ ଉପରେ କଳଙ୍କ କାଳିମା ଲାଗିଯିବାର ଆଶଙ୍କା ଥିଲା ।

ମନ୍ତ୍ରୀ ରାମଲାଲ୍ ବତ୍ରାଙ୍କ ଯିବା ପୂର୍ବରୁ ଠାକୁର ନଚନ୍ଦ୍ରଚନ୍ଦ୍ରଙ୍କ ସହିତ ମହାରାଣୀ ତାରାଦେବୀ ଦିଲ୍ଲୀଯାତ୍ରା ଆରମ୍ଭ କରିଥିଲେ । ମହାରାଣୀ ଦିଲ୍ଲୀରେ ପହଞ୍ଚି, ସର୍ଦ୍ଦାର ପଟେଲଙ୍କ ସହିତ ସାକ୍ଷାତ୍ କରିବା ସଙ୍ଗେସଙ୍ଗେ ଜାମ୍ମୁ ଓ କାଶ୍ମୀରର ସମସ୍ତ ଘଟଣା ସମ୍ପର୍କରେ ତାଙ୍କୁ (ସର୍ଦ୍ଦାରଜୀଙ୍କୁ) ଅବଗତ କରାଇ ଯଥାଶୀଘ୍ର ସମ୍ଭବ ସୈନିକ ସାହାଯ୍ୟ ପଠାଇବାଲାଗି ଅନୁରୋଧ କଲେ । କାଶ୍ମୀର ରାଜ୍ୟର ପରିସ୍ଥିତି ସମ୍ପର୍କରେ ସମ୍ପୂର୍ଣ୍ଣ ଘଟଣା ଜାଣିବାପରେ, ସର୍ଦ୍ଦାର ପଟେଲ୍‌ଙ୍କ ମନରେ ଗଭୀର ଚିନ୍ତା ଜାତ ହେଲା । ତା'ରି ମଧ୍ୟରେ ରାମଲାଲ ବତ୍ରା ମଧ୍ୟ ମହାରାଜାଙ୍କ ପତ୍ର ନେଇ ଦିଲ୍ଲୀରେ ପହଞ୍ଚିଗଲେ । ସର୍ଦ୍ଦାର ପଟେଲ୍ ସଙ୍ଗେସଙ୍ଗେ ପ୍ରଧାନମନ୍ତ୍ରୀ ନେହରୁଙ୍କ ସହିତ ଆଲୋଚନା କରି ପରଦିନ କେନ୍ଦ୍ର ସରକାରଙ୍କ ସ୍ୱରାଷ୍ଟ୍ର ବିଭାଗ ସେକ୍ରେଟେରୀ ଭି. ପି. ମେନନ୍‌ଙ୍କୁ ଉଡ଼ାଜାହାଜରେ ଶ୍ରୀନଗର ପଠାଇ ଦେଲେ । ଶ୍ରୀ ମେନନ୍ ସର୍ବପ୍ରଥମେ ଜାମ୍ମୁ ଓ କାଶ୍ମୀରର ତତ୍କାଳୀନ ପ୍ରଧାନମନ୍ତ୍ରୀ ମେହେରଚାନ୍ଦ୍ ମହାଜନଙ୍କ ସହିତ ସାକ୍ଷାତ୍ କରିବା ପରେ ପରେ ମହାରାଜା ହରି ସିଂହଙ୍କ ସହିତ ଆବଶ୍ୟକୀୟ କଥାବାର୍ତ୍ତା ଆରମ୍ଭ

କଲେ । ସେ ଅନ୍ୟାନ୍ୟ ଜରୁରୀ ଆଲୋଚନା ଶେଷ କରି ଶୀଘ୍ର ମହାରାଜାଙ୍କୁ ଶ୍ରୀନଗର ତ୍ୟାଗ କରି ଜାମ୍ମୁ ଚାଲିଯିବାଲାଗି ପରାମର୍ଶ ଦେଲେ । କାରଣ, ତା' ଫଳରେ ଜାମ୍ମୁ ଓ କାଶ୍ମୀରର ଭାରତ ସହିତ ମିଶ୍ରଣ ସମ୍ପର୍କୀୟ ଆଲୋଚନା ସୁବିଧାରେ ତଥା ଆବଶ୍ୟକ ହେଲେ ବ୍ୟକ୍ତିଗତଭାବରେ ହେବାର ସମ୍ଭାବନା ଥିଲା । ଅନ୍ୟଥା ସେପରି ପରିସ୍ଥିତିରେ ଶ୍ରୀନଗରର ଅବସ୍ଥା କେତେବେଳେ କି ଆକାର ଧାରଣ କରିବ, ସେ ସମ୍ବନ୍ଧରେ କେହି ସଠିକ କଳ୍ପନା କରି ପାରୁ ନ ଥିଲେ । କୌଣସି ଅସ୍ୱାଭାବିକ ପରିସ୍ଥିତିରେ ମିଶ୍ରଣ ସମ୍ପର୍କୀୟ ଆଲୋଚନା ବାଧାପ୍ରାପ୍ତ ହେବାର ଆଶଙ୍କା ଥିବାରୁ; ପରିଶେଷରେ, ମହାରାଜା ହରି ସିଂହ ଶ୍ରୀନଗର ଛାଡ଼ି ସପରିବାର ଜାମ୍ମୁ ଚାଲିଗଲେ । ମହାରାଜାଙ୍କ ପକ୍ଷରେ ସେ ଯାତ୍ରା ଆଦୌ ଆନନ୍ଦଦାୟକ ନ ଥିଲା । ସେହିଦିନ ମଧ୍ୟ ଶେଖ୍ ଅବ୍ଦୁଲ୍ଲା ଶ୍ରୀନଗରରୁ ଦିଲ୍ଲୀ ଯାତ୍ରା କଲେ ।

ପରଦିନ ସକାଳେ ମହାରାଜାଙ୍କ ଆଦେଶାନୁସାରେ, ଭି. ପି. ମେନନ୍‌ଙ୍କ ସହିତ ପ୍ରଧାନମନ୍ତ୍ରୀ ମେହେରଚାନ୍ଦ ମହାଜନ ଦିଲ୍ଲୀ ଚାଲିଗଲେ ଏବଂ ଉଡ଼ାଜାହାଜ ପଡ଼ିଆରୁ ସିଧାସଳଖ 'ୟର୍କରୋଡ଼'ସ୍ଥିତ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହରୁଙ୍କ ବାସଭବନରେ ଉପସ୍ଥିତ ହେଲେ । ସେତେବେଳେ ଉପପ୍ରଧାନମନ୍ତ୍ରୀ ସର୍ଦ୍ଦାରଜୀ ମଧ୍ୟ ସେଠାରେ ପ୍ରଧାନମନ୍ତ୍ରୀଙ୍କ ସହିତ ଆଲୋଚନା କରୁଥିଲେ । ଶ୍ରୀ ମହାଜନ ଉପସ୍ଥିତ ହେବାମାତ୍ରେ ଶୀଘ୍ର ସୈନ୍ୟ ସାହାଯ୍ୟ ପଠାଇବାଲାଗି ପଣ୍ଡିତ ନେହରୁଙ୍କ-ଠାରେ ନିବେଦନ ଜଣାଇ, ପାକିସ୍ତାନୀଙ୍କ ହାତରେ ଶ୍ରୀନଗରର ପତନ ପୂର୍ବରୁ ରାଜ୍ୟର ଉଦ୍ଧାରଲାଗି ଅନୁରୋଧ କଲେ । ମେହେରଚାନ୍ଦଙ୍କ ଆକୁଳ ନିବେଦନ ଉପରେ ଗୁରୁତ୍ୱ ନ ଦେଇ କିମ୍ବା ପରିସ୍ଥିତିର ଗମ୍ଭୀରତା ସମ୍ବନ୍ଧରେ ବିଶେଷ ଚିନ୍ତା ନ କରି ପଣ୍ଡିତ ଜବାହରଲାଲ୍ କହିଲେ :

"ଆପଣଙ୍କର ଆଉ ବିଶେଷ ଚିନ୍ତା କରିବାର ଆବଶ୍ୟକତା ନାହିଁ । ଭାରତ ସରକାରଙ୍କର ଯଥେଷ୍ଟ ଶକ୍ତି ଅଛି । ଆମେ ପାକିସ୍ତାନୀଙ୍କ କବଳରୁ କାଶ୍ମୀରକୁ ଉଦ୍ଧାର କରିପାରିବୁ ।"

: "ଶ୍ରୀନଗରର ପତନ ପରେ ଆପଣ ଆଉ ଥରେ ଦୁର୍ବୃତ୍ତଙ୍କ କବଳରୁ ତା'ର ଉଦ୍ଧାର କରିପାରନ୍ତି, ମାତ୍ର ସ୍ୱା ମଧ୍ୟରେ ଯେଉଁ ଲୁଣ୍ଠନରାଜ୍ ଓ ବ୍ୟାପକ ନରହତ୍ୟା ହୋଇଯିବ ସେଥିଲାଗି ....."

ଶ୍ରୀ ମହାଜନଙ୍କ ବାକ୍ୟ ଶେଷ ହେବା ପୂର୍ବରୁ ପଣ୍ଡିତ ନେହରୁ କହିଉଠିଲେ :

"ମିଷ୍ଟର୍ ମହାଜନ ! ଏତେ ଶୀଘ୍ର ଫୌଜ୍ ପଠାଯାଇ ପାରିବ ନାହିଁ । ସେଥିଲାଗି ଆବଶ୍ୟକୀୟ ପ୍ରସ୍ତୁତ ମଧ୍ୟ ଆବଶ୍ୟକ । ଆଉ ଅନ୍ୟାନ୍ୟ ବିଷୟ ମଧ୍ୟ ରହିଛି । ସେ ସବୁର ବ୍ୟବସ୍ଥା କରିବାକୁ ହେବ; କେବଳ କହିଦେଲେ ତ ଚଳିବ ନାହିଁ !"

ତା'ପରେ ଶ୍ରୀ ମହାଜନ ପୁଣି ବିନମ୍ର ସହକାରେ ପଣ୍ଡିତଜୀଙ୍କୁ ବୁଝାଇବାକୁ ଚେଷ୍ଟା କଲେ, କିନ୍ତୁ ପଣ୍ଡିତଜୀ ପୂର୍ବପରି ତାଙ୍କ ଜିଦ୍‌ରେ ଅଟଳ ରହିଲେ । ଏଥିରେ ଶ୍ରୀ ମେହେରଚାନ୍ଦ ମହାଜନ ଅତ୍ୟନ୍ତ ବ୍ୟଥିତ ହେବା ସଙ୍ଗେସଙ୍ଗେ ବିସ୍ମିତ ମଧ୍ୟ ହେଲେ । ତା'ପରେ ସେ ପଣ୍ଡିତଜୀଙ୍କ ସମ୍ମୁଖରେ ଅନ୍ୟ ଏକ ପ୍ରସ୍ତାବ ଉପସ୍ଥାପିତ କରି କହିଲେ :

"ଆପଣ ଯଦି ଚାହୁଁଥାନ୍ତି, 'ପପୁଲର ପାର୍ଟି' ହାତରେ ଶାସନଭାର ଅର୍ପଣ କରିଦେଲେ ଆପଣ ଆମକୁ ସାହାଯ୍ୟ ଦେବେ; ତା ହେଲେ ମଧ୍ୟ ଆମେ ସେଥିରେ ଏକମତ । କିନ୍ତୁ ଯେ କୌଣସିମତେ ଆଜି ସନ୍ଧ୍ୟା ସୁଦ୍ଧା ଶ୍ରୀନଗର ଉଦ୍ଦେଶ୍ୟରେ ସୈନ୍ୟବାହିନୀ ବାହାରିଯିବା ଆବଶ୍ୟକ । ଯେ କୌଣସି ଉପାୟରେ ହେଉ ଶ୍ରୀନଗରର ସୁରକ୍ଷା କରିବାକୁ ହେବ । ଆହୁରି ମଧ୍ୟ ମୋତେ ମହାରାଜା ଆଦେଶ ଦେଇଛନ୍ତି—ଯଦି ଭାରତରୁ ଶୀଘ୍ର ସୈନ୍ୟ ସାହାଯ୍ୟ ମିଳିବାର ଆଶା ନ ଥାଏ, ତାହାହେଲେ ମୁଁ ଏଠିବାଟେ ସିଧା ଲାହୋର ଯାଇ ମି. ଜିନ୍ନାଙ୍କ ସହିତ କଥାବାର୍ତ୍ତା କରିବ ।"

ଏକଥା ଶୁଣିବାମାତ୍ରେ ପଣ୍ଡିତଜୀ ଖୁବ୍ ରାଗିଯାଇ କହିଲେ :

"ମହାଜନ ! ତୁମେ ଏବେ ଚାଲିଯାଅ ! ତୁମେ ଶୀଘ୍ର ଚାଲିଯାଅ !!!"

ପଣ୍ଡିତଜୀଙ୍କ ବିରକ୍ତି ଦେଖି ମହାଜନ ମଧ୍ୟ ଛିଡ଼ା ହୋଇପଡ଼ି ସେଠାରୁ ଚାଲିଯିବାର ଉପକ୍ରମ କଲେ । ଏହି ସମୟରେ ସେଠାରେ ମୌନ ହୋଇ ବସିଥିବା ସର୍ଦ୍ଦାର ପଟେଲ୍ ତାଙ୍କ ହାତଧରି ବସାଇ ଦେଇ ଧୀର ଗମ୍ଭୀର ସ୍ୱରରେ କହିଲେ :

"ଶୁଣ ମହାଜନ ! ତୁମକୁ ପାକିସ୍ତାନ୍ ଯିବାକୁ ପଡ଼ିବ ନାହିଁ ! ଏହା କ'ଣ କେବେ ସମ୍ଭବ ହୋଇପାରେ ?"

ଠିକ୍ ସେତିକବେଳେ ପାଖ କୋଠରୀରୁ କେହି ଜଣେ ବାହାର ଆସି ପଣ୍ଡିତଜୀଙ୍କ ହାତକୁ ଖଣ୍ଡିଏ ଲେଖା ବଢ଼ାଇ ଦେଲା । ତାହା ଥିଲା ଶେଖ୍ ଅବ୍‌ଦୁଲ୍ଲାଙ୍କ କଥା । ସେ ପାଖ କୋଠରୀରେ ବସି ସମସ୍ତ ଆଲୋଚନା ଶୁଣୁଥିଲେ । ଲେଖାଟିକୁ ପଢ଼ିବା ମାତ୍ରେ ପଣ୍ଡିତ ନେହରୁ ମୁଖଭଙ୍ଗୀ ବଦଳାଇ କହିଲେ—

"ଆଚ୍ଛା ! ତା ହେଲେ ଠିକ୍ ଅଛି, ଶେଖ୍ ସାହେବଙ୍କର ମଧ୍ୟ ଏହା ହିଁ ମତ ।"

ତା ପରେ ସେ ମହାଜନଙ୍କଆଡ଼କୁ ମୁହଁ ବୁଲାଇ ଆଲୋଚନା ଆରମ୍ଭ କଲେ । ପରେ ପଣ୍ଡିତଜୀଙ୍କ ଭାବଭଙ୍ଗୀ ସଂପୂର୍ଣ୍ଣ ପରିବର୍ତ୍ତିତ ହୋଇଗଲା ।

ଦୁଇ ପ୍ରହର ବେଳକୁ 'ଡିଫେନ୍‌ସ୍ କାଉନସିଲ' (Defence Council) ର ବୈଠକ ବସିଲା ଏବଂ ସେହିଦିନ ସନ୍ଧ୍ୟାରେ ମନ୍ତ୍ରୀମଣ୍ଡଳର ବୈଠକ ବସି ଡିଫେ-ନ୍‌ସ୍ କାଉନ୍‌ସିଲ ର ନିଷ୍ପତ୍ତିକୁ ଗ୍ରହଣ କରାଗଲା । ପରଦିନ ପ୍ରାତଃକାଳରୁ ଭାରତୀୟ ଜବାନମାନଙ୍କୁ ଧରି ଲଢ଼ୁଆ ଉଡ଼ାଜାହାଜମାନ ଶ୍ରୀନଗର ଅଭିମୁଖେ ଉଡ଼ିଗଲେ । ମେହରଚାନ୍ଦ ମହାଜନଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେ ସେହିଦିନ ଭି. ପି. ମେନନ୍‌ଙ୍କ ସହିତ ଜାମ୍ମୁ ଚାଲିଗଲେ । କାଶ୍ମୀରର ମିଶ୍ରଣ ସମ୍ପର୍କୀୟ ସରକାରୀ ନଥି ପତ୍ରରେ ମହାରାଜାଙ୍କ ଦସ୍ତଖତ କରାଇବାକୁ ଶ୍ରୀ ମେନନ୍ ଜାମ୍ମୁରେ ଉପସ୍ଥିତ ହେଲେ । ସନ୍ଧ୍ୟା ସମୟକୁ ମହାରାଜାଙ୍କ ସହିତ ମେନନ୍‌ଙ୍କର ସାକ୍ଷାତ୍ ହେଲା । ମହାରାଜା ଖୁବ ପ୍ରସନ୍ନ ଥିଲେ । ସେ ମେନନ୍‌ଙ୍କୁ ଦେଖିବାମାତ୍ରେ ଆନନ୍ଦରେ ଗଦ୍ ଗଦ୍‌ହୋଇ କହିଲେ :

ମୁଁ ଶୋଇବା ପୂର୍ବରୁ ମୋ' ଏ. ଡି. ସି. ଙ୍କୁ କହିଥିଲି—"ଯଦି ଆପଣ ଫେରି ଆସନ୍ତି, ତା ହେଲେ ଭାରତ ସରକାର ମୋ' ଅନୁରୋଧ ଗ୍ରହଣ କରିଛନ୍ତି ବୋଲି ଜାଣିବ । ସେପରି ଅବସ୍ଥାରେ ମୋତେ ଟିକିଏ ଶାନ୍ତିରେ ଶୋଇବାକୁ ଦେବ । ଯଦି ଆପଣ ଫେରି ନ ଆସନ୍ତି, ତା ହେଲେ ଜାଣିବ, ମୁଁ ସବୁ କିଛି ହରାଇ ବସିଛି । ସେପରି ପରିସ୍ଥିତିରେ ମୋତେ ନିଦ୍ରାବସ୍ଥାରେ ଗୁଳିକରି ମାରିଦେବ ।"

ଏହା ମଧ୍ୟରେ, ଅନୁପ୍ରବେଶକାରୀଙ୍କ ଛଦ୍ମବେଶରେ ପାକିସ୍ତାନୀ ସୈନ୍ୟ-ମାନେ 'ବରମୂଲା' ଅଧିକାର କରିସାରି ଶ୍ରୀନଗରର ଉଡ଼ାଜାହାଜ ଘାଟି ନିକଟସ୍ଥ

'ଶାଲଟେଙ୍ଗ' ନାମକ ସ୍ଥାନରେ ଯାଇ ପହଞ୍ଚ ଯାଇଥିଲେ । ସେଠାରୁ ସେମାନେ ନୂତନ ଧରଣର କୌଶଳକ୍ରମେ ଆକ୍ରମଣ କରି ବିମାନ ଅବତରଣଘାଟିକୁ ଅଧିକାର କରିବା ଲାଗି ପ୍ରସ୍ତୁତ ହେଉଥିଲେ । ଏତେ ଶୀଘ୍ର ଓ ସହଜ ଉପାୟରେ ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ସ୍ଥାନଗୁଡ଼ିକୁ ଅଧିକାର କରି ଅନୁପ୍ରବେଶକାରୀମାନେ ଅଗ୍ରସର ହେବାର ତିନୋଟି ଥିଲା ମୁଖ୍ୟ କାରଣ । ପ୍ରଥମତଃ କାଶ୍ମୀରର ରାଜକୀୟ ସୈନ୍ୟ-ଦଳର ସଂଖ୍ୟାନ୍ୟୂନତା, ଦ୍ୱିତୀୟତଃ ଉକ୍ତ ଅଳ୍ପସଂଖ୍ୟକ ସେନାମାନଙ୍କର ବିଭିନ୍ନ-ଦଳରେ ଭିନ୍ନ ଭିନ୍ନ ସ୍ଥାନରେ ନିଯୁକ୍ତି ଓ ତୃତୀୟତଃ ପାକିସ୍ତାନର ସମର୍ଥକ ମୁସଲମାନ ସୈନ୍ୟମାନଙ୍କର ବିଦ୍ରୋହ ।

ମହାରାଜାଙ୍କର ସମୁଦାୟ ସୈନ୍ୟ ସଂଖ୍ୟା ଥିଲା ୯' ହଜାର । ରାଜ୍ୟର ସୁରକ୍ଷା ଦୃଷ୍ଟିରୁ ସେମାନଙ୍କୁ ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ସ୍ଥାନରେ ନିଯୁକ୍ତ କରାଯାଇଥିଲା । ଫଳରେ, ଜରୁରୀ ପରିସ୍ଥିତିରେ ସେମାନଙ୍କୁ ଏକତ୍ରିତ କରିବା ସେତେ ସହଜ ନ ଥିଲା କିମ୍ବା ସେ ସମୟରେ ସେମାନଙ୍କୁ ଏକତ୍ରିତ କରିଥିଲେ କୌଣସି ଲାଭ ମଧ୍ୟ ହୋଇନଥା'ନ୍ତା । କାରଣ, ଯେଉଁ ସ୍ଥାନଗୁଡ଼ିକରୁ ସୈନ୍ୟଦଳ ଉଠାଇ ଅଣାଯାଇଥା'ନ୍ତା, ଅନୁପ୍ରବେଶକାରୀମାନେ ସେହି ଅଞ୍ଚଳକୁ ନିର୍ବିରୋଧରେ ଅଧିକାର କରିପାରିଥାଆନ୍ତେ ! ଉକ୍ତ ସୈନ୍ୟଦଳରେ ପ୍ରାୟ ଦୁଇ-ହଜାର ମୁସଲମାନ ସୈନ୍ୟ ଥିଲେ । ସେଥିମଧ୍ୟରୁ ଅଳ୍ପ କେତେକଙ୍କ ବ୍ୟତୀତ ଅନ୍ୟମାନେ 'ପାକିସ୍ତାନ୍ ଜିନ୍ଦାବାଦ୍' ଧ୍ୱନିକରି ବିଦ୍ରୋହ ଆରମ୍ଭ କରି ଦେଇ-ଥିଲେ ।

ଏପରି ଭୟାବହ ପରିସ୍ଥିତିରେ ମଧ୍ୟ ପାକିସ୍ତାନର ସର୍ବାପ୍ରତି ଘୃଣାଭାବ ପୋଷଣ କରୁଥିବା ଶ୍ରୀନଗରର ଅଧିବାସୀମାନଙ୍କର ମନୋବଳ ବିଚଳିତ ହୋଇ ନ ଥିଲା । ଆକ୍ରମଣକାରୀଙ୍କର ସମ୍ମୁଖୀନ ହେବା ଲାଗି ସେମାନେ ଦୃଢ଼ତା ଓ ସାହସିକତାର ସହିତ ପ୍ରସ୍ତୁତ ହୋଇ ରହିଥିଲେ । ସେମାନଙ୍କ ମନରେ ସେପରି ମନୋବଳ ଓ ଉତ୍ସାହ ଜାଗ୍ରତ କରିବାର ଦାୟିତ୍ୱ ଗ୍ରହଣ କରିଥିଲେ, 'ନେସ୍-ନାଲ୍ କନ୍‌ଫରେନସ୍'ର ହିନ୍ଦୁ, ମୁସଲମାନ୍ ଓ ଶିଖ କର୍ମୀମାନେ । ସେମାନେ ନିମ୍ନଲିଖିତମତେ ବୀରତ୍ୱବ୍ୟଞ୍ଜକ କବିତା ପାଠ କରି ଲୋକମାନଙ୍କୁ ଉତ୍ସାହିତ କରାଉଥିଲେ ।

"ଆକ୍ରମଣକାରୀ ! ଖବରଦାର୍ !
ନେସ୍‌ନାଲ୍ କନ୍‌ଫରେନ୍‌ସ୍ ଅଛି ତିଆର୍ !

ଆମ ଜନ୍ମଭୂମି ଅଟେ ଏ ଦେଶ ।
ରକ୍ଷା କରିବୁ ପ୍ୟାର ସୁଯଶ ।
ଆମର ଏକତା ଜିନ୍ଦାବାଦ୍ ।
* ଶେର୍—ଏ—କାଶ୍ମୀର ଜିନ୍ଦାବାଦ୍ ।
* ଖାଲିକ୍—ଏ—କାଶ୍ମୀର ଜିନ୍ଦାବାଦ୍ !
* ବୁଲ୍‌ବୁଲ୍—ଏ—କାଶ୍ମୀର ଜିନ୍ଦାବାଦ୍"
(ହମ୍‌ଲବର ଖବରଦାର ।
ନେସ୍‌ନାଲ କନ୍‌ଫରେନସ୍ ହେ ତୈୟାର ।
ୟହ୍ ମୁଲ୍‌କ ହମାରା ହେ ।
ଉସ୍‌କା ହିଫାଜତ୍ ହମ୍ କରେଙ୍ଗେ ।
ହିନ୍ଦୁ ମୁସ୍‌ଲିମ ଶିଖ୍ ଇତ୍ତିହାଦ୍ ।
ଜିନ୍ଦାବାଦ୍ ଜିନ୍ଦାବାଦ୍ ।
ଶେର—ଏ—କାଶ୍ମୀର ଜିନ୍ଦାବାଦ୍ ।
ଖାଲିକ୍—ଏ—କାଶ୍ମୀର ଜିନ୍ଦାବାଦ ।
ବୁଲ୍‌ବୁଲ—ଏ କାଶ୍ମୀର ଜିନ୍ଦାବାଦ୍ । )

'ନେସ୍‌ନାଲ କନ୍‌ଫରେନ୍‌ସ୍'ର କର୍ମୀମାନେ ଧଳା ରଙ୍ଗଥିବା ଲାଲ ଟୋପି ପିନ୍ଧି ହାତରେ ବାଡ଼ଧରି ସମଗ୍ର ସହରରେ ବ୍ୟାପିଯାଇ ବିଭିନ୍ନ ପ୍ରକାରର ବ୍ୟବସ୍ଥା କରିବା ସଙ୍ଗେ ସଙ୍ଗେ ସହରର ସୁରକ୍ଷାରେ ନିଯୁକ୍ତ ଥିଲେ । ସେମାନେ ଦିନ ରାତି କଠିନ ପରିଶ୍ରମ କରି ଲୋକମାନଙ୍କୁ ଆଶ୍ୱାସନା ଦେଉଥିଲେ । ସେମାନେ ନିଜ ନିଜର ଅଭୂତ କର୍ତ୍ତବ୍ୟପରାୟଣତାର ଅଲୌକିକ ଉଦାହରଣବଳରେ ଶ୍ରୀନଗରର ବାତାବରଣକୁ ଶାନ୍ତିମୟ କରିବାରେ ଆପ୍ରାଣ ପ୍ରୟାସ କରୁଥିଲେ । ସେମାନେ ଆକ୍ରମଣକାରୀଙ୍କୁ ଶ୍ରୀନଗରରେ ଆଭ୍ୟନ୍ତରୀଣ ଗଣ୍ଡଗୋଳ ସୃଷ୍ଟିକରିବାର ସୁବିଧାଦେଇ ନ ଥିଲେ । କାରଣ 'ମୁସଲିମ୍ କନ୍‌ଫରେନସ୍'ର କର୍ମୀମାନଙ୍କ ପକ୍ଷରେ ଏହାଥିଲା ଏକ ସୁବର୍ଣ୍ଣ ସୁଯୋଗ । ଶ୍ରୀନଗରରେ ଅବାଞ୍ଛନୀୟ କାର୍ଯ୍ୟ ତଥା ସାମ୍ପ୍ରଦାୟିକ

---

* ଶେଖ୍ ଅବଦୁଲ୍ଲାଙ୍କ ଉପାଧି
* ବଖଶୀ ଗୁଲାମ ମହମ୍ମଦଙ୍କ ଉପାଧି ।
* ଅଫଜଲ୍ ବେଗ୍‌ଙ୍କ ଉପାଧି ।

ଘୃଣାଭାବ ସୃଷ୍ଟି କରିବାରେ ସ୍ୱା ଠାରୁ ବଳି ଆଉ ସୁନ୍ଦର ଅବସର ସେମାନଙ୍କୁ ମିଳନ୍ତା କାହିଁ ? କିନ୍ତୁ ବଖ୍‌ଶୀ ଗୁଲାମ୍ ମହମ୍ମଦ ନିଜର କର୍ତ୍ତବ୍ୟ ନିଷ୍ଠା ବଳରେ ସେତେବେଳେ ଅଦ୍ଭୁତ କାର୍ଯ୍ୟମାନ କରିବାରେ ସମର୍ଥ ହୋଇଥିଲେ । ତେଣୁ ଶ୍ରୀନଗରର ଜନସାଧାରଣଙ୍କଦ୍ୱାରା ସେତେବେଳେ ସେ 'ସର୍ଦ୍ଦାର ବଲ୍ଲଭଭାଇ ପଟେଲ'ଙ୍କ ପରି ସମ୍ମାନିତ ହେଉଥିଲେ । ତାଙ୍କର ଅଧ୍ୟବସାୟକଙ୍କ ସମ୍ବନ୍ଧରେ ଯେତେ ପ୍ରଶଂସା କରାଗଲେ ମଧ୍ୟ, ତାହା ତାଙ୍କର କାର୍ଯ୍ୟ ତୁଳନାରେ ଯଥେଷ୍ଟ ହେବ ନାହିଁ । ବଖ୍‌ଶୀଜୀଙ୍କ ଅଭାବରେ ଶେଖ୍ ଅବଦୁଲ୍ଲା କୌଣସି କାର୍ଯ୍ୟ କରିବାରେ ସମର୍ଥ ହୋଇପାରି ନ ଥା'ନ୍ତେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ତେଣୁ କାଶ୍ମୀରର ଜନସାଧାରଣ ତାଙ୍କୁ 'କାଶ୍ମୀରର ନିର୍ମାତା' (ଖାଲିକ-ଏ-କାଶ୍ମୀର) ଉପାଧିରେ ବିଭୂଷିତ କରିଥିଲେ । ସେହି ଘଡ଼ସନ୍ଧି ମୁହୂର୍ତ୍ତରେ କାଶ୍ମୀରର ଆଭ୍ୟନ୍ତରୀଣ ସୁରକ୍ଷା କେବଳ ତାଙ୍କର ପ୍ରଚେଷ୍ଟାରୁ ସମ୍ଭବ ହୋଇପାରିଥିଲା । ଯଦିଓ ସାଧାରଣ ଜନତାର ନେତାଥିଲେ ଶେଖ ଅବଦୁଲ୍ଲା, କିନ୍ତୁ ତାଙ୍କ ନେତୃତ୍ୱକୁ ସଫଳ କରୁଥିଲେ 'ଖାଲିକ-ଏ-କାଶ୍ମୀର' ବଖ୍‌ଶୀ ଗୁଲାମ ମହମ୍ମଦ । କାରଣ, ଲାଲ୍ ଟୋପି ପିନ୍ଧା ଏପରି କେତେକ କର୍ମୀ ବୁଲୁଥିଲେ, ଯେଉଁମାନଙ୍କ ପକେଟ୍‌ରେ ଥିଲା ଚନ୍ଦ୍ରତାରକା ଚିହ୍ନିତ ସବୁଜ ରଙ୍ଗର ଟୋପି ଏବଂ ଯେଉଁମାନେ ସମୟ ଓ ସୁଯୋଗ ଅନୁସାରେ ସେହି ଟୋପି ପିନ୍ଧି "ପାକିସ୍ତାନ୍ ଜିନ୍ଦାବାଦ୍" ଧ୍ୱନି କରିବା ପାଇଁ ପ୍ରସ୍ତୁତ ଥିଲେ । ତା'ସତ୍ତ୍ୱେ ଓ ବଖ୍‌ଶୀଜୀଙ୍କ ବଳିଷ୍ଠ ନେତୃତ୍ୱ ଫଳରେ ସେମାନେ ସେ ପ୍ରକାର ସାହସ କରିପାରୁ ନ ଥିଲେ ।

ଭାରତୀୟ ଜଓ୍ୱାନମାନେ ଆସି ପହଞ୍ଚିବା ମାତ୍ରେ ପାକିସ୍ତାନର ଦସ୍ୟୁଦଳ ପ୍ରାଣ ବିକଳରେ ପଛଘୁଞ୍ଚା ଦେବାକୁ ଲାଗିଲେ । ମିଷ୍ଟର୍ ଜିନ୍ନାଙ୍କର ଆଶାରେ ତୁଷାରପାତ ହେଲା । ସେ ଭାବିଥିଲେ କ'ଣ, ଆଉ ଫଳରେ ହେଲା କ'ଣ ? ସେ ଶ୍ରୀନଗରରେ 'ଈଦ୍' ପର୍ବ ପାଳନ କରିବାଲାଗି ଘୋଷଣା କରିଥିଲେ । ମିଆଁ ଜୀ 'ରୋଜା' ରଖିବାକୁ ମନସ୍ଥ କରିଥିଲେ; କିନ୍ତୁ ମୁଣ୍ଡଉପରେ 'ନମାଜ୍'ର ବୋଝ ପଡ଼ିଯିବ (ବୋଲି ଆଦୌ ଚିନ୍ତା କରି ନ ଥିଲେ ତଲେଥେ ରୋଜା ରଖନ୍ତେ, ଗଲେ ପଡ଼ିଗଲା ନମାଜ୍ ) । ସେ ସ୍ୱପ୍ନରେ ସୁଦ୍ଧା ଚିନ୍ତା କରିନଥିଲେ ଯେ, ଏତେ ଶୀଘ୍ର ଭାରତୀୟ ଜଓ୍ୱାନ୍‌ମାନେ କୁକୁର ବିରାଡ଼ିକୁ ଘଉଡ଼ାଇଲା ପରି ପାକିସ୍ତାନୀ ଅନୁପ୍ରବେଶକାରୀଙ୍କୁ ତଡ଼ିଦେବେ କିମ୍ବା ନିଜ ସୈନ୍ୟବାହିନୀରେ ଏଭଳି ଭୀରୁ କାପୁରୁଷ ସୈନ୍ୟ ଥିବେ ! ପାକିସ୍ତାନୀମାନେ ଦିନକୁ ଦିନ ପଛଘୁଞ୍ଚା ଦେଇ ପଳାଇ-

ବାରେ ଲଗିଲେ ଏବଂ ଭାରତୀୟ ଜଓ୍ୱାନ୍‌ମାନେ ଦେଶମାତୃକାର ସମ୍ମାନ ବଜାୟ ରଖିବା ଉଦ୍ଦେଶ୍ୟରେ ଆଗକୁ ଆଗକୁ ଅଗ୍ରସର ହୋଇ ପାକିସ୍ତାନୀଙ୍କ ହାତରେ ପଡ଼ିଥିବା ଗୁରୁତ୍ୱପୂର୍ଣ୍ଣ ସ୍ଥାନଗୁଡ଼ିକୁ ପୁନର୍ଦଖଲ କରି ସ୍ୱାଧୀନ ଭାରତର ପ୍ରଥମ ଯୁଦ୍ଧରେ ନୂତନ ମାନଦଣ୍ଡ ସ୍ଥାପନ କରିଦେଲେ । ତା'ପରେ ଯୁଦ୍ଧର ରୂପ ଅତି ଉଗ୍ର ହୋଇଉଠିଲା । ଲଦାଖ୍, ଲେହ, ଗିଲ୍‌ଗିଟ, ପୁଞ୍ଛ୍ ଆଦି ସ୍ଥାନଗୁଡ଼ିକରେ ଭାରତୀୟ ଜଓ୍ୱାନମାନେ ଆଶାତୀତଭାବରେ ସଫଳତା ହାସଲ କରିବାରେ ଲଗିଲେ । ଆଜିସୁଦ୍ଧା ଯେଉଁ ପାକିସ୍ତାନୀମାନେ ଅନୁପ୍ରବେଶକାରୀରୂପେ ପରିଚିତ ହେଉଥିଲେ, ସ୍ୱା ପରେ ପରେ ସେମାନେ ଖୋଲାଖୋଲିଭାବରେ 'ଜଓ୍ୱାନ୍' ମାନଙ୍କର ସମ୍ମୁଖୀନ ହେଲେ । ସେମାନେ ନିଜ ଦେଶ ପାକିସ୍ତାନର ଇଜ୍ଜତ ଓ କାଏଦେ ଆଜାମ୍ ମହମ୍ମଦ୍ ଅଲୀ ଜିନ୍ନାଙ୍କ ସମ୍ମାନ ବଜାୟ ରଖିବା ଉଦ୍ଦେଶ୍ୟରେ ପ୍ରାଣମୂର୍ଚ୍ଛା ଉଦ୍ୟମ କରିବାକୁ ଲଗିଲେ; କିନ୍ତୁ ଭାରତୀୟ ଜଓ୍ୱାନ୍‌ମାନଙ୍କ ସମ୍ମୁଖରେ ସେମାନଙ୍କ ଅସ୍ତିତ୍ୱ କେଉଁଠି ? ଭାରତୀୟ ଜଓ୍ୱାନ୍‌ମାନେ ଦଶ ହଜାର ଫୁଟ ଉଚ୍ଚ ଘାଟି ଉପରକୁ ଶକ୍ତିଶାଳୀ 'ଟ୍ୟାଙ୍କ୍'ଗୁଡ଼ିକୁ ଉଠାଇ ନେଇ କେବଳ ନିଜର ଶତ୍ରୁମାନଙ୍କୁ ଯେ ସ୍ତମ୍ଭୀଭୂତ କରିଦେଲେ ତା'ନୁହେଁ; ସମଗ୍ର ବିଶ୍ୱବାସୀଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରାଇଦେଲେ । ପାକିସ୍ତାନୀ ଅନୁପ୍ରବେଶକାରୀମାନେ ଜୀବନ ବିକଳରେ ପଳାଇବାକୁ ଲଗିଲେ ଏବଂ ଭାରତୀୟ ଜଓ୍ୱାନ୍‌ମାନେ ସେମାନଙ୍କୁ ଗୋଡ଼ାଇ ଗୋଡ଼ାଇନେଇ ପ୍ରତ୍ୟେକ କ୍ଷେତ୍ରରେ ବିଜୟଶ୍ରୀ ହାସଲ କଲେ; କିନ୍ତୁ ଆମ ଦେଶର କର୍ଣ୍ଣଧାରମାନଙ୍କ ବୁଦ୍ଧିମତ୍ତା ଓ ଦୂରଦର୍ଶିତା ସମ୍ବନ୍ଧରେ ଆଉ କହିବା କ'ଣ ? ଅଧିକ ଦଖଲ କରିନେବା ତ ଦୂରର କଥା, ବରଂ ନିଜ ଦଖଲରେ ଥିବା କେତେକ ଅଞ୍ଚଳକୁ ଛାଡ଼ିଦେଇ 'ଯୁଦ୍ଧବିରତି' (ceasefire) ଲାଗି ସମ୍ମତ ହୋଇଗଲେ । ଧନ୍ୟ ଏ ଦେଶର ରାଜନୀତି, ଧନ୍ୟ ଏ ଦେଶର ନେତାମାନଙ୍କ ଦୂରଦର୍ଶିତା ! ଭାରତୀୟ ଜଓ୍ୱାନମାନଙ୍କ ଆତ୍ମତ୍ୟାଗ ଓ ବଳିଦାନ ବ୍ୟର୍ଥ ହୋଇଗଲା ଏବଂ ତଦ୍‌ବ୍ୟତୀତ ସେମାନଙ୍କ ମନୋବଳଉପରେ ଯେଉଁ ତୀବ୍ର ଆଘାତ ଲଗିଲା, ତା'ର କଳ୍ପନା କରିବ କିଏ ?

● ● ●

# ଆଠ

ସନ ୧୯୪୭ ସାଲ ଅକ୍ଟୋବର ୨୭ ତାରିଖଠାରୁ ଆରମ୍ଭ କରି ସନ୍ ୧୯୪୯ ଜାନୁଆରୀ ୧ ତାରିଖ-ଅର୍ଥାତ୍ ଯୁଦ୍ଧବିରତି ହେବା ପର୍ଯ୍ୟନ୍ତ 'ଜାମ୍ମୁ ଓ କାଶ୍ମୀର'ରେ ବ୍ୟାପକଭାବରେ ଅନେକ ପରିବର୍ତ୍ତନ ହେବାକୁ ଲାଗିଲା । ସନ୍ ୧୯୪୭ ସାଲ ନଭେମ୍ବର ଦୁଇ ତାରିଖରେ ଶେଖ୍ ଅବ୍‌ଦୁଲ୍ଲା ରାଜ୍ୟର ଜରୁରି-କାଳୀନ ସରକାର (Emergency Administration)ର ମୁଖ୍ୟ ପରିଚାଳକରୂପେ ଶପଥ ଗ୍ରହଣ କରି ଶ୍ରୀନଗରର ଲାଲଚୌକ୍‌ଠାରେ ନିଜର ପ୍ରଧାନ କାର୍ଯ୍ୟାଳୟ ଖୋଲି ଶାସନ ପରିଚାଳନା ଆରମ୍ଭ କରିଦେଲେ । ଶେଖ୍ ସାହେବଙ୍କର ଏହି ପ୍ରଶାସନ କାର୍ଯ୍ୟରେ ପ୍ରଧାନ ସହଯୋଗୀ ହେଲେ—ବକ୍‌ଶୀ ଗୁଲାମ୍ ମହମ୍ମଦ, ଅଫ୍‌ଜଲ ବେଗ୍, ଗୁଲାମ୍ ମହମ୍ମଦ ସାଦିକ୍ (ପରବର୍ତ୍ତୀ ଜାମ୍ମୁ ଓ କାଶ୍ମୀରର ମୁଖ୍ୟମନ୍ତ୍ରୀ), ଶ୍ୟାମ ଲାଲ ସରାଫ, ଗିରିଧାରୀଲାଲ ଡୋଗ୍ରା, ପୀର ମହମ୍ମଦ ଓ ସର୍ଦ୍ଦାର ବୁଧ ସିଂହ । ଏହି ଏକ ବର୍ଷ ଦୁଇ ମାସ ଚାରିଦିନ ମଧ୍ୟରେ ପଣ୍ଡିତ ଜବାହରଲାଲ୍ ନେହରୁ ଅନେକଥର ଶ୍ରୀନଗର ଓ ଜାମ୍ମୁ ଗସ୍ତରେ ଆସି ଫେରିଗଲେ । ପଣ୍ଡିତ୍‌ଜୀ ପ୍ରଥମ ଥର ଆସି ଫେରିଯିବାପରେ ଯୁବରାଜ କରଣ ସିଂହ ନିଜ ପିତାଙ୍କ ଉପରେ ବିରକ୍ତ ହେଲେ । କାରଣ ସେ କାହିଁକି ପଣ୍ଡିତ୍‌ଜୀଙ୍କ ସହିତ ତାଙ୍କ ସାକ୍ଷାତ୍‌ର ବ୍ୟବସ୍ଥା କରାଇଦେଲେ ନାହିଁ ! ସେତେବେଳେ କରଣ ସିଂହଙ୍କ ଗୋଡ଼ରେ 'ପ୍ଲାଷ୍ଟର୍' ଲାଗିଥିବାରୁ ସେ ଆଦୌ ଚାଲବୁଲ କରିପାରୁ ନ ଥିଲେ । କେତୁଦିନ ପରେ ପୁଣି ପଣ୍ଡିତ୍‌ଜୀ ଶ୍ରୀନଗର ଆସିଲେ । ଆବଶ୍ୟକୀୟ ସରକାରୀ କଥାବାର୍ତ୍ତା ପରେ ମହାରାଜା ହରି ସିଂହ ପଣ୍ଡିତ୍‌ଜୀଙ୍କୁ ଅନୁରୋଧ ଜଣାଇ କହିଲେ :

"ଚାଲନ୍ତୁ, ମୋ' ପୁଅ ସହିତ ଟିକିଏ ଦେଖା କରିଯିବେ । ସେ ଆପଣଙ୍କର ଜଣେ ଅନନ୍ୟ ଭକ୍ତ । ଗତଥର ଆପଣ ଆସି ଚାଲିଯିବାପରେ, ମୁଁ ଆପଣଙ୍କ

ସହିତ ତା'ର ସାକ୍ଷାତ୍ ଲାଗି ବ୍ୟବସ୍ଥା କଲ ନାହିଁ ବୋଲି, ସେ ମୋ'ଉପରେ ଖୁବ୍ ଅସନ୍ତୁଷ୍ଟ ହେଲା ।"

ପଣ୍ଡିତ ନେହରୁ ଯୁବରାଜ କରଣ ସିଂହଙ୍କ ଶୋଇବା କୋଠରୀରେ ଯାଇ ଉପସ୍ଥିତ ହେଲେ । ତାଙ୍କୁ ଦେଖିବାମାତ୍ରେ ଯୁବରାଜଙ୍କର ଆନନ୍ଦ କହିଲେ ନ ସରେ । ସେ ପଣ୍ଡିତଜୀଙ୍କ ପ୍ରଣୀତ ପୁସ୍ତକ 'ଭାରତ ଆବିଷ୍କାର' (Discovery of India) ଓ 'ଆତ୍ମକଥା' (Autobiography) ଉପରେ ତାଙ୍କର ହସ୍ତାକ୍ଷର କରାଇ ନେଲେ । ଯୁବକ କରଣ ସିଂହଙ୍କର ବହୁଦିନର ଅଭିଳାଷ ପୂର୍ଣ୍ଣ ହେଲା । କେତେଦିନ ପରେ ସର୍ଦ୍ଦାର ପଟେଲ ଶ୍ରୀନଗର ଆସିଲେ । କରଣ ସିଂହ ତାଙ୍କ ସହିତ ମଧ୍ୟ ସାକ୍ଷାତ୍ କରିବାର ସୁଯୋଗ ଲାଭ କଲେ । ଯୁବରାଜ କରଣ ସିଂହଙ୍କ ସହିତ କଥାବାର୍ତ୍ତା ଓ ଆଲୋଚନା କରି ପଟେଲଜୀ ଖୁବ ପ୍ରଭାବିତ ହେଲେ । ଆଲୋଚନା କରିବା ସମୟରେ ସର୍ଦ୍ଦାରଜୀ ଯୁବରାଜଙ୍କ ରୋଗମୁକ୍ତ ହେବା ଉଦ୍ଦେଶ୍ୟରେ ତାଙ୍କୁ ଆମେରିକା ପଠାଇ ଦେବାଲାଗି ବାରମ୍ବାର ମହାରାଜା ହରି ସିଂହଙ୍କୁ କହିଲେ ଏବଂ ପରିଶେଷରେ ଟିକିଏ ଜୋର ଦେଇ କହିଲେ :

"କାହିଁକି ଯେ ଆପଣ ଏ ପିଲାଟିର ଜୀବନ ବରବାଦ କରୁଛନ୍ତି, ମୁଁ ବୁଝିପାରୁ ନାହିଁ । ଏଠାରେ ଏହାଙ୍କ ଗୋଡ଼ ଭଲ ହେବ ନାହିଁ । ଏହାଙ୍କୁ ଯେତେ ଶୀଘ୍ର ସମ୍ଭବ ଆମେରିକା ପଠାଇ ଦିଅନ୍ତୁ ।"

ସର୍ଦ୍ଦାର ପଟେଲ୍‌ଙ୍କ ଆଦେଶ ଅତିଶୀଘ୍ର କାର୍ଯ୍ୟକାରୀ ହେଲା । ମହାରାଜା ହରି ସିଂହ ପୁତ୍ରର ଆରୋଗ୍ୟ ନିମିତ୍ତ ତାଙ୍କୁ ଆମେରିକା ପଠାଇ ଦେବାକୁ ସିଦ୍ଧାନ୍ତ କଲେ; କିନ୍ତୁ ମା'ଙ୍କର ମମତା କାହିଁକି ବା ତା' ସ୍ୱୀକାର କରନ୍ତା ? ମହାରାଣୀ ତାରାଦେବୀ ପୁତ୍ରକୁ ଆମେରିକା ପଠାଇବାକୁ କୌଣସିମତେ ରାଜିହେଲେ ନାହିଁ । ଯାହା ହେଉ, ବହୁତ ବୁଝାସୁଝା କରିବା ପରେ ଅଶ୍ରୁପୂର୍ଣ୍ଣ ନେତ୍ରରେ ମହାରାଣୀ ପୁତ୍ରକୁ ବିଦାୟ ଦେଲେ । ସନ ୧୯୪୭ ସାଲ୍ ଡିସେମ୍ବର ୨୧ ତାରିଖରେ କରଣ ସିଂହ 'ନ୍ୟୁୟର୍କ'ରେ ପହଞ୍ଚିଲେ । ସେଠାକାର ଡାକ୍ତରଖାନାର ଡାକ୍ତରମାନେ ତାଙ୍କ କମର ପାଖରେ ଅସ୍ତ୍ରୋପଚାର କରି, ସେଠାରୁ ଖଣ୍ଡେ ହାଡ଼ କାଟି ବାହାର କରିଦେଇ; ତା' ସ୍ଥାନରେ ଏକ ଲୌହ ଖଣ୍ଡ ଲଗାଇ ସିଲାଇ କରିଦେଲେ । ଅସ୍ତ୍ରୋପଚାର ସଫଳତାର ସହିତ ସମ୍ପାଦିତ

ହେଲା । ଧୀରେ ଧୀରେ କରଣ ସିଂହଙ୍କ ଗୋଡ଼ ଭଲହେବାକୁ ଲାଗିଲା । ତା' ପରେ ସେ କେବଳ ଚଲାବୁଲା କାହିଁକି, ଡିଆଁ କୁଦାମାରି ଖେଳାଖେଳି କରିବାରେ ସମର୍ଥ ହେଲେ । ଅବଶ୍ୟ ତାଙ୍କର ପାଦଗତିରେ ସାମାନ୍ୟ ପରିବର୍ତ୍ତନ ପରିଲକ୍ଷିତ ହେଲା ।

ପ୍ରାୟ ଚଉଦମାସ କାଳ କରଣ ସିଂହଙ୍କୁ ଆମେରିକାରେ ରହିବାକୁ ପଡ଼ିଲା । ସ୍ୱାସ୍ଥ୍ୟଲାଭ କରିବା ପରେ;ଦୁନିଆର କ୍ରୀଡ଼ା କ୍ଷେତ୍ରରେ ଅଦ୍ଭୁତ ସଫଳତା ହାସଲ କରି ବିଶ୍ୱଦରବାରରେ ନୂତନ ମାନଦଣ୍ଡ ସ୍ଥାପନ କରିଥିବା ସେହି ଭୂମି ଓ ସେଠାକାର ଅଧିବାସୀମାନଙ୍କ ସମ୍ବନ୍ଧରେ, ସେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରିବା ଲାଗି ଚେଷ୍ଟା କଲେ । ତା' ଫଳରେ ତାଙ୍କର ବହିରଧାରାରେ କେବଳ ସାମାନ୍ୟ ପରିବର୍ତ୍ତନ ପରିଲକ୍ଷିତ ହେଲା ନାହିଁ, ବରଂ ତାଙ୍କ ଦୃଷ୍ଟି-କୋଣର ବ୍ୟାପକତା ଅନେକ ପରିମାଣରେ ବୃଦ୍ଧି ପାଇଲା । ତାଙ୍କ ଚିନ୍ତାଧାରାରେ ପରିବର୍ତ୍ତନ ହେବା ସଙ୍ଗେସଙ୍ଗେ, ଜ୍ଞାନଭଣ୍ଡାର ମଧ୍ୟ ଆଶାତୀତଭାବରେ ଉନ୍ନତ ହେବାକୁ ଲାଗିଲା । କରଣ ସିଂହଙ୍କ ଭାଷାରେ କହିବାକୁ ଗଲେ :

"ଆଜି ମୁଁ ଯେଉଁ ଉନ୍ନତିକରିଛି, ତାହା ସେହି ରୋଗ ସମୟର ଅବଦାନ; ଅନ୍ୟଥା ମୁଁ କେବେ ହେଲେ ଏତେ ଉନ୍ନତି କରିପାରି ନ ଥା'ନ୍ତି !"

ସନ୍ ୧୯୪୯ ସାଲ ଫେବୃଆରୀ ମାସରେ କରଣ ସିଂହ ଭାରତ ଫେରି-ଆସିଲେ । ସେ ଏଠାକୁ ଫେରିଆସିବା ପରେ, ଦେଶର କେତେକ ପରିବର୍ତ୍ତନ ଲକ୍ଷ୍ୟ କରି ତାଙ୍କ ମନରେ ଯେଉଁ ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା, ତାହା ସେ ନିଜ ଭାଷାରେ ବ୍ୟକ୍ତ କରିଛନ୍ତି :

"ଏଠାରେ ସବୁକିଛି ମୁଁ ଦେଖି ଆଶ୍ଚର୍ଯ୍ୟ ହୋଇଗଲି । ଦେଖିଲି, ଦେଶର ରୂପ ବଦଳି ଯାଇଛି ଏବଂ ଦେଶରେ ଏକ ନବଜାଗରଣ ଆସି ଯାଇଛି । ପ୍ରତ୍ୟେକଙ୍କର ମନରେ ନବୀନ ଉଦ୍ଦୀପନା ଜାଗ୍ରତ ହୋଇଛି ଏବଂ ପ୍ରତ୍ୟେକ ବ୍ୟକ୍ତିର ମନରେ ଦେଶପ୍ରତି ଓ ଦେଶର କର୍ଣ୍ଣଧାରମାନଙ୍କ ପ୍ରତି ଆସ୍ଥା ସ୍ଥାପିତ ହୋଇଛି । ଆହୁରି ମଧ୍ୟ ଦେଶର କର୍ଣ୍ଣଧାରମାନଙ୍କଠାରୁ ଅନେକ କିଛି ଆଶା ପୋଷଣ କରି ଲୋକେ ତାଙ୍କରଆଡ଼କୁ ଚାହିଁ ବସିଛନ୍ତି । ସେ ସବୁ ଦେଖି ମୋ' ମନରେ ଆନନ୍ଦ ଜାତ ହେବା ସଙ୍ଗେ ସଙ୍ଗେ ମୁଁ ମଧ୍ୟ ଗର୍ବ ଅନୁଭବ କଲି ।

କାରଣ, ପ୍ରତ୍ୟେକ ବ୍ୟକ୍ତି ଦେଶଗଠନ କାର୍ଯ୍ୟରେ ଉତ୍ସାହୀ ଓ ପ୍ରଯତ୍ନଶୀଳ ହୋଇ ଉଠିଛନ୍ତି !”

ଏହା ମଧ୍ୟରେ ‘ଜାମ୍ମୁ ଓ କାଶ୍ମୀର’ର ରାଜନୀତିରେ ମଧ୍ୟ ନୂତନଧାରା ପରିବର୍ତ୍ତିତ ହେବାକୁ ଲାଗିଲା । ଯଦ୍ୟପି ଶେଖ୍ ଅବ୍‌ଦୁଲ୍ଲା ଏକପ୍ରକାର ରାଜ୍ୟର ସର୍ବେ-ସର୍ବା ହୋଇ ବସିଥିଲେ; ତଥାପି ସେ ଯାହା ଭାବିଥିଲେ, ତାହା ହୋଇପାରି ନ ଥିଲା । ତାଙ୍କର ଅନୁମାନ ଭ୍ରମପୂର୍ଣ୍ଣ ବୋଲି ସେ ନିଜେ ଜାଣିପାରିଲେ । ସେ ଭାବିଥିଲେ--‘ଜାମ୍ମୁ ଓ କାଶ୍ମୀର’ ରାଜ୍ୟର ପ୍ରତ୍ୟେକ ସନ୍ତାନ ହରି ସିଂହଙ୍କ ପରି ରକ୍ଷଣଶୀଳ । ତାଙ୍କର ଏ’ ଧାରଣା ନିରାଧାରରୂପେ ପ୍ରମାଣିତ ହେବାରୁ, ସେ ରାଜ୍ୟର ଭବିଷ୍ୟତ ସମ୍ପର୍କରେ ଅନ୍ୟପ୍ରକାର ଆଶଙ୍କା କରିବାକୁ ଲାଗିଲେ । ସେ ଯେତେବେଳେ ଶାସନକଳର ମୁଖ୍ୟମନ୍ତ୍ରୀ, ଦଳର ମୁଖ୍ୟନେତା ତଥା ଜନ-ସାଧାରଣଙ୍କର ଆଦରଣୀୟ ନେତା ହୋଇ ସୁଦ୍ଧା; ନିଜେ ହରି ସିଂହଙ୍କ ପରି ଲୋକପୂଜ୍ୟ ହୋଇପାରିଲେ ନାହିଁ, ସେତେବେଳେ ଅନ୍ୟମାନଙ୍କ କଥା ପଚାରେ କିଏ ? ତାଙ୍କର ସମସ୍ତ ପ୍ରକାର ପ୍ରଚେଷ୍ଟା ଧୀରେ ଧୀରେ ବ୍ୟର୍ଥ ହେବାକୁ ଲାଗିଲା । ଏହି ଅଭୂତପୂର୍ବ ପରିବର୍ତ୍ତନ ସତ୍ତ୍ୱେ ରାଜ୍ୟର ପ୍ରଜାମାନେ ହରି ସିଂହଙ୍କୁ ନିଜର ମହାରାଜାରୂପେ ସ୍ୱୀକାର କରିବାରେ ଗର୍ବ ଅନୁଭବ କରୁଥିଲେ । ଅବଶ୍ୟ କାଶ୍ମୀରର ଜନସାଧାରଣଙ୍କ ସମ୍ବନ୍ଧରେ କେତେକ ପରିମାଣରେ ସନ୍ଦେହ ଥିଲା; କାରଣ ସେମାନଙ୍କୁ ଶେଖ୍ ଅବ୍‌ଦୁଲ୍ଲା ରାଜନୀତି ସହିତ ସାମ୍ପ୍ରଦାୟିକତାର ଔଷଧ ସମୟ ସମୟରେ ସୁଙ୍ଘାଇ ଦେଇ ପ୍ରଭାବିତ କରୁଥିଲେ । ତେଣୁ ସେମାନଙ୍କ ମଧ୍ୟରୁ କେତେକ ହରି ସିଂହଙ୍କୁ ପୂଜ୍ୟ ମହାରାଜାରୂପେ ସ୍ୱୀକାର କରିବାକୁ ପ୍ରସ୍ତୁତ ନ ଥିଲେ; କିନ୍ତୁ ସେମାନଙ୍କ ବ୍ୟତୀତ ଅନ୍ୟମାନେ ହରି ସିଂହଙ୍କୁ ପରମ ଆଦରଣୀୟ ତଥା ସମ୍ମାନାସ୍ପଦ ବ୍ୟକ୍ତିରୂପେ ଶ୍ରଦ୍ଧା ଓ ଭକ୍ତି ଦେଖାଇ ପୂର୍ବପରି ‘ମହାରାଜ’ ଉପାଧିରେ ଭୂଷିତ କରୁଥିଲେ ।

ଏହା ଲକ୍ଷ୍ୟ କରି ସମୟକ୍ରମେ ଅବ୍‌ଦୁଲ୍ଲାଙ୍କର ଚିନ୍ତା ବୃଦ୍ଧି ପାଇବାକୁ ଲାଗିଲା । ତାଙ୍କର ଧାରଣା ହେଲା—ମହାରାଜା ହରି ସିଂହଙ୍କର ପ୍ରଭାବ ସମ୍ପୂର୍ଣ୍ଣ-ରୂପେ ଲୋପ ନ ହେଲେ, କାଳାନ୍ତରରେ ପୁଣି ରାଜତନ୍ତ୍ରର ବିକାଶ ସମ୍ଭବ ହୋଇପାରେ ! ଅତଏବ, ସେ ଜଣେ ଚତୁର ରାଜନୀତିଜ୍ଞଙ୍କ ପରି ତାଙ୍କ ପ୍ରଗତି ପଥର କଣ୍ଟକକୁ ଚିରଦିନ ଲାଗି ନଷ୍ଟ କରିଦେବାପାଇଁ ଯୋଜନା ପ୍ରସ୍ତୁତ କରି-ବାକୁ ବ୍ୟଗ୍ର ହୋଇ ଉଠିଲେ । ତାଙ୍କର ଧାରଣା ହେଲା—“ମୂଳ ମାଇଲେ

ଯିବ ସଖ, ଦେବଙ୍କ ସଙ୍ଗେ କଥା କଲି ।" ସେ ସେହି ଯୋଜନା ଅନୁସାରେ, ପ୍ରଧାନମନ୍ତ୍ରୀ ଜବାହର୍‌ଲାଲ୍‌ନେହରୁଙ୍କ ଆଗରେ ମହାରାଜା ହରି ସିଂହଙ୍କ ବିରୋଧରେ ଅଭିଯୋଗ କରି କହିବାକୁ ଆରମ୍ଭ କଲେ :

"ହରି ସିଂହ ନିତାନ୍ତ ସାମ୍ପ୍ରଦାୟିକ ମନୋଭାବାପନ୍ନ ବ୍ୟକ୍ତି । ସେ ହିନ୍ଦୁ ମୁସଲ୍‌ମାନମାନଙ୍କ ମଧ୍ୟରେ ମତଭେଦ ସୃଷ୍ଟିକରି ରାଜ୍ୟର ଶୃଙ୍ଖଳାକୁ ବିପନ୍ନ କରିବାର ଚେଷ୍ଟା ଚଳାଇଛନ୍ତି········· ।"

କିଛିଦିନ ପର୍ଯ୍ୟନ୍ତ ଶେଖ୍ ଅବ୍‌ଦୁଲ୍ଲାଙ୍କର ଏ ପ୍ରଚାର ଭିତରେ ଭିତରେ ଚାଲିଲା । ତା’ ପରେ ସେ ବେଳକାଳ ଜାଣି, ପଣ୍ଡିତ ନେହରୁଙ୍କ ସମ୍ମୁଖରେ ପ୍ରକାଶ୍ୟରେ ଅଭିଯୋଗ କରି କହିଲେ ।

"ଯେ ପର୍ଯ୍ୟନ୍ତ ହରି ସିଂହ କାଶ୍ମୀରରେ ରହିଛନ୍ତି, ସେ ପର୍ଯ୍ୟନ୍ତ ମୋ’ ପକ୍ଷରେ ଶାସନ କାର୍ଯ୍ୟ ସୁରୂପରୂପେ ଚଳାଇବା ସମ୍ଭବ ନୁହେଁ । ତେଣୁ ସବୁଠାରୁ ଶ୍ରେଷ୍ଠ ଉପାୟ ହେଉଛି—ଆପଣ ହରି ସିଂହଙ୍କୁ ଜାମ୍ମୁ ଓ କାଶ୍ମୀର ଭିତରକୁ ପ୍ରବେଶ କରିବାର ନିଷେଧାଜ୍ଞା ଜାରି କରନ୍ତୁ ।"

ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହର୍‌ଲାଲ୍ ନେହରୁ ଥିଲେ ଶେଖ୍ ଅବ୍‌ଦୁଲ୍ଲାଙ୍କର ଅନ୍ତରଙ୍ଗ ବନ୍ଧୁ । ତାଙ୍କ ଇଚ୍ଛା ବିରୁଦ୍ଧରେ କୌଣସି କାର୍ଯ୍ୟ କରିବା ତାଙ୍କ ପକ୍ଷରେ କେବଳ ଅସଙ୍ଗତ ନୁହେଁ, ଅସମ୍ଭବ ମଧ୍ୟ ଥିଲା । ସେ ପ୍ରଥମରୁ ଜାଣିଥିଲେ—ଶେଖ୍ ଅବ୍‌ଦୁଲ୍ଲାଙ୍କ ରାଜଗାଡ଼ିର ଅର୍ଥ, ‘ଜାମ୍ମୁ ଓ କାଶ୍ମୀର’ର ରାଜଗାଡ଼ି ! ତେଣୁ ରାଜ୍ୟର ଭଲମନ୍ଦ ତଥା ଭବିଷ୍ୟତ ସମ୍ବନ୍ଧରେ ଟିକିଏ ହେଲେ ବିଚାର ନ କରି ଏକାଦିଧାରେ ସେ ଶେଖ ଅବ୍‌ଦୁଲ୍ଲାଙ୍କୁ ସମର୍ଥନ କରିବାରେ ଲଗିଲେ । ରାଜପ୍ରମୁଖ (ସେତେବେଳେ ଦେଶୀ ରାଜ୍ୟଗୁଡ଼ିକର ଶାସନ କ୍ଷେତ୍ରରେ ରାଜ୍ୟପାଳ ନିଯୁକ୍ତ ନ କରି ସେହି ରାଜାମାନଙ୍କୁ ‘ରାଜପ୍ରମୁଖ’ରୂପେ ଶାସନକଳର ଉତ୍ତରଦାୟିତ୍ୱ ଅର୍ପଣ କରାଯାଇଥିଲା) ପଦରୁ ମହାରାଜା ହରି ସିଂହଙ୍କୁ ତଡ଼ିବା ଲାଗି ସମସ୍ତ ବନ୍ଦୋବସ୍ତ ହୋଇଗଲା । ମହାରାଜା ହରି ସିଂହ ରାଜ୍ୟର ପରିସ୍ଥିତି ଓ ଅନ୍ୟାନ୍ୟ ସମସ୍ତ ଘଟଣା ସମ୍ବନ୍ଧରେ ପଣ୍ଡିତ୍‌ଜୀଙ୍କଠାରେ ଯେତେ ପ୍ରକାର ଚିତ୍ର ଅଙ୍କନ କଲେ ମଧ୍ୟ ସେ (ପ୍ରଧାନମନ୍ତ୍ରୀ ନେହରୁ) କୌଣସି କଥା ଶୁଣିଲେ ନାହିଁ । ସେ କେବଳ ବାରମ୍ବାର କହିବାକୁ ଲଗିଲେ :

"ଆପଣ ଟାଇଗରୁ (ଯୁବରାଜ କରଣ ସିଂହ) ଙ୍କୁ ରାଜପ୍ରମୁଖ କର ଦିଅନ୍ତୁ; ପରିସ୍ଥିତି ଦୃଷ୍ଟିରୁ ତାହା ହିଁ ଉଚିତ ପନ୍ଥା ହେବ । ଆପଣ ଆଉ 'ଜାମୁ ଓ କାଶ୍ମୀର' ଭିତରକୁ ଯାଇ ପାରିବେ ନାହିଁ ।"

ପଣ୍ଡିତ ନେହରୁ ମଧ୍ୟ ଏ ଘଟଣାର କେତେଦିନ ପୂର୍ବରୁ ସକାଳର ଜଳଖିଆ ସମୟରେ ଯୁବରାଜ କରଣ ସିଂହଙ୍କୁ ଡକାଇ ଆଣି; ପ୍ରଜାତନ୍ତ୍ରର ସିଦ୍ଧାନ୍ତ ଉପରେ ଦେଶକୁ ଶକ୍ତିଶାଳୀ ତଥା ଉନ୍ନତଶୀଳ କରି ଗଠନ କରିବା ଲାଗି ନାନା ପ୍ରକାର ଉପଦେଶ ଦେବା ସଙ୍ଗେସଙ୍ଗେ, ଏ ପ୍ରକାର ଗଠନମୂଳକ କାମରେ ଯୁବକମାନେ ଅତ୍ୟଧିକ ଆଗ୍ରହ ପ୍ରକାଶ କରିବା ଉଚିତ ବୋଲି ବୁଝାଇବାକୁ ଲାଗିଲେ ଏବଂ କଥା ପ୍ରସଙ୍ଗରେ 'ଜାମୁ ଓ କାଶ୍ମୀର'ର 'ରାଜପ୍ରମୁଖ' ପଦ ଗ୍ରହଣ କରିବା ଲାଗି ତାଙ୍କ ଉପରେ ପ୍ରଭାବ ପକାଇଲେ । ଏଭଳି ପରିସ୍ଥିତିରେ ଏକ ବିଷମ ସମସ୍ୟା ଆସି ଉପସ୍ଥିତ ହେଲା । ଯୁବରାଜ କରଣ ସିଂହ 'ରାଜପ୍ରମୁଖ' ପଦ ଗ୍ରହଣ କରିବାଲାଗି ସମ୍ମତି ପ୍ରଦାନ କରିବା ଉଚିତ ନୁହେଁ ବୋଲି ମହାରାଜା ହରି ସିଂହ ଚାହିଁ ଥିଲେ । କାରଣ ସେଥିରେ ତାଙ୍କପ୍ରତି ଅବମାନନା ତଥା ଅପମାନର ପରୋକ୍ଷ ଇଙ୍ଗିତ ରହିଥିଲା । ପିତାଙ୍କୁ ବାହାର କରି ପୁତ୍ରକୁ ଗାଦିନସୀନ କରିବାର ଅର୍ଥ ହେଉଛି, ଯେକୌଣସି ମୁହୂର୍ତ୍ତରେ ମଧ୍ୟ ପୁତ୍ରକୁ ଛଡ଼ାଇଦେବା ସହଜସାଧ୍ୟ ହେବ । କିନ୍ତୁ ନିଜେ ମହାରାଜା ହରି ସିଂହ ଏ ବିଷୟରେ ଯୁବରାଜଙ୍କୁ କହିବାକୁ ଚାହିଁ ନ ଥିଲେ । ସମସ୍ୟାର ସମାଧାନ ଉଦ୍ଦେଶ୍ୟରେ ମହାରାଜାଙ୍କ ଦରବାରୀମାନେ ଯୁବରାଜଙ୍କ ସହିତ ଆଲୋଚନା କଲେ । ସେମାନେ ଯୁକ୍ତି କରି କହିଲେ :

"ଯଦି ଶେଖ୍ ଅବ୍ଦୁଲ୍ଲାଙ୍କ କୂଟ-ଚକ୍ରାନ୍ତ ଫଳରେ ମହାରାଜା ହରି ସିଂହଙ୍କପରି ବ୍ୟକ୍ତି ପଦଚ୍ୟୁତ ହୋଇପାରିଲେ, ଯୁବରାଜଙ୍କୁ ବାହାର କରିବା ତାଙ୍କ ପକ୍ଷରେ ଅତ୍ୟନ୍ତ ସହଜ କାର୍ଯ୍ୟ ହୋଇଯିବ ।

ଏଣୁ ବାରମ୍ବାର ଅପମାନିତ ହୋଇ ବଂଶର ମର୍ଯ୍ୟାଦା ରେ କଳଙ୍କକାଳିମା ବୋଳିବା ଅପେକ୍ଷା ଚିରଦିନଲାଗି ଜାମୁ ଓ କାଶ୍ମୀର ସହିତ ସମ୍ପର୍କ ବିଚ୍ଛେଦ କରିଦେବା ଅଧିକ ଯୁକ୍ତିସଙ୍ଗତ କାର୍ଯ୍ୟ ହେବ ।"

ପିତାଙ୍କର ଏ ପ୍ରକାର ସିଦ୍ଧାନ୍ତ ଶୁଣି ଯୁବରାଜ କରଣ ସିଂହ ନିତାନ୍ତ ଅସମଞ୍ଜସରେ ପଡ଼ିଗଲେ ।

ପିତା ମହାରାଜା ହରି ସିଂହଙ୍କ ଉପଦେଷ୍ଟାମାନେ ଏପ୍ରକାର ମତ ଦେଉଥିବାବେଳେ, ଯୁବରାଜଙ୍କ ଉପଦେଷ୍ଟାମଣ୍ଡଳୀ ଭିନ୍ନପ୍ରକାର ମତପୋଷଣ କରୁଥିଲେ । ସେମାନଙ୍କ ଯୁକ୍ତି ଅନୁସାରେ, ଥରେ ରାଜ୍ୟ ସହିତ ସମ୍ପର୍କ ବିଚ୍ଛେଦ କରିଦେବା ଅର୍ଥ, ଚିରଦିନ ଲାଗି ଆଶାର ଦ୍ୱାର ବନ୍ଦ କରିଦେବା ପରି ହେବ । ଯଦି ପରିସ୍ଥିତିର ପ୍ରଭାବରେ ମହାରାଜାଙ୍କୁ ବାହାରିଯିବାକୁ ପଡ଼ିଲା; ହୁଏତ, ଭିନ୍ନଧରଣର ପରିସ୍ଥିତିର ପ୍ରଭାବରେ ରାଜବଂଶର ପ୍ରତିଷ୍ଠା ପୁଣି ଫେରି ଆସିପାରେ ଏବଂ ନିକଟ ଭବିଷ୍ୟତରେ ସେଭଳି ଅନୁକୂଳ ପରିସ୍ଥିତି ସୃଷ୍ଟି ହେବାର ସମ୍ଭାବନା ମଧ୍ୟ ରହିଛି । ଆଶା ଓ ଭରସା ଉପରେ ହିଁ ବିଶ୍ୱର ଗତି ନିୟନ୍ତ୍ରିତ ହେଉଛି; ତେଣୁ ବର୍ତ୍ତମାନଠାରୁ ନିରାଶ ନ ହୋଇ ଭବିଷ୍ୟତର ସଫଳତା ଲାଗି ପ୍ରଯତ୍ନଶୀଳ ହେବା ବୁଦ୍ଧିମତ୍ତାର କାର୍ଯ୍ୟ ହେବ । ସମୟର ଗତି କେତେବେଳେ କୁଆଡ଼େ, କିଏ କହିପାରିବ ? କାରଣ, ପରିସ୍ଥିତିର ଶକ୍ତି ଅଜେୟ ! ତେଣୁ ନିୟତିର ଅନୁକୂଳତା ଓ ପ୍ରତିକୂଳତା ସମ୍ବନ୍ଧରେ କୌଣସି ଅନୁମାନ କରାଯାଇ ପାରିବ ନାହିଁ । ଏଭଳି ଉପଦେଶ ମଧ୍ୟ ଯୁକ୍ତିସଙ୍ଗତ ବୋଲି ବୋଧ ହେଉଥିଲା । ପରିଶେଷରେ ଯୁବରାଜ କରଣ ସିଂହ ନିଜ ମାତା ମହାରାଣୀଙ୍କ ନିଷ୍ପତ୍ତି ଉପରେ ସମ୍ପୂର୍ଣ୍ଣ ନିର୍ଭର କଲେ । ମହାରାଣୀ ଯୁବରାଜଙ୍କୁ 'ରାଜପ୍ରମୁଖ' ପଦ ଗ୍ରହଣ କରିବା ଲାଗି ପୂର୍ଣ୍ଣ-ସମ୍ମତି ପ୍ରଦାନ କଲେ । ତାଙ୍କ କଥନାନୁସାରେ—ଯେତିକ ସୁବିଧା ଓ ସୁଯୋଗ ଉପଲବ୍‌ଧି ହେଉଛି ତା'ର ପୂର୍ଣ୍ଣ ଉପଯୋଗ କରିବା ଏବଂ ଭବିଷ୍ୟତର ଉନ୍ନତି ଲାଗି ଯଥାସମ୍ଭବ ପ୍ରଯତ୍ନଶୀଳ ହେବା ବିବେକଶୀଳତାର କାର୍ଯ୍ୟ । ପରିଣାମସ୍ୱରୂପ ସନ୍ ୧୯୪୯ ସାଲ ଜୁନ ମାସ ୧୫ ତାରିଖ ଦିନ ଯୁବରାଜଙ୍କର ଉପନୟନ ଉତ୍ସବ ଦିଲ୍ଲୀଠାରେ ସମ୍ପନ୍ନ ହେଲା ଏବଂ ଜୁନ ୨୦ ତାରିଖ ଦିନ ଅଷ୍ଟାଦଶ ବର୍ଷ ବୟସ୍କ କରଣ ସିଂହ ଜାମ୍ମୁ ଓ କାଶ୍ମୀରର ରାଜପ୍ରମୁଖରୂପେ ଶ୍ରୀନଗରରେ ଉପସ୍ଥିତ ହେଲେ । ସେହି ଗୁରୁତର ପଦଭାର ଗ୍ରହଣ କରିବା ପୂର୍ବରୁ ତାଙ୍କ ମନରେ ଯେଉଁ ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା, ତାହା ସେ ନିଜେ ବ୍ୟକ୍ତ କରି କହିଛନ୍ତି—

"ଠିକ୍ ଗୋଟିଏ ଛୁଲ ଡଙ୍ଗାରେ କାହାକୁ ବସାଇ ଦେଇ ମହି ଦରିଆକୁ ଠେଲି ଦେଲେ ତାହାର ଅବସ୍ଥା ଯାହା ହେବ, ସେତେବେଳେ ମୋର ଅବସ୍ଥା ମଧ୍ୟ ଅନୁରୂପ ହୋଇଥିଲା । ତଥାପି ମୁଁ ଆଦୌ

ଭୀତତ୍ରସ୍ତ ହୋଇ ନ ଥିଲି । ମା'ଙ୍କର ଆଶୀର୍ବାଦ ଓ ନିଜର ପୌରୁଷ ଉପରେ ମୋର ପୂର୍ଣ୍ଣ ଆସ୍ଥା ରହିଥିଲା ।"

ବିମାନ ଘାଟିରେ ଶେଖ୍ ଅବ୍‌ଦୁଲ୍ଲା ତାଙ୍କର ଅନ୍ୟାନ୍ୟ ସହଯୋଗୀମାନଙ୍କ ସହିତ, ନୂତନ ରାଜପ୍ରମୁଖ ଯୁବରାଜ କରଣ ସିଂହଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇବା ଉଦ୍ଦେଶ୍ୟରେ ଉପସ୍ଥିତ ଥିଲେ । ମହାରାଜା ହରି ସିଂହ କେବଳ ନିଜ ପୂର୍ବପୁରୁଷଙ୍କ ଅର୍ଜିତ ଜାମ୍ମୁ ଓ କାଶ୍ମୀର ରାଜ୍ୟ ଛାଡ଼ିଗଲେ ନାହିଁ ; ସେ ଚିରଦିନଲାଗି ହିଲ୍ଲୀ ଛାଡ଼ି ବମ୍ବେ ସହରକୁ ଚାଲିଗଲେ ଏବଂ ଅବଶିଷ୍ଟ ଜୀବନକାଳ ସେ ସେହିଠାରେ ରହିଥିଲେ । ସେ ପୁନର୍ବାର ପଣ୍ଡିତ ଜବାହରଲାଲ ନେହରୁ କିମ୍ବା ଅନ୍ୟ କୌଣସି ନେତାଙ୍କ ସହିତ ସାକ୍ଷାତ୍ କରି ନ ଥିଲେ । ସମସ୍ତ ଦିଗରୁ ନିଜକୁ ସଙ୍କୁଚିତ କରାଇନେଇ ଅବଶିଷ୍ଟ ଦିନତକ ସେ କେବଳ ଆତ୍ମସମୀକ୍ଷାରେ ବିତାଇ ଦେଲେ ।

ସୌଭାଗ୍ୟ କିମ୍ବା ଦୁର୍ଭାଗ୍ୟ କୁହାଯାଇପାରେ; 'ରାଜପ୍ରମୁଖ' ପଦଭାର ଗ୍ରହଣ କରିବାର ଅଳ୍ପଦିନ ପରେ, ଦିନେ ଯୁବରାଜ କରଣ ସିଂହ ନିଜ ମୋଟର କାର୍‌ରେ ଶିକାର କରିବାକୁ ଯିବା ସମୟରେ ଏକ ଦୁର୍ଘଟଣାର ସମ୍ମୁଖୀନ ହୋଇ ଆହତ ହେଲେ । ତାଙ୍କ ବାମ ଗୋଡ଼ରେ ଖୁବ୍ ବେଶୀ ଆଘାତ ଲାଗି ଆଣ୍ଠୁ ତଳକୁ ଖଣ୍ଡିଏ ହାଡ଼ ଭାଙ୍ଗିଯାଇ ଧନୁଷାକାର ହୋଇଗଲା । ପିତା ମହାରାଜା ହରି ସିଂହଙ୍କୁ ଯଥାଶୀଘ୍ର ସମ୍ପୃକ୍ତ ସମ୍ବାଦ ଦିଆଗଲା । କିନ୍ତୁ ସେ ଶ୍ରୀନଗର ଆସିଲେ ନାହିଁ । ଯୁବରାଜଙ୍କୁ ବମ୍ବେ ଡକାଇ ନେଇ ସେହିଠାରେ ଚିକିତ୍ସା କରାଇଲେ । କରଣ ସିଂହ ଛ'ମାସ ପର୍ଯ୍ୟନ୍ତ ଡାକ୍ତରଖାନାରେ ପଡ଼ିରହିବା ପରେ ତାଙ୍କର ଗୋଡ଼ ସମ୍ପୂର୍ଣ୍ଣ ଭଲ ହୋଇଗଲା । ତା'ପରେ ତାଙ୍କର ବିବାହଲାଗି ଆୟୋଜନ ଚାଲିଲା । ସନ୍ ୧୯୫୦ ସାଲ ମାର୍ଚ୍ଚମାସ ୫ ତାରିଖରେ, ସେହି ବମ୍ବେ ସହରରେ ନେପାଳର ଅନ୍ତିମ ରାଣା ମୋହନ ଶମ୍‌ଶେର୍ ଜଙ୍ଗ୍ ବାହାଦୁର୍‌ଙ୍କ ପୌତ୍ରୀ ଓ ଜେନେରାଲ୍ ଶାରଦା ଶମଶେର୍ ଜଙ୍ଗ ବାହାଦୁର୍‌ଙ୍କ ସୁପୁତ୍ରୀ ଯଶୋରାଜ୍ୟଲକ୍ଷ୍ମୀଙ୍କ ସହିତ ତାଙ୍କର ବିବାହର ମାଙ୍ଗଳିକକୃତ୍ୟ ସମ୍ପନ୍ନ ହେଲା । ସେତେବେଳକୁ ଯଶୋରାଜ୍ୟଲକ୍ଷ୍ମୀଙ୍କ ବୟସ ମାତ୍ର ତେର ବର୍ଷ ଓ ଯୁବରାଜଙ୍କ ବୟସ ମାତ୍ର ଊଣେଇଶ ବର୍ଷ ହୋଇଥିଲା ।

# ନଅ

ମହାରାଜା ହରି ସିଂହଙ୍କ ପଦଚ୍ୟୁତି ପରେ କାଶ୍ମୀର ସିଂହ ଶେଖ୍ ଅବ୍ଦୁଲ୍ଲା ନିଷ୍କଣ୍ଟକ ହୋଇଗଲେ । କାରଣ ସେ ନିଜର ବହୁ ଦିନର ପ୍ରୟାସରେ ସଫଳତା ହାସଲ କରିପାରିଥିଲେ । ମହାରାଜାଙ୍କୁ ତାଙ୍କ ରାଜସମ୍ପତ୍ତିରୁ ବଞ୍ଚିତ କରି ସେ କେବଳ ଶାନ୍ତି ଲାଭ କରି ନ ଥିଲେ; ବରଂ ସେହି ଅତୁଳ ବିଭବକୁ ନିଜ ଆୟତ୍ତକୁ ଆଣିବାରେ ସଫଳକାମ ହୋଇଥିଲେ । ସେ ନିଜକୁ ସର୍ବେସର୍ବା ମନେକରି 'ରାଜପ୍ରମୁଖ'ଙ୍କ ଅବସ୍ଥିତିକୁ ଆଦୌ ଭ୍ରୂକ୍ଷେପ କଲେ ନାହିଁ । ରାଜ-ପ୍ରମୁଖରୂପେ ଯୁବକ କରଣ ସିଂହଙ୍କୁ ସେ ସବୁବେଳେ ହେୟଜ୍ଞାନ କରି ତାଙ୍କ ଅସ୍ତିତ୍ୱକୁ ସ୍ୱୀକାର କଲେ ନାହିଁ । କାରଣ, ଉଦୟକାଳୀନ ସୂର୍ଯ୍ୟ ଓ ଅସ୍ତୋ-ନ୍ମୁଖ ସୂର୍ଯ୍ୟଙ୍କମଧ୍ୟରେ ଅନେକ ପାର୍ଥକ୍ୟ ଥାଏ ବୋଲି ତାଙ୍କର ସ୍ପଷ୍ଟଧାରଣା ହୋଇଥିଲା । ଏହାସତ୍ତ୍ୱେ, ପ୍ରଭୁତ୍ୱ ଗର୍ବରେ ନିଜର ବିବେକ ବୁଦ୍ଧି ହରାଇ ବସିବା, ଶକ୍ତିହୀନ ଶତ୍ରୁକୁ ନିତାନ୍ତ ନଗଣ୍ୟ ମନେ କରି ନିଶ୍ଚିନ୍ତ ହେବାଭଳି ସେ ଅନଭିଜ୍ଞ ରାଜନୀତିଜ୍ଞ ନ ଥିଲେ । ତାଙ୍କର ଆହୁରି ଅନେକ କିଛି କରିବାର ଥିଲା । ସେ ଯେଉଁ ଉପାୟରେ ଜାମୁ ଓ କାଶ୍ମୀରର ସର୍ବେସର୍ବା ହୋଇ ବସିଥିଲେ, ସେତିକରେ ସନ୍ତୁଷ୍ଟ ନ ଥିଲେ । ସେ ଆହୁରି ବ୍ୟାପକ-ଭାବରେ ନିଜର ଅସ୍ତିତ୍ୱ ଓ ପଦମର୍ଯ୍ୟାଦାକୁ ବଜାୟ ରଖିବାଲାଗି ଅତ୍ୟନ୍ତ ଆଗ୍ରହୀ ହୋଇପଡ଼ିଲେ । ତା' ସଙ୍ଗେ ସଙ୍ଗେ ମଧ୍ୟ ସେ ଆହୁରି ନୂତନ ଆକାର ପ୍ରକାର ତଥା ନୂତନ ପଦମର୍ଯ୍ୟାଦାରେ ସୁଶୋଭିତ ହେବାକୁ ଚାହୁଁଥିଲେ । ଏହି ମାତୃ-ଭୂମିର ପାଣିପବନରେ ବଢ଼ି, ଏହି ଧରଣୀର ଶାନ୍ତିପ୍ରଦ କୋଳରେ ଲାଳିତପାଳିତ ହୋଇ ମି. ଜିନ୍ନା ଯଦି ସେହି ପବିତ୍ର ଭୂମିକୁ ଦ୍ୱି'ଖଣ୍ଡକରି ପାକିସ୍ତାନର ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ନିଜେ କେବଳ 'ମି. ଜିନ୍ନା' ବଦଳରେ 'କ୍ୱାୟିଦେ ଆଜମ୍ ଜିନ୍ନା' ନାମରେ ପ୍ରତିଷ୍ଠିତ ହେବାରେ ସମର୍ଥ ହୋଇପାରିଲେ; ତା'ହେଲେ, ଶେଖ ଅବ୍ଦୁଲ୍ଲାଙ୍କ ପକ୍ଷରେ ଅସୁବିଧା ଥିଲା ବା କ'ଣ ? ସେ ମଧ୍ୟ ସେହିପରି ଏକ

ସ୍ୱତନ୍ତ୍ର ରାଜ୍ୟର ସଂସ୍ଥାପକ ହେବାକୁ କାହିଁକି ଅବା ଚେଷ୍ଟା ନ କରନ୍ତେ ? ସେଥିଲାଗି ସମସ୍ତ ପ୍ରକାର ଅନୁକୂଳ ବାୟୁମଣ୍ଡଳ ତାଙ୍କ ଆଖି ଆଗରେ ନାଚିଗଲା ।

ଶେଖ୍ ସାହେବ ନିଜ ଯୋଜନାର ସମସ୍ତ ରୂପରେଖ ପ୍ରସ୍ତୁତ କରିସାରି ଧୀରେ ଧୀରେ ତାକୁ କାର୍ଯ୍ୟକାରୀ କରିବାରେ ଆଗ୍ରହୀ ହୋଇଉଠିଲେ । ସେ ପ୍ରଥମେ ଜାମ୍ମୁ ଓ କାଶ୍ମୀର ରାଜ୍ୟର ଗୋଟିଏ ସ୍ୱତନ୍ତ୍ର ବିଧାନସଭାଲାଗି କେନ୍ଦ୍ର ସରକାରଙ୍କ ଉପରେ ପ୍ରଭାବ ପକାଇଲେ । ସେଥିରେ ତାଙ୍କର ଛଳନା ଥିଲା— ଜନତା ଜନାର୍ଦ୍ଦନର ସୁଖ ସୁବିଧା ତଥା ଦେଶହିତକର କାର୍ଯ୍ୟରେ ଆତ୍ମନିୟୋଗ । ଏଥିରେ ଅବା ଆପତ୍ତି କରନ୍ତା କିଏ କାହିଁକି ? କୌଣସି ଦୂରଦର୍ଶୀ ଅନାଗତ ବିଧାତା ଏହାର ଭବିଷ୍ୟତ ପରିଣାମ ସମ୍ବନ୍ଧରେ ଚିନ୍ତା କରୁଥିଲେ ମଧ୍ୟ ତାଙ୍କ ଉପଦେଶ ଶୁଣୁଛି ବା କିଏ ? ନିର୍ବାଚନ ଆରମ୍ଭ ହେଲା ଏବଂ ଯଥାବିଧିରେ ଭୋଟଦାନ କାର୍ଯ୍ୟ ମଧ୍ୟ ସମ୍ପାଦିତ ହେଲା । ସବୁକିଛି ହେଲା ସତ; କିନ୍ତୁ ପ୍ରତ୍ୟେକ କାର୍ଯ୍ୟ ପଛରେ ଥିଲା ଶେଖ୍ ସାହେବଙ୍କ ଚକ୍ରାନ୍ତ । ସେ ପ୍ରଥମରୁ ହିଁ ନିଜର ଲୋକମାନଙ୍କୁ ପ୍ରସ୍ତୁତ କରି ରଖିଥିଲେ । ତାଙ୍କର ଲୋକମାନେ ସବୁ କ୍ଷେତ୍ରରେ ବ୍ୟାପି ରହିଥିଲେ । ତେଣୁ ଜାମ୍ମୁ ଓ କାଶ୍ମୀରର ବିଧାନସଭାର ସତସ୍ତରି ଜଣଯାକ ସଭ୍ୟ ( ବର୍ତ୍ତମାନ ଜାମ୍ମୁ ଓ କାଶ୍ମୀରର ବିଧାନସଭାର ସଦସ୍ୟଙ୍କ ସଂଖ୍ୟା ୭୫ ଓ ବିଧାନ ପରିଷଦ୍‌ର ସଭ୍ୟ ସଂଖ୍ୟା—୩୬ ) ଥିଲେ ତାଙ୍କର ସମର୍ଥକ । ନିର୍ବାଚନପରେ ଶେଖ୍ ଅବଦୁଲ୍ଲା ହେଲେ ପ୍ରଧାନମନ୍ତ୍ରୀ (ସେତେବେଳେ ଜାମ୍ମୁ ଓ କାଶ୍ମୀରକୁ ସ୍ୱତନ୍ତ୍ର ଅଧିକାର ଦିଆଯାଇଥିବାରୁ କାଶ୍ମୀରର ମୁଖ୍ୟ-ଶାସନକର୍ତ୍ତାଙ୍କୁ ମୁଖ୍ୟମନ୍ତ୍ରୀ ପରିବର୍ତ୍ତେ ପ୍ରଧାନମନ୍ତ୍ରୀରୂପେ ଅଭିହିତ କରାଯାଉଥିଲା) । ବକ୍‌ଶି ଗୁଲାମ୍ ମହମ୍ମଦ୍ ଉପପ୍ରଧାନମନ୍ତ୍ରୀ, ମିର୍ଜା ଅଫଜଲ୍ ବେଗ୍, ଗିରିଧାରୀ ଡୋଗ୍ରା ଓ ଶାମଲାଲ୍ ସରାଫ୍ ସହଯୋଗୀ ମନ୍ତ୍ରୀରୂପେ କାର୍ଯ୍ୟଭାର ଗ୍ରହଣ କରିଥିଲେ ଏବଂ ସାଦିକ୍ (ଗୁଲାମ୍ ମହମ୍ମଦ୍ ସାଦିକ୍) ବିଧାନ ସଭାର ବାଚସ୍ପତିରୂପେ କାର୍ଯ୍ୟ ଚଳାଇଲେ । ସନ୍ ୧୯୫୧ ସାଲ ଅକ୍ଟୋବର ମାସରେ ବିଧାନସଭାର ପ୍ରଥମ ବୈଠକ ଆରମ୍ଭ ହେଲା । ଶେଖ୍ ଅବଦୁଲ୍ଲାଙ୍କର ପ୍ରଥମ ପଦକ୍ଷେପ ହେଲା—ରାଷ୍ଟ୍ରର ଜାତୀୟ ପତାକା ସହିତ ଜାମ୍ମୁ ଓ କାଶ୍ମୀରଲାଗି ଏକ ସ୍ୱତନ୍ତ୍ର ପତାକା ପ୍ରସ୍ତୁତ କରିବା; ଦ୍ୱିତୀୟ ପଦକ୍ଷେପ ହେଲା—ରାଜବଂଶର ଉଚ୍ଛେଦ ଅର୍ଥାତ୍ ରାଜପ୍ରମୁଖ ପଦର ପରିବର୍ତ୍ତନ କରି 'ସଦର-ଏ-ରିୟାସତ୍

ନାମକ ନୂତନ ପଦ ସୃଷ୍ଟିକରିବା । ରାଜବଂଶର ସାମାନ୍ୟ ଅସ୍ତିତ୍ୱ ବା ଇହକାଳୀ କାହିଁକି ? ମୂଳୋତ୍ପାଟନ କରିଦେଲେ ତ ଆଉ ଭବିଷ୍ୟତରେ ଅଙ୍କୁରିତ ହେବାର ସମ୍ଭାବନା ନ ଥିବ !

'ରାଜପ୍ରମୁଖ' ପଦବୀ ଉଠାଇ ଦିଆଗଲା ସତ; କିନ୍ତୁ 'ସଦର-ଏ-ରିୟାସତ୍' ପଦରେ ମଧ୍ୟ କରଣ ସିଂହ ସର୍ବସମ୍ମତିକ୍ରମେ ନିର୍ବାଚିତ ହେଲେ । ଶେଖ୍ ଅବଦୁଲ୍ଲା ଥିଲେ ପକ୍କା ଖେଳାଳୀ, 'ଚିତ୍' ପଡ଼ୁ କିମ୍ବା 'ପଟ୍' ପଡ଼ୁ ଉଭୟପକ୍ଷରେ ଥିଲା ତାଙ୍କର ଲାଭ । ସେ ଯେଉଁ ଅଭିପ୍ରାୟରେ 'ସଦର-ଏ-ରିୟାସତ୍' ପଦ ସୃଷ୍ଟି କରିଥିଲେ; ସେଥିରେ ସେ ସଫଳତା ହାସଲ କଲେ । ଏହା ଫଳରେ କେବଳ ରାଜପରିବାରରେ ନୁହେଁ, ସମୁଦାୟ ଡୋଗ୍ରା ଜାତି ମଧ୍ୟରେ ଅସନ୍ତୋଷ ବ୍ୟାପିଗଲା । ସମସ୍ତେ ଏକ ସ୍ୱରରେ, କରଣ ସିଂହଙ୍କୁ ଉକ୍ତ ପଦ ଗ୍ରହଣ ନ କରିବାଲାଗି ପ୍ରତିବାଦ ଜଣାଇଲେ । କାରଣ, ଏହା ସ୍ୱୀକାର କରିବା ଅର୍ଥ, ରାଜବଂଶର ସତ୍ତ୍ୱ ଉଚ୍ଛେଦରେ ନିଜପକ୍ଷରୁ ଉଦ୍ୟମ କରିବା । ତେଣୁ କରଣ ସିଂହଙ୍କ ପକ୍ଷରେ ପୁଣି ଏକ ସମସ୍ୟା ଆସି ଉପସ୍ଥିତ ହେଲା; କିନ୍ତୁ ଏତେ ଅଳ୍ପ ବୟସରେ ମଧ୍ୟ ସେ ଯେଉଁ ବୁଦ୍ଧିମତ୍ତା ଓ ବିବେକଶୀଳତାର ସହିତ କାର୍ଯ୍ୟ କଲେ; ତାହା ଅତ୍ୟନ୍ତ ପ୍ରଶଂସନୀୟ ତଥା ସୁଚିନ୍ତିତ କାର୍ଯ୍ୟପନ୍ଥାରୂପେ ସର୍ବକ୍ଷେତ୍ରରେ ସମର୍ଥିତ ହେଲା । ପରିବାର ମଧ୍ୟରେ ତଥା ଜାମୁର ସର୍ବସାଧାରଣ କ୍ଷେତ୍ରରେ ବିରୋଧ କରାଯାଉଥିଲେ ମଧ୍ୟ କରଣ ସିଂହ 'ସଦର-ଏ-ରିୟାସତ୍' ପଦ ଗ୍ରହଣ କରିବାକୁ ସିଦ୍ଧାନ୍ତ କଲେ । ଅବଶ୍ୟ ତାଙ୍କର ଏ ସିଦ୍ଧାନ୍ତ ମୂଳରେ ଥିଲା ମହାରାଣୀ ତାରାଦେବୀଙ୍କ ସ୍ୱୀକୃତି । ଯୁବରାଜ କରଣ ସିଂହ ଥିଲେ ସ୍ୱନାମଧନ୍ୟ ପିତାଙ୍କର ଯଶସ୍ୱୀ ସନ୍ତାନ ! ତାଙ୍କର ଅସାଧାରଣ ବିଚକ୍ଷଣ ବୁଦ୍ଧି ଓ ଶୌର୍ଯ୍ୟବୀର୍ଯ୍ୟ ପ୍ରତିଭାବଳରେ ସେ ଅଳ୍ପଦିନମଧ୍ୟରେ ଅନେକ ପ୍ରଶଂସନୀୟ କାର୍ଯ୍ୟ କରି ସର୍ବକ୍ଷେତ୍ରରେ ଅତ୍ୟନ୍ତ ଶ୍ରଦ୍ଧାଶୀଳ ହୋଇଉଠିଲେ ।

ସନ୍ ୧୯୫୨ ସାଲ ନଭେମ୍ବର ୯ ତାରିଖରେ କରଣ ସିଂହ ଜାମୁ ଓ କାଶ୍ମୀର ରାଜ୍ୟର 'ସଦର୍-ଏ-ରିୟାସତ୍' ରୂପେ ଶପଥ ଗ୍ରହଣ କଲେ । ଏହାପରେ ତାଙ୍କର ପ୍ରଥମ ଜାମୁ ଆଗମନବେଳେ ବିମାନଘାଟିଠାରୁ ରାଜମହଲ ପର୍ଯ୍ୟନ୍ତ ଜାମୁ ଅଧିବାସୀଙ୍କ ପକ୍ଷରୁ ତୀବ୍ର ଅସନ୍ତୋଷ ପ୍ରକଟ କରାଯାଇ 'କଳାପତାକା' ପ୍ରଦର୍ଶିତ ହେଲା । ତାଙ୍କ କାର୍ଯ୍ୟକାଳ ମଧ୍ୟରେ ଏହା ଥିଲା ପ୍ରଥମ ଅପମାନ; କିନ୍ତୁ ଜଣେ ବିଚକ୍ଷଣ ରାଜନୀତିଜ୍ଞଙ୍କ ପରି, ସେ ବିକ୍ଷୋଭ ପ୍ରଦର୍ଶନରେ ଆଦୌ

ବଚଳଚ ହେଲେ ନାହିଁ କମ୍ବା ତାଙ୍କ ମନରେ କୌଣସି ପ୍ରତିକ୍ରିୟା ଜାତ ହେଲ ନାହିଁ । ସ୍ୱର୍ଗୀୟ ଲାଲବାହାଦୁର ଶାସ୍ତ୍ରୀ ପ୍ରଧାନମନ୍ତ୍ରୀ ହେବାର ପ୍ରଥମାବସ୍ଥାରେ ଯେପରି ନିଜର ପରିଧାନ ସମ୍ବନ୍ଧରେ ନାନା କ୍ଷେତ୍ରରୁ ବ୍ୟଙ୍ଗ ବାଣ ଶୁଣି, ଶୁଣି ନ ଶୁଣିଲା ପରି ରହିଯାଇଥିଲେ; ଠିକ୍ ସେହିପରି ଯୁବରାଜ କରଣ ସିଂହ ମଧ୍ୟ ନିଜ ବିରୁଦ୍ଧରେ ପ୍ରଦର୍ଶିତ ବିକ୍ଷୋଭ ପ୍ରତି ଆଦୌ ଭ୍ରୂକ୍ଷେପ କଲେ ନାହିଁ । କେବଳ ସେତିକ ନୁହେଁ, କରଣ ସିଂହଙ୍କ ନିକଟକୁ ଶହ ଶହ ପ୍ରତିବାଦ ପତ୍ର ଆସିଲା । ପ୍ରତ୍ୟେକ ପତ୍ରରେ ତାଙ୍କୁ 'ସଦର୍-ଏ-ରିୟାସତ୍' ପଦରୁ ଇସ୍ତଫା ଦେଇ ଦେବା ଲାଗି ପ୍ରସ୍ତାବ ଥିଲା । ଏ ସବୁ ସତ୍ତ୍ୱେ କରଣ ସିଂହ ମୀରବରେ ସବୁ ସହିଗଲେ । କନ୍ତୁ ନିଜ ଷଡ଼ଯନ୍ତ୍ରରେ ସଫଳତା ହାସଲ କରିଥିବାରୁ ଶେଖ୍ ଅବଦୁଲ୍ଲା ମନେ ମନେ ଖୁବ୍ ଆନନ୍ଦିତ ହେଲେ । କାରଣ, ରାଜବଂଶର ଅଧିକାର ଉଚ୍ଛେଦ କରି, ରାଜପରିବାର ମଧ୍ୟରେ ମନୋମାଳିନ୍ୟ ସୃଷ୍ଟି କରିବାରେ ତାଙ୍କ ଷଡ଼ଯନ୍ତ୍ର ବେଶ୍ କାମ କରିଥିଲା । ଏପରି ଏକ ଯୋଜନାକୁ କାର୍ଯ୍ୟକାରୀ କରିବା ଥିଲା ତାଙ୍କ ପକ୍ଷରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଓ ଆବଶ୍ୟକୀୟ କାର୍ଯ୍ୟ । କାରଣ, ନିଜ ନିଜ ମଧ୍ୟରେ ମନୋମାଳିନ୍ୟ ସୃଷ୍ଟି ନ ହେଲେ, ସମ୍ମିଳିତ ଶକ୍ତି କ୍ଷୀଣ ହେବା ସମ୍ଭବ ନୁହେଁ । ତେଣୁ ଶତ୍ରୁପକ୍ଷର ବଳହୀନ ଅବସ୍ଥାରେ ନିଜପକ୍ଷକୁ ସୁଦୃଢ଼ କରିବା ଅଭିପ୍ରାୟରେ ଶେଖ୍ ଅବଦୁଲ୍ଲା 'ଭୂମିସୁଧାର' ନାମକ ଏକ ଯୋଜନା କାର୍ଯ୍ୟକାରୀ କରିବାକୁ ଲାଗିଲେ ।

ମହାରାଜା ହରି ସିଂହ ବହୁ କଷ୍ଟରେ ଜାମ୍ମୁ ତଥା ଅନ୍ୟାନ୍ୟ ସ୍ଥାନରୁ ଶିଖ୍ ଓ ରାଜପୁତମାନଙ୍କୁ ଆଣାଇ, କିଛି ଅଧିକ ଜମିବାଡ଼ି ଦେଇ ସୀମାନ୍ତ ଅଞ୍ଚଳରେ ରଖାଇଥିଲେ । କାରଣ, ଆବଶ୍ୟକତାନୁସାରେ ସେମାନେ ସୀମାନ୍ତ ରକ୍ଷାର ଦାୟିତ୍ୱ ଗ୍ରହଣ କରୁଥିଲେ । ଶେଖ୍ ଅବ୍ଦୁଲ୍ଲା ଭୂମିହୀନ ପ୍ରଜାମାନଙ୍କ ମଧ୍ୟରେ ଜମିବଣ୍ଟନ କରିବା ଛଳନାରେ ସେହି ରାଜପୁତ୍ ଓ ଶିଖମାନଙ୍କୁ ସେମାନଙ୍କ 'ଜାଗିର'ରୁ ଉଚ୍ଛେଦ କଲେ । ଫଳସ୍ୱରୂପ ସେମାନେ ନିଜ ନିଜର ପୂର୍ବପୁରୁଷଙ୍କ ବାସସ୍ଥାନକୁ ଫେରି ଯିବାଲାଗି ବାଧ୍ୟ ହେଲେ । ସେମାନେ କେବଳ ଜାଗିର ପ୍ରଲୋଭନରେ ସଙ୍କଟପୂର୍ଣ୍ଣ ସୀମାନ୍ତ କ୍ଷେତ୍ରରେ ବସବାସ କରିଥିଲେ । ଏହିପରି କୌଶଳରେ ଶେଖ୍ ଅବ୍ଦୁଲ୍ଲା ଶିଖ ଓ ରାଜପୁତ୍‌ମାନଙ୍କୁ ତଡ଼ିଦେଇ ଜମିଗୁଡ଼ିକ ନିଜ ସମର୍ଥକଙ୍କ ମଧ୍ୟରେ ମନଇଚ୍ଛା ବଣ୍ଟନ କରିଦେଲେ ।

ଖୁବ୍ ସମ୍ଭବତଃ, ଯାହା କେତେକ ଦୃଷ୍ଟିରୁ ଅସଙ୍ଗତ ବୋଲି ମନେ କରାଯାଇ ନ ପାରେ, ଶେଖ୍ ଅବ୍ଦୁଲ୍ଲା ସେହିସବୁ କାର୍ଯ୍ୟ ଆରମ୍ଭ କରିଦେଇ

ନିଜକୁ ସର୍ବଶକ୍ତିମାନ୍ ବୋଲି ମନେକରି କୌଶଳପୂର୍ଣ୍ଣ ଦୌରାତ୍ମ୍ୟ ଆରମ୍ଭ କରିଦେଲେ । ସେ କଳେ ବଳେ କୌଶଳେ, ଭିନ୍ନ ଭିନ୍ନ ଯୋଜନା ପ୍ରୟୋଗକରି ଶତ୍ରୁର ମୂଳୋତ୍ପାଟନ କରିବାରେ ଲାଗି ପଡ଼ିଲେ । ସେ ନାନାପ୍ରକାର ଅନୁଚିତ କାର୍ଯ୍ୟ ଓ ବ୍ୟାପାର ଆଡ଼ରେ ପ୍ରତ୍ୟକ୍ଷ ଓ ପରୋକ୍ଷଭାବରେ ସାହାଯ୍ୟକରି ତାଙ୍କ ସମର୍ଥକମାନଙ୍କ ଶକ୍ତିବୃଦ୍ଧି କରିବା ସଙ୍ଗେ ସଙ୍ଗେ ସମାଲୋଚକମାନଙ୍କ ମୁହଁ ବନ୍ଦ କରାଇ ପାରିଥିଲେ । ଆହୁରି ମଧ୍ୟ ନାନାପ୍ରକାର ଭୟପ୍ରଦର୍ଶନଦ୍ୱାରା ସଂଖ୍ୟାଲଘୁ ସମ୍ପ୍ରଦାୟକୁ ସେ ନିସ୍ତେଜ ତଥା ଅସହାୟ କରିଦେଲେ ଏବଂ ଧର୍ମ ନାମରେ ମୁସଲ୍‌ମାନ ଜନସାଧାରଣଙ୍କ ମନରେ ଅନ୍ୟମାନଙ୍କପ୍ରତି ଘୃଣା ଉତ୍ପନ୍ନ କରାଇ ନିଜପ୍ରତି ଅଗାଧ ଶ୍ରଦ୍ଧା ଜାତକରାଇଲେ । ଚାରିଆଡ଼େ ଶେଖ୍ ଅବ୍‌ଦୁଲ୍ଲାଙ୍କର ସୁନାମର ଡିଣ୍ଡିମ ବାଜି ଉଠିଲା ଏବଂ ସେହି ଶବ୍ଦର ଝଙ୍କାରରେ ସେ ନିଜକୁ ହଜାଇଦେଲେ । ଆଜିସୁଦ୍ଧା ଯେଉଁ ବୁଦ୍ଧିବିବେକ ବଳରେ, ସେ ନାନାପ୍ରକାର କୁକର୍ମ କରି ମଧ୍ୟ, ଚତୁରତାର ସହିତ ଲୋକପ୍ରିୟ ହୋଇପାରିଥିଲେ; ତାହା ସେ ଆତ୍ମବିଭୋରତା ମଧ୍ୟରେ ଚିରଦିନ ଲାଗି ହରାଇ ବସିଲେ । ଏହା ମଧ୍ୟରେ ଜାମ୍ମୁ ଓ କାଶ୍ମୀର ରାଜ୍ୟ ସମ୍ବନ୍ଧରେ ଏକ ସ୍ୱତନ୍ତ୍ର ଚିନ୍ତାଧାରା ତାଙ୍କ ମୁଣ୍ଡରେ ଖେଳିବାକୁ ଲାଗିଲା । ସେ ବେଳେ ବେଳେ ମଧ୍ୟ ଖୋଲା ଖୋଲାଭାବରେ ନିଜର ମନୋଭାବ ପ୍ରକାଶ କରିବାକୁ ଲାଗିଲେ । ସେତିକବେଳେ ପ୍ରକୃତରେ ତାଙ୍କ ବୁଭୁକ୍ଷା ଆତ୍ମପ୍ରକାଶ କଲା । ତାହା ସେ ନ କରନ୍ତେ ବା କାହିଁକି ? ଆଉ ଭୟ ଥିଲା କାହାକୁ ?

ଭାରତ ସହିତ ଜାମ୍ମୁ ଓ କାଶ୍ମୀରର ମିଶ୍ରଣ ସମ୍ପର୍କୀୟ ଚୁକ୍ତିପରେ ଭାରତ ସରକାର ମହାରାଜାଙ୍କୁ ସୈନ୍ୟ ସାହାଯ୍ୟ ଦେଇଥିଲେ ! ଏହି ସାହାଯ୍ୟ ଦେବା ସମୟରେ ଭାରତ ସରକାର ତିନୋଟି ସର୍ତ୍ତ ରଖିଥିଲେ । ସେହି ତିନୋଟି ସର୍ତ୍ତ ହେଉଛି—ସୁରକ୍ଷା, ବୈଦେଶିକ ବ୍ୟାପାର ଓ ଯାତାୟାତ; ଏହି ତିନୋଟି ବିଷୟରେ ଭାରତ ସରକାରଙ୍କର ପୂର୍ଣ୍ଣ ଅଧିକାର ରହିବ । ଏହି ସର୍ତ୍ତନାମା ଅନୁସାରେ ଭାରତ ସରକାରଙ୍କ ବିନାନୁମତିରେ ଜାମ୍ମୁ ଓ କାଶ୍ମୀର ସରକାର ନିଜ ଇଚ୍ଛାନୁସାରେ ସର୍ତ୍ତର ଉଲ୍ଲଙ୍ଘନ କରି ପାରିବେ ନାହିଁ । କିନ୍ତୁ ଶେଖ୍ ଅବଦୁଲ୍ଲା ଏହି ସର୍ତ୍ତନାମା ବିରୁଦ୍ଧରେ ସ୍ୱର ଉଠାଇ, ଭାରତ ସରକାରଙ୍କର ଏପ୍ରକାର କାର୍ଯ୍ୟକୁ ଅନୁଚିତ ହସ୍ତକ୍ଷେପ ବୋଲି ବୟାନ କଲେ । କେବଳ ସେତିକି ନୁହେଁ, ଧୀରେ ଧୀରେ ଏହି ପ୍ରଚାରକୁ ବ୍ୟାପକ କରିବା ସଙ୍ଗେ ସଙ୍ଗେ ଗୁପ୍ତ ଷଡ଼ଯନ୍ତ୍ର କରିବାକୁ ମଧ୍ୟ ସେ ପଶ୍ଚାତ୍‌ପଦ ହେଲେ ନାହିଁ ।

ଶେଖ୍ ଅବଦୁଲ୍ଲାଙ୍କର ଏ ପ୍ରକାର ଆତ୍ମଘାତୀ କାର୍ଯ୍ୟ ସମ୍ବନ୍ଧରେ 'ସଦର-ଏ-ରିୟାସତ୍' କରଣସିଂହ ସତର୍କ ଥିଲେ ଏବଂ ନିଜର ଗୁଇନ୍ଦା ବିଭାଗର ଅନୁସନ୍ଧାନ ତଥା କେତେକ କ୍ଷେତ୍ରରେ ନିଜର ଅନୁମାନ ବଳରେ ହିଁ, ଷଡ଼ଯନ୍ତ୍ରର ସ୍ୱରୂପ ସମ୍ବନ୍ଧରେ ପ୍ରକୃତ ଖବର ରଖିଥିଲେ । ଦିନକୁ ଦିନ ଅବ୍‌ଦୁଲ୍ଲାଙ୍କ କାର୍ଯ୍ୟକଳାପ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ, 'ସଦର୍-ଏ-ରିୟାସତ୍'ଙ୍କ ସତର୍କତାମୂଳକ ଯୋଜନା ମଧ୍ୟ ବହୁମୁଖୀ ହେବାକୁ ଲାଗିଲା । ସେ ବରାବର ଶେଖ୍ ଅବ୍‌ଦୁଲ୍ଲାଙ୍କ ଗତିବିଧି ଉପରେ ତୀକ୍ଷ୍ଣଦୃଷ୍ଟି ଦେଇ; ଯେଉଁ ସମୟରେ ଯାହା ଯାହା ଖବର ପାଇଲେ ସଙ୍ଗେ ସଙ୍ଗେ ସେଗୁଡ଼ିକୁ ପ୍ରଧାନମନ୍ତ୍ରୀ ନେହରୁଙ୍କ ନିକଟକୁ ପଠାଇଦେଲେ ।

ଶେଖ ଅବ୍‌ଦୁଲ୍ଲାଙ୍କ ବାରମ୍ବାର ଦିଲ୍ଲୀରୁ ଡକରା ଆସିଲା । କିନ୍ତୁ ସେଥିରେ ତାଙ୍କ କାର୍ଯ୍ୟକଳାପରେ କୌଣସି ପରିବର୍ତ୍ତନର ସୂଚନା ମିଳିଲା ନାହିଁ; ବରଂ ଦିନକୁ ଦିନ ତାଙ୍କ ସ୍ୱାଧୀନ ଚିନ୍ତାଧାରାର ସ୍ୱରୂପ ଉଗ୍ରରୁ ଉଗ୍ରତର ହୋଇଉଠିଲା । ଶେଖ୍ ଅବଦୁଲ୍ଲା ନେହରୁଙ୍କ ପରାମର୍ଶକୁ ଖାତିର କରୁ ନ ଥିବାରୁ ସେ ଚିନ୍ତିତ ଓ ବ୍ୟତିବ୍ୟସ୍ତ ହୋଇପଡ଼ିଲେ । ଏହାର ମଧ୍ୟରେ ମୌଲାନା ଆଜାଦ୍ ଶ୍ରୀନଗର ଆସିଲେ । ଦିନେ ଯେଉଁ ଶେଖ୍ ଅବ୍‌ଦୁଲ୍ଲା, ମୌଲାନା ଆଜାଦ୍‌ଙ୍କ ତ୍ୟାଗ ସମ୍ମୁଖରେ ମି. ଜିନ୍ନାଙ୍କୁ ଗୋଡ଼ମାଟି ସହିତ ତୁଳନା କରୁଥିଲେ, ସେହି ବରିଷ୍ଠ ନେତା ଆଜାଦଙ୍କୁ ଶ୍ରୀନଗରରେ ଅତି ତାଚ୍ଛଲ୍ୟଭାବରେ ଶେଖ୍ ସାହେବ୍‌ଙ୍କ ପକ୍ଷରୁ ସ୍ୱାଗତ ଅଭ୍ୟର୍ଥନା କରାଗଲା । ସତେ ଯେପରି, ସିଏ ଜଣେ ଜଣେ କେବଳ ନଗଣ୍ୟ ବ୍ୟକ୍ତି ଜାମ୍ମୁ ଓ କାଶ୍ମୀର ସରକାରଙ୍କ ଦ୍ୱାରସ୍ଥ ହୋଇଛନ୍ତି ! ତଥାପି ମୌଲାନାଜୀ ଏଥିରେ ବ୍ୟସ୍ତ ହୋଇ ଅଭିମାନରେ ଫେରିଯିବାଭଳି ବ୍ୟକ୍ତି ନ ଥିଲେ । କୌଣସି ପ୍ରକାର ସେ ତାଙ୍କର ଅନ୍ୟାନ୍ୟ କାର୍ଯ୍ୟକ୍ରମ ଶେଷ କଲେ । ଦୁଇ ପ୍ରହର ପରେ 'ହଜରତ୍‌ବଲ ଦରଗାହ'ଠାରେ ତାଙ୍କର ଭାଷଣ ଦେବାର ଥିଲା; ସେ ମଧ୍ୟ ସମୟାନୁସାରେ ସେଠାରେ ଉପସ୍ଥିତ ହେଲେ । ଠିକ୍ ସମୟରେ ସଭାକାର୍ଯ୍ୟ ଆରମ୍ଭ ହେଲା । କେତେଜଣ ବକ୍ତାଙ୍କ ଭାଷଣପରେ ଶେଖ୍ ଅବଦୁଲ୍ଲା ମଧ୍ୟ ନିଜର ଅଭିମତ ପ୍ରକାଶ କଲେ । ତାଙ୍କ ବକ୍ତବ୍ୟ ଶେଷ ହେବା ମାତ୍ରେ ସେ ସଭାମଞ୍ଚରୁ ଓହ୍ଲାଇ ବାହାରକୁ ଚାଲିଗଲେ । ତାଙ୍କର ଚାଲିଯିବାମାତ୍ରେ, ସଭାଭଙ୍ଗ ହେଲା ବୋଲି ଜାଣି, ଉପସ୍ଥିତ ଜନତା ଉଠି ଛିଡ଼ା ହୋଇପଡ଼ିଲେ ଏବଂ ତା'ପରେ

ପରେ ସବୁସ୍ଥଳରୁ ଅଧିକାଂଶ ଜନତା ବାହାରକୁ ଚାଲିଗଲେ । ମୌଲନା ଆଜାଦ୍‌ଙ୍କ ଭାଷଣ ବେଳକୁ ସଭାରେ ଅଳ୍ପ ଲୋକ ଉପସ୍ଥିତ ଥିଲେ । ଶେଖ୍ ଅବଦୁଲ୍ଲା ନିଜେ ଜାଣି ଶୁଣି ମୌଲାନା ଆଜାଦ୍‌ଙ୍କୁ ଅପମାନିତ କରିଥିଲେ । ମୌଲାନାଜୀ ଦିଲ୍ଲୀ ଫେରିଆସି, ଏ ସମ୍ବନ୍ଧରେ ପଣ୍ଡିତ ନେହରୁ ଓ ଅନ୍ୟାନ୍ୟ ତୁଙ୍ଗ ନେତାଙ୍କ ସହିତ ଆଲୋଚନା କଲେ ।

ଏହା ପରେ ପରେ ଶେଖ୍ ଅବ୍‌ଦୁଲ୍ଲା ଆହୁରି କଠୋର ମାର୍ଗ ଅବଲମ୍ବନ କଲେ । ସେ ବିଭିନ୍ନ ସ୍ଥାନରେ ନିଜର ଭାଷଣ ଜରିଆରେ ଭାରତ ସରକାରଙ୍କ ଅନୁଚିତ ହସ୍ତକ୍ଷେପ ବିରୁଦ୍ଧରେ ସମାଲୋଚନା ଆରମ୍ଭ କରିଦେଲେ:

"କାଶ୍ମୀର, କାଶ୍ମୀର ଅଧିବାସୀଙ୍କର; ସେମାନେ ନିଜର ପ୍ରତ୍ୟେକ କାର୍ଯ୍ୟ ଲାଗି ନିଜେ ଦାୟିତ୍ୱ ବହନ କରିବାକୁ ପ୍ରସ୍ତୁତ । ଏଥିରେ କୌଣସି ପକ୍ଷରୁ ହସ୍ତକ୍ଷେପ ହେଲେ ତାହା ଏଠାକାର ଅଧିବାସୀ ବରଦାସ୍ତ କରିବେ ନାହିଁ ।"

ଏହିପରି ଅନେକ ପ୍ରକାର ଅଭିଯୋଗ ସେ କରିବସିଲେ । ଯେଉଁ ଶେଖ୍ ଅବଦୁଲ୍ଲା ସନ୍ ୧୯୪୭ ସାଲରେ ଭାରତ ସହିତ 'ଜାମ୍ମୁ ଓ କାଶ୍ମୀର'ର ମିଶ୍ରଣ ଲାଗି ତମ୍ବୁ ତୋଫାନ୍ ଉଠାଇ ମହାରାଜା ହରି ସିଂହଙ୍କୁ ଅତ୍ୟାଚାରୀ (ଗଦ୍ଦାର) ଆଦି ନାନାପ୍ରକାର ଅପଶବ୍ଦରେ ବିଭୂଷିତ କରୁଥିଲେ, ତାଙ୍କର ବର୍ତ୍ତମାନର କାର୍ଯ୍ୟକଳାପ ଓ ବକ୍ତବ୍ୟ ଶୁଣି ଚିନ୍ତାଶୀଳ ଲୋକେ ବିସ୍ମିତ ହୋଇଗଲେ । ଧୀରେ ଧୀରେ ଶେଖ୍ ସାହେବଙ୍କ ପ୍ରକୃତ ସ୍ୱରୂପ ପ୍ରକଟ ହେବାକୁ ଲାଗିଲା । ପ୍ରକୃତରେ ତାହା ହିଁ ଥିଲା—ବୁଭୁକ୍ଷୁ ସିଂହର ଆତ୍ମପ୍ରକାଶ ! ଶେଖ୍ ଅବ୍‌ଦୁଲ୍ଲାଙ୍କ ମତିଗତି ଫଳରେ ଭାରତ ସରକାରଙ୍କ ମୁଖ୍ୟ କର୍ଣ୍ଣଧାରମାନଙ୍କୁ ଅଧିକ ଚିନ୍ତିତ ହେବାକୁ ପଡ଼ିଲା । କିନ୍ତୁ ସାପକୁ କ୍ଷୀର ପିଆଇଲେ ତାର ବିଷବୃଦ୍ଧି ହେବା ବ୍ୟତୀତ ଅନ୍ୟ କ'ଣ ଆଶା କରାଯାଇପାରେ ! ସମଗ୍ର ଦେଶରେ ଶେଖ୍ ଅବ୍‌ଦୁଲ୍ଲାଙ୍କ ମତିଗତି ସମ୍ପର୍କରେ ନାନାପ୍ରକାର କଳ୍ପନା-ଜଳ୍ପନା ଚାଲିଲା ଏବଂ ଅନେକ କ୍ଷେତ୍ରରେ ମଧ୍ୟ ବିଭିନ୍ନ ପ୍ରକାର ଆଶଙ୍କା ପ୍ରକାଶ ପାଇଲା ।

• • •

# ଦଶ

'ସଦର୍-ଏ-ରିୟାସତ୍' କରଣ ସିଂହ ଶେଖ୍ ଅବ୍ଦୁଲ୍ଲାଙ୍କ ଗତିବିଧି ପ୍ରତି ଖୁବ୍ ସତର୍କ ରହିଥିଲେ । ଖୁବ୍ ସମ୍ଭବତଃ, ସେ କିଛି ନୂତନ କାର୍ଯ୍ୟକରି ସମସ୍ତଙ୍କୁ ବିସ୍ମିତ କରାଇବାକୁ ଚାହୁଁଥିଲେ । ସନ୍ ୧୭୨୪ ସାଲରେ ଯୁବକ ପେଶୱା ବାଜୀରାଓ ମୋଗଲ ସାମ୍ରାଜ୍ୟର ଧୂରୀଣ କୂଟନୀତିଜ୍ଞ ଏବଂ ଶ୍ରେଷ୍ଠ ସେନାପତି ନିଜାମୁଲ୍ ମୁଲକ୍ ଆସଫ୍ ଶାହ୍‌ଙ୍କୁ ପରାଜିତ କରି ଯେପରି ବିଚକ୍ଷଣତା ପ୍ରତିପାଦନ କରିଥିଲେ, ଠିକ୍ ସେହିପରି କିଛି ବୈଶିଷ୍ଟ୍ୟ ଦେଖାଇବା ହିଁ ଏତ ତାଙ୍କର ଉଦ୍ଦେଶ୍ୟ ଥିଲା । କରଣ ସିଂହଙ୍କୁ ଯେତିକି ସମ୍ବାଦ ମିଳୁଥିଲା; ସେଥିରୁ କେବଳ ଜଣାଯାଉଥିଲା ଯେ, ଶେଖ୍ ସାହେବ୍ ଯେଉଁ ଷଡ଼ଯନ୍ତ୍ରରେ ଲିପ୍ତଥିଲେ, ତାହା କେବଳ ଜାମ୍ମୁ ଓ କାଶ୍ମୀର ରାଜ୍ୟ ପ୍ରତି ଆତ୍ମଘାତୀମୂଳକ ଥିଲା ତା' ନୁହେଁ, ସମଗ୍ର ରାଷ୍ଟ୍ରପକ୍ଷରେ ଭୀଷଣ ଦ୍ରୋହମୂଳକ ତଥା ବିଶେଷତଃ ଜନସମାଜର ଉତ୍‌ଥାନ ଓ ରାଷ୍ଟ୍ରୀୟ ଜାଗରଣ ପକ୍ଷରେ ଅତ୍ୟନ୍ତ ଗର୍ହିତ ମଧ୍ୟ । ସେଥିଲାଗି 'ସଦର୍-ଏ-ରିୟାସତ୍' ଆଦୌ ପ୍ରସ୍ତୁତ ନ ଥିଲେ । ଯେକୌଣସି ମୂଲ୍ୟର ବିନିମୟରେ ସେ ଅବ୍‌ଦୁଲ୍ଲାଙ୍କ ଷଡ଼ଯନ୍ତ୍ରକୁ ପଣ୍ଡ କରିଦେବା ଲାଗି ଦୃଢ଼ ସଙ୍କଳ୍ପରେ ଉପନୀତ ହୋଇଥିଲେ । କିନ୍ତୁ ସାଧାରଣ ଅନଭିଜ୍ଞ ବ୍ୟକ୍ତିଙ୍କ ପରି ସେ କୌଣସି ପଦକ୍ଷେପ ନେବାକୁ ଚାହୁଁ ନ ଥିଲେ । ତା' ଫଳରେ ତାଙ୍କ ସୁଚିନ୍ତିତ ଯୋଜନା ବିଫଳ ହୋଇ ତାଙ୍କୁ ହତାଶ ହେବାକୁ ପଡ଼ନ୍ତା ! କାରଣ ସାପ ଗାତରେ ହାତଦେବା ପୂର୍ବରୁ ସାପମନ୍ତ୍ର ଜାଣିବା ଅତ୍ୟନ୍ତ ଆବଶ୍ୟକ ! ଯୁବକ କରଣ ସିଂହ ନିଜର ତୀକ୍ଷ୍ଣ-ବୁଦ୍ଧି ଫଳରେ ଅତି ଅଳ୍ପ ସମୟ ମଧ୍ୟରେ ଅନେକ ପରିଣାମ ଓ ଦୁଷ୍ପରିଣାମ ସମ୍ବନ୍ଧରେ ଧାରଣା କରି-ପାରିଥିଲେ । କିନ୍ତୁ କେବଳ ସେ ଉପଯୁକ୍ତ ଅବସରର ଅପେକ୍ଷାରେ ରହିବା ସଙ୍ଗେ ସଙ୍ଗେ ନିଜେ ମଧ୍ୟ ସମସ୍ତ ପ୍ରକାର ପ୍ରସ୍ତୁତି ପଥରେ ଅଗ୍ରସର ହେଉଥିଲେ ।

ଶେଖ୍ ଅବ୍‌ଦୁଲ୍ଲା ମଧ୍ୟ 'ସଦର-ଏ-ରିୟାସତ୍'ଙ୍କର ସତର୍କତା ଓ ପ୍ରସ୍ତୁତି ସମ୍ବନ୍ଧରେ ଆଦୌ ଅନଭିଜ୍ଞ ନ ଥିଲେ । ସେ ଖବର ସଂଗ୍ରହ କରି ସମସ୍ତ ବିଷୟରେ ଅବଗତ ହେଉଥିଲେ । ଅଜଗର ଯେପରି ଚିନ୍ତା କରୁଥାଏ—ଶିକାର ତା ନିକଟକୁ ଆସିଲେ ମୃତ୍ୟୁମୁଖରେ ପଡ଼ି ତାର ଉଦରସ୍ଥ ହେବ, ଠିକ୍ ସେହିପରି ଶେଖ୍ ଅବ୍‌ଦୁଲ୍ଲା ମଧ୍ୟ ନିଜ ଶକ୍ତିରେ ଅଟଳ ବିଶ୍ୱାସ ରଖି ନିଶ୍ଚିନ୍ତ ହୋଇ ବସି ରହିଥିଲେ । ନିଜର କ୍ଷମତା ତୁଳନାରେ ସେ କୌଣସି ବ୍ୟକ୍ତିର ଶକ୍ତିକୁ ଗ୍ରାହ୍ୟ କରୁ ନ ଥିଲେ କିମ୍ବା ତାଙ୍କ ବିରୁଦ୍ଧରେ ଚାଲିଥିବା କୌଣସି ପ୍ରକାର କାର୍ଯ୍ୟକୁ ସେ ଭ୍ରୂକ୍ଷେପ କରୁ ନ ଥିଲେ । ତାଙ୍କର କେହି କିଛି କ୍ଷତି କରିପାରିବ ନାହିଁ ବୋଲି ସେ ପୂର୍ଣ୍ଣ ଧାରଣା କରିଥିଲେ । ହଁ, ସେ କେବଳ ସ୍ତ୍ରୀ' ମଧ୍ୟରେ ସଦର-ଏ-ରିୟାସତ୍ କରଣ ସିଂହଙ୍କ ବିରୁଦ୍ଧରେ ସ୍ଥାନବିଶେଷରେ କଟୁ ମନ୍ତବ୍ୟ ପ୍ରକାଶ କରିବାକୁ ପଶ୍ଚାତ୍‌ପଦ ହେଉ ନ ଥିଲେ । କୌଣସି ଭୂମିକା ନ ଥାଇ ଜନସାଧାରଣଙ୍କ ମନରେ ଭ୍ରମଧାରଣା ସୃଷ୍ଟି କରିବା ସମ୍ଭବ ନୁହେଁ; ତେଣୁ ସେ ସେହି ପନ୍ଥା ଆଗ୍ରହର ସହିତ ଆଦରି ନେଇଥିଲେ । ଶେଖ୍ ସାହେବଙ୍କ ମନ୍ତବ୍ୟ ଜନସାଧାରଣଙ୍କ ମନରେ ଆଲୋଚ୍ୟ ବିଷୟ ହୋଇଥିଲା । ଏହା ଫଳରେ କାଶ୍ମୀରର ଜନତା ଆଶ୍ଚର୍ଯ୍ୟାନ୍ୱିତ ହେଲେ ଏବଂ ଜାମ୍ମୁର ଅଧିବାସୀଙ୍କ ମନରେ ଗଭୀର ଦୁଃଖ ଜାତହେଲା । କାରଣ ସେମାନେ ଯେଉଁ ଆଶଙ୍କା କରିଥିଲେ ଏବଂ ଯେଉଁଥିପାଇଁ ସେମାନେ କରଣ ସିଂହଙ୍କୁ 'ସଦର-ଏ-ରିୟାସତ୍' ପଦ ଗ୍ରହଣ କରିବାଲାଗି ବାରଣ କରିଥିଲେ, ଶେଷରେ ତାହା ହିଁ ଘଟିବାକୁ ଯାଉଥିଲା ।

ଧୀରେ ଧୀରେ କରଣ ସିଂହଙ୍କ ବିରୋଧରେ ଶେଖ ଅବଦୁଲ୍ଲାଙ୍କ କଟୁ ଆଲୋଚନା ବୃଦ୍ଧି ପାଇଲା । ଗୋଟିଏ ଦୃଷ୍ଟିରୁ ଦେଖିଲେ—ସେ ବାଧ୍ୟ ହୋଇ ଏହା କରିବାକୁ ଆଗ୍ରହ ପ୍ରକାଶ କରିଥିଲେ । ଯିଏ କରଣ ସିଂହଙ୍କ ବିରୁଦ୍ଧରେ ଯେଉଁ 'ଜାମ୍ମୁ'ର ଅଧିବାସୀମାନେ 'କଳାପତାକା' ଦେଖାଇ ବିକ୍ଷୋଭ ପ୍ରଦର୍ଶନ କରିଥିଲେ, ସେମାନେ 'ସଦର-ଏ-ରିୟାସତ୍'ଙ୍କ ବିରୁଦ୍ଧରେ ଶେଖ୍ ଅବଦୁଲ୍ଲାଙ୍କ ମନ୍ତବ୍ୟ ଶୁଣି ବ୍ୟଥିତ ହେବାରେ ସେ (ଶେଖ୍ ଅବଦୁଲ୍ଲା) ଅତ୍ୟଧିକ ଆଶ୍ଚର୍ଯ୍ୟାନ୍ୱିତ ହୋଇଯାଇଥିଲେ । ସେ ଯାହା କଳ୍ପନା କରିଥିଲେ, ଜାମ୍ମୁର ଅଧିବାସୀଙ୍କଠାରୁ ଠିକ୍ ତା'ର ବିପରୀତ ବ୍ୟବହାର ଦେଖିବାକୁ ପାଇଲେ । ତାଙ୍କର ଧାରଣା ଥିଲା ଯେ କରଣ ସିଂହଙ୍କ ପ୍ରତି ତାଙ୍କ ବ୍ୟବହାର ଫଳରେ ଜାମ୍ମୁର ଅଧିବାସୀ, ବିଶେଷତଃ 'ଡୋଗ୍ରା'ମାନେ ଆନନ୍ଦିତ ହେବେ । କିନ୍ତୁ ଫଳ ଫଳିଲା ଓଲଟା ! 'ସଦର-ଏ-ରିୟାସତ୍' କରଣ ସିଂହ ନିଜର ଉଚ୍ଚ ବିଚାର, ସୁନ୍ଦର ବ୍ୟବହାର

ତଥା ସାତ୍ତ୍ୱିକ ଆଚରଣଦ୍ୱାରା ଅତି ଅଳ୍ପ ସମୟ ମଧ୍ୟରେ ସମସ୍ତଙ୍କର ଆଦରର ପାତ୍ର ତଥା ଆଦର୍ଶସ୍ଥାନୀୟ ବ୍ୟକ୍ତିରୂପେ ପରିଚିତ ହେବା ସଙ୍ଗେ ସଙ୍ଗେ ଜନସାଧାରଣଙ୍କୁ ମୁଗ୍ଧ କରିବାରେ ସକ୍ଷମ ହୋଇପାରିଥିଲେ । ଏହା ଫଳରେ ତାଙ୍କ ପ୍ରତି ଶେଖ୍ ଅବ୍ଦୁଲ୍ଲାଙ୍କ କ୍ରୋଧ ଦିନକୁଦିନ ବଢ଼ିବାକୁ ଲାଗିଲା । ଜନତାର ସ୍ମରଣଶକ୍ତି ଯେତିକି ଅସ୍ଥିର, ସେତିକି ଭାବନାପ୍ରଧାନ ବୋଲି ସେ ଅନୁମାନ କରି ନ ଥିଲେ । ଶେଖ୍ ଅବ୍‌ଦୁଲ୍ଲା ନିଜର ଜିଦ୍‌ଖୋର୍ ମନୋଭାବ ତଥା ଅହଂକାରପୂର୍ଣ୍ଣ ସ୍ୱଭାବ ଫଳରେ ଦିନକୁ ଦିନ ନିତାନ୍ତ ଉଗ୍ର ହୋଇଉଠିଲେ ଏବଂ ତାଙ୍କ ମନର ପ୍ରତିହିଂସା ଦିନକୁ ଦିନ ବୃଦ୍ଧି ପାଇବାକୁ ଲାଗିଲା । ସେ ରାଜଶାସନ ଓ ତତ୍‌ପରବର୍ତ୍ତୀକାଳରେ ମହାରାଜା ହରି ସିଂହଙ୍କ ବିରୁଦ୍ଧରେ ଯେଉଁ ଧରଣର ଭାଷା ପ୍ରୟୋଗ କରୁଥିଲେ; ସେହି ଧରଣର ଅପଶବ୍ଦ କରଣ ସିଂହଙ୍କ ବିରୋଧରେ ମଧ୍ୟ ପ୍ରୟୋଗ କରିବାରେ ଆଦୌ ଦ୍ୱିଧା ବୋଧ କଲେ ନାହିଁ । କରଣ ସିଂହଙ୍କ ମନୋବୃତ୍ତିକୁ 'ବୁର୍ଜୁଆ' ତଥା ତାଙ୍କର ବିଚାରଧାରାକୁ 'ରାଜତନ୍ତ୍ରର ପରିପୋଷକ' ବୋଲି ବର୍ଣ୍ଣନାକରି; ତାଙ୍କୁ 'ସଦର-ଏ-ରିୟାସତ୍' ପଦରେ ନିର୍ବାଚିତ କରିବା ବୁଦ୍ଧିମତ୍ତାର କାର୍ଯ୍ୟ ହୋଇନାହିଁ ବୋଲି, ବେଳେ ବେଳେ ଭାବପ୍ରବଣତାର ସହିତ ପ୍ରକାଶ କରିଦେଲେ । ଆହୁରି ମଧ୍ୟ 'ସଦର-ଏ-ରିୟାସତ୍' ଭାବରେ ତାଙ୍କର କାର୍ଯ୍ୟକଳାପ ରାଜ୍ୟପକ୍ଷରେ ଅହିତକର ତଥା ଗଣତାନ୍ତ୍ରିକ ବିଚାରଧାରାର ପରିପନ୍ଥୀ ବୋଲି ଦର୍ଶାଇ, ତୀବ୍ର ବାକ୍ୟବାଣରେ ସମାଲୋଚନା ଆରମ୍ଭ କରିଦେଲେ । କରଣ ସିଂହ ସବୁକିଛି ଶୁଣୁଥା'ନ୍ତି ଏବଂ ଜଣେ ବିଚକ୍ଷଣ ରାଜନୀତିଜ୍ଞ ଓ ଦୂରଦର୍ଶୀ ନେତାଭାବରେ ସବୁ ଶୁଣି କେବଳ ନୀରବ ରହୁଥା'ନ୍ତି । ସେ ତାହାର ପ୍ରତିହିଂସାସ୍ୱରୂପ କେବେହେଲେ ବିରକ୍ତି ପ୍ରଦର୍ଶନ କଲେ ନାହିଁ କିମ୍ବା କୌଣସି ଦ୍ରୁତ ପଦକ୍ଷେପ ନେବାରେ ଶୀଘ୍ରତା ପ୍ରକାଶ କଲେ ନାହିଁ । ସେ ସେଥିଲାଗି ଯେଉଁ ଯୋଜନା ପ୍ରସ୍ତୁତ କରୁଥିଲେ, ସେହି ଅନୁସାରେ ଅତି ସାବଧାନତାର ସହିତ ତଥା ସୁବ୍ୟବସ୍ଥିତ ଢଙ୍ଗରେ ଅଗ୍ରସର ହେଲେ । କାରଣ, ସାମାନ୍ୟ ଭୁଲ୍‌ରେ ମଧ୍ୟ ତାଙ୍କର ସମସ୍ତ ଯୋଜନା ପଣ୍ଡ ହୋଇଯିବାର ଅଧିକ ସମ୍ଭାବନା ଥିଲା । ଅନ୍ୟଥା ଏହି ମତିଗତି ବିବାଦରେ ହାରିଯାଇ ସାରାଜୀବନଲାଗି ତାଙ୍କୁ ପଶ୍ଚାତ୍ତାପ କରିବାକୁ ପଡ଼ୁଥା'ନ୍ତା ।

ଶେଖ୍ ଅବଦୁଲ୍ଲା ଯେପରି ଖୋଲାଖୋଲିଭାବରେ କରଣ ସିଂହଙ୍କ ବିରୁଦ୍ଧରେ ବିଷୋଦ୍‌ଗାର କରୁଥିଲେ; ଠିକ୍ ସେହିପରି, 'ଜାମ୍ମୁ ଓ କାଶ୍ମୀର'କୁ

ଭାରତଠାରୁ ଏକ ସ୍ୱତନ୍ତ୍ର ରାଜ୍ୟରୂପେ ଶାସନ କରି ଭାରତ ସରକାରଙ୍କୁ ମଧ୍ୟ ତୀବ୍ର ସମାଲୋଚନା କରୁଥିଲେ । ତାଙ୍କ ବକ୍ତବ୍ୟରେ ଭାରତ ସରକାର ତାଙ୍କର ଅନୁଚିତ ହସ୍ତକ୍ଷେପରୁ ଯଥାଶୀଘ୍ରସମ୍ଭବ ଓହରି ଯାଇ 'ଜାମ୍ମୁ ଓ କାଶ୍ମୀର' ରାଜ୍ୟକୁ ଏକ ସ୍ୱତନ୍ତ୍ର ରାଜ୍ୟରୂପେ ନିଜର ଭବିଷ୍ୟତ ଗଠନ ସମ୍ପର୍କରେ ସ୍ୱାଧୀନତା ଦେବା ଉଚିତ । ଏ ସମ୍ବନ୍ଧରେ ସେ ବାରମ୍ବାର ଚେତାବନୀ ଶୁଣାଇବାକୁ ପଛାଇଲେ ନାହିଁ । ଦିନକୁ ଦିନ ତାଙ୍କର ଭାରତ ବିରୋଧୀ ସମାଲୋଚନା କଠୋରରୁ କଠୋରତର ହୋଇଉଠିଲା ଏବଂ ତା' ସହିତ ମଧ୍ୟ ତାଙ୍କର ଉଦ୍ଧତତା ବେଳକୁ-ବେଳ ଅତିଷ୍ଠ ବୋଧ ହେଲା । ସେ 'ରଣବୀରସିଂହପୁରା' ନାମକ ସ୍ଥାନରେ ଥରେ ଭାଷଣ ପ୍ରସଙ୍ଗରେ କହିଥିଲେ :

"ଭାରତ ତଥା କାଶ୍ମୀରର ସମ୍ବନ୍ଧ ବିଚ୍ଛେଦ ହୋଇଗଲେ, ଉଭୟ ରାଜ୍ୟ ନଷ୍ଟଭ୍ରଷ୍ଟ ହୋଇଯିବା ବ୍ୟତୀତ ଅନ୍ୟ କିଛି ଲାଭ ହେବ ନାହିଁ ଏବଂ ଏ ପ୍ରକାର ପାରସ୍ପରିକ ସମ୍ପର୍କ ଉଭୟ ହିନ୍ଦୁ ଓ ମୁସଲମାନ ଜନତା ପକ୍ଷରେ ଅତ୍ୟନ୍ତ ହିତକର; ଏ ପ୍ରକାର ଅଭିମତ କେବଳ ଭାରତୀୟ ନେତୃବର୍ଗଙ୍କର କଳ୍ପୋଳକଳ୍ପିତ ଚିନ୍ତାଧାରା ତଥା କୌଶଳପୂର୍ଣ୍ଣ ଅପପ୍ରଚାର ବ୍ୟତୀତ ଅନ୍ୟ କିଛି ନୁହେଁ । ହିନ୍ଦୁମାନଙ୍କ ସୁରକ୍ଷା ଉଦ୍ଦେଶ୍ୟରେ ଏ ପ୍ରକାର ସମ୍ପର୍କ ସ୍ଥାପନ କରାଯାଇଛି । ଅବଶ୍ୟ ଏହା ଦୃଢ଼ତାର ସହିତ କୁହାଯାଇପାରେ ଯେ, କାଶ୍ମୀରରେ କେବେହେଲେ ସାମ୍ପ୍ରଦାୟିକ ସଂକୀର୍ଣ୍ଣତା ସୃଷ୍ଟିହୋଇ ନ ପାରେ ! କାଶ୍ମୀରବାସୀ କେବଳ ରାଜ୍ୟସୁରକ୍ଷାର ଦାୟିତ୍ୱ ଭାରତ ସରକାରଙ୍କ ହାତରେ ଅର୍ପଣ କରିଛନ୍ତି । ତେଣୁ ଅନ୍ୟାନ୍ୟ ସମସ୍ତ ଆଭ୍ୟନ୍ତରୀଣ ସମସ୍ୟାର ସମାଧାନ ନିଜେ କରିବାର ହକ୍‌ଦାର୍ ଅଟନ୍ତି । ଯଦି ଭାରତରେ ସାପ୍ରଦାୟିକ ସଂକୀର୍ଣ୍ଣତା ସୀମା ଲଙ୍ଘନ କରେ, ସେପରି ଅବସ୍ଥାରେ ମୁସଲ୍‌ମାନମାନଙ୍କର ଧନଜୀବନ ସୁରକ୍ଷିତ ହେବାର ସମ୍ଭାବନା କେଉଁଠି ? ଅବଶ୍ୟ ସାଂପ୍ରଦାୟିକ ସଂକୀର୍ଣ୍ଣତାର ଦୂରୀକରଣ ଲାଗି ଭାରତ ସରକାର ଚେଷ୍ଟା ଚଳାଇଛନ୍ତି; ତା' ସତ୍ତ୍ୱେ, ଏକଥା କେବେହେଲେ ନିର୍ଭର ଭାବରେ କୁହାଯାଇ ନ ପାରେ ଯେ, ସାମ୍ପ୍ରଦାୟିକତାର ଅସ୍ତିତ୍ୱ ଭାରତରେ ନାହିଁ ।

କାଶ୍ମୀର ନିଜର ସ୍ୱତନ୍ତ୍ରତା ବଜାୟ ରଖିବାକୁ ଚାହେଁ । କିନ୍ତୁ ଏ ରାଜ୍ୟରେ ଉଭୟ ସମ୍ପ୍ରଦାୟ ମଧ୍ୟରେ ବିରୋଧଭାବ ସୃଷ୍ଟି କରିବାକୁ ଚେଷ୍ଟା

କରଯାଉଛି । ଅବଶ୍ୟ ଏ ରାଜ୍ୟ ମଧ୍ୟରେ ଦଳେ ଲୋକ ଅଛନ୍ତି, ଯେଉଁମାନେ ଆମର ସ୍ୱତନ୍ତ୍ର ଅସ୍ତିତ୍ୱକୁ ଲୋପକରି କାଶ୍ମୀର ଉପରେ ଭାରତର ସମ୍ବିଧାନ ପୂର୍ଣ୍ଣଭାବରେ ଲଦିଦେଇ, ଏହାକୁ ଭାରତର ଏକ 'ଖ' ଶ୍ରେଣୀସ୍ଥ ରାଜ୍ୟରେ ପରିଣତ କରିବାକୁ ଚାହାନ୍ତି । ଯଦି କାଶ୍ମୀର ଉପରେ ଭାରତର ଶାସନ-ବିଧାନ ବଳପୂର୍ବକ ଲଦି ଦିଆଯାଏ, ତା' ଫଳରେ ପାରସ୍ପରିକ ସମ୍ପର୍କ ବିଚ୍ଛେଦ ହୋଇ ଏକ ନୂତନ ସଂଘର୍ଷର ସୂତ୍ରପାତ ହୋଇଯିବ ।"

କେବଳ ଏତିକ ନୁହେଁ, ଖୋଲାଖୋଲି ଭାବରେ ସେ କହିବାକୁ ଆରମ୍ଭ କଲେ :

"କାଶ୍ମୀର, କାଶ୍ମୀର ଅଧିବାସୀଙ୍କର ।"

ସେ ଆହୁରି ଟିକିଏ ଅଗ୍ରସର ହୋଇ ଏହାର ସ୍ପଷ୍ଟୀକରଣ କରିଦେଲେ । ଜାମୁଠାରୁ ସେଅଞ୍ଚଳକୁ ପ୍ରାୟ ସତୁରି ମାଇଲ ଦୂରବର୍ତ୍ତୀ 'ହ୍ରୀଟାପ୍' ନାମକ ସ୍ଥାନରୁ ଅର୍ଥାତ୍ 'ଚେନାବ୍' ନଦୀକୁ ସୀମାରେଖାରୂପେ ସ୍ୱୀକାର କରି ଏକ ସ୍ୱାଧୀନ କାଶ୍ମୀର ରାଜ୍ୟ ସମ୍ବନ୍ଧରେ ଆଲୋଚନା କରିବାକୁ ଲାଗିଲେ । ଏପରିକି ସେ ଜାମୁକୁ ମଧ୍ୟ ତାଙ୍କ ସ୍ୱାଧୀନ ରାଜ୍ୟର ପରିକଳ୍ପନାରୁ ପୃଥକ୍ କରି ଆଲୋଚନା ପ୍ରସଙ୍ଗରେ କହିଲେ :

"ଯଦି ଜାମୁର ଅଧିବାସୀମାନେ ଭାରତରୁ ପୃଥକ୍ ହେବାଲାଗି ଚାହୁଁ ନ ଥା'ନ୍ତି, ତା' ହେଲେ ସେମାନେ ସେ'ଆଡ଼େ ରହନ୍ତୁ, କିନ୍ତୁ କାଶ୍ମୀରର ଜନତା ନିଜର ସ୍ୱତନ୍ତ୍ର ଅସ୍ତିତ୍ୱ ବଜାୟ ରଖିବାକୁ ଦୃଢ଼ପ୍ରତିଜ୍ଞ ଅଟନ୍ତି ।"

ସେ ଆହୁରି ମଧ୍ୟ ଯୁକ୍ତି କରି କହିଲେ :

"ମୋର ଏ ପ୍ରକାର ମନ୍ତବ୍ୟର ଉଚିତ୍ୟତା ଦୃଷ୍ଟିରୁ ଭାରତ ସରକାର କାଶ୍ମୀରର ଜନସାଧାରଣଙ୍କ ମତାମତ ଜାଣିପାରନ୍ତି । ଏ ପ୍ରକାର ଜନମତ ସଂଗ୍ରହ ମଧ୍ୟ ନିତାନ୍ତ ଆବଶ୍ୟକ । କାଶ୍ମୀରର ଜନମତ ଅନୁସାରେ ଏ ରାଜ୍ୟ ସମ୍ବନ୍ଧରେ ଯେ କୌଣସି ନିଷ୍ପତ୍ତି କରିଯିବାକୁ ଜବାହରଲାଲ୍ ନେହରୁ ପୂର୍ବରୁ ମତବ୍ୟକ୍ତ କରିଛନ୍ତି ।"

ଶେଖ୍ ଅବ୍‌ଦୁଲ୍ଲାଙ୍କ ପ୍ରକୃତ ସ୍ୱରୂପ ଧୀରେ ଧୀରେ ପ୍ରକଟ ହେବା ମାତ୍ରେ ଦେଶରେ ନାନାପ୍ରକାର ଜନରବ ପ୍ରଚାରିତ ହେବାକୁ ଲାଗିଲା । ସେ ସମ୍ବନ୍ଧରେ

ବୈଠକ ମହଲରେ କେତେ ପ୍ରକାର ଆଶଙ୍କା ଓ ଅନ୍ୟାନ୍ୟ କ୍ଷେତ୍ରରେ କ୍ରୋଧ ପ୍ରକାଶ ପାଇଲା । ଲୋକସଭାରେ ମଧ୍ୟ ଭିନ୍ନ ଧରଣର ସମାଲୋଚନା ଆରମ୍ଭ ହେଲା । ଲୋକସଭାର ସଭ୍ୟମାନେ ଶେଖ୍ ଅବ୍ଦୁଲ୍ଲାଙ୍କର ପାକିସ୍ତାନ ସହିତ ଘନିଷ୍ଠ ସମ୍ପର୍କ ଥିବାର ସନ୍ଦେହ କରି; ତାହା ଫଳରେ କେଉଁ ସମୟରେ ଭାରତ ପକ୍ଷରେ ତାହା ବିପଦର କାରଣ ହୋଇପାରେ ବୋଲି ସମାଲୋଚନା କଲେ । ଏହି ପ୍ରକାର ଉତ୍ତେଜନାପୂର୍ଣ୍ଣ ବାୟୁମଣ୍ଡଳ ମଧ୍ୟରେ ହଠାତ୍ ସନ୍ ୧୯୫୩ ସାଲ୍ ଅଗଷ୍ଟ ଆଠ ତାରିଖ ଦିନ ସକାଳେ ଉପପ୍ରଧାନମନ୍ତ୍ରୀ ବକ୍ସି ଗୁଲାମ୍ ମହମ୍ମଦ, ରାଜସ୍ୱମନ୍ତ୍ରୀ ଗିରିଧାରୀଲାଲ୍ ଡୋଗ୍ରା ଓ ବିକାଶମନ୍ତ୍ରୀ ଶ୍ୟାମଲାଲ୍ ସରାଫ ଶେଖ ଅବ୍ଦୁଲ୍ଲାଙ୍କ ଆଚରଣ ପ୍ରତି ସନ୍ଦେହ ପ୍ରକାଶ କରି, 'ସଦର୍-ଏ-ରିୟାସତ୍'ଙ୍କ ନିକଟରେ ଲିଖିତ ଅଭିଯୋଗପତ୍ର ଦାଖଲ କରିଦେଲେ । ସେହି ମନ୍ତ୍ରୀମାନେ ଏକପ୍ରକାର ପ୍ରଧାନମନ୍ତ୍ରୀ ଶେଖ୍ ଅବ୍ଦୁଲ୍ଲାଙ୍କ ବିରୁଦ୍ଧରେ ଅବିଶ୍ୱାସ ପ୍ରସ୍ତାବ ଶାସନମୁଖ୍ୟଙ୍କ ନିକଟକୁ ପଠାଇଥିଲେ ବୋଲି କହିବାକୁ ହେବ । ସେମାନେ ଶେଖ୍ ଅବ୍ଦୁଲ୍ଲାଙ୍କୁ ପାକିସ୍ତାନର ସମର୍ଥକ ଓ ତାଙ୍କ କାର୍ଯ୍ୟକଳାପ ରାଜ୍ୟପକ୍ଷରେ ଅହିତକର ବୋଲି ଉକ୍ତ ପତ୍ରରେ ଉଲ୍ଲେଖ କରିଥିଲେ । ବିଧାନସଭାର ଅଧ୍ୟକ୍ଷ ଗୁଲାମ୍ ମହମ୍ମଦ ସାଦ୍ଦିକ ମଧ୍ୟ ଏହିପରି ଏକ ଅବିଶ୍ୱାସ ପ୍ରସ୍ତାବ 'ସଦର୍-ଏ-ରିୟାସତ୍'ଙ୍କଠାରେ ଉପସ୍ଥାପିତ କଲେ ।

'ସଦର୍-ଏ-ରିୟାସତ୍' ସେହିଦିନ ଦୁଇପ୍ରହରବେଳକୁ ପ୍ରଧାନମନ୍ତ୍ରୀ ଶେଖ୍ ଅବ୍ଦୁଲ୍ଲାଙ୍କୁ ଡକାଇ ଆଣି; ମନ୍ତ୍ରୀମାନଙ୍କ ଅଭିଯୋଗ ସମ୍ବନ୍ଧରେ ତାଙ୍କ ଦୃଷ୍ଟି ଆକର୍ଷଣ କରିବା ସଙ୍ଗେ ସଙ୍ଗେ, ସମସ୍ୟାର ସମାଧାନ ଉଦ୍ଦେଶ୍ୟରେ ଉକ୍ତ ଦିନ ସନ୍ଧ୍ୟା ସମୟରେ ଗୋଟିଏ ବୈଠକ ଡକାଇବାର ପ୍ରସ୍ତାବ ଦେଲେ । ନିଜକୁ କାଶ୍ମୀରର ମାଲିକ ତଥା ମୁକୁଟବିହୀନ ସମ୍ରାଟ୍ ବୋଲି ମନେ କରୁଥିବା 'ଶେର୍-ଏ-କାଶ୍ମୀର'ଙ୍କ ପକ୍ଷରେ ଏହା ଅତ୍ୟନ୍ତ ଅବଜ୍ଞାପୂର୍ଣ୍ଣ ନିମନ୍ତ୍ରଣ ବୋଲି ମନେ କରାଗଲା । ତାଙ୍କପରି ଶକ୍ତିଶାଳୀ ବ୍ୟକ୍ତିଙ୍କୁ ପୁଣି କୈଫିୟତ୍ ତଲବ୍ କରାଯିବ ! ତାହା ପୁଣି ଅର୍ବାଚୀନ ଯୁବକ କରଣ ସିଂହଙ୍କଦ୍ୱାରା !! ଏହା ତାଙ୍କ ପକ୍ଷରେ ଅସହ୍ୟ ହୋଇଉଠିଲା । ସେ 'ସଦର୍-ଏ-ରିୟାସତ୍'ଙ୍କ ପ୍ରସ୍ତାବପ୍ରତି ଉପେକ୍ଷା ପ୍ରଦର୍ଶନ କରି କହିଲେ :

"ବର୍ତ୍ତମାନ ମୁଁ 'ଗୁଲ୍‌ମାର୍ଗ' ଯାଉଛି, ମୋତେ ସମୟ ନାହିଁ । ଆଉ ମଧ୍ୟ ଦେଖିବାକୁ ଗଲେ, ଏସବୁ ସମସ୍ୟା ସହିତ ଆପଣଙ୍କର କିଛି ସମ୍ପର୍କ ନାହିଁ ।

ମୁଁ ଫେରିଆସିଲେ ସବୁ କିଛି ବ୍ୟବସ୍ଥା କରିଦେବି । ଆପଣଙ୍କର ଏସବୁ ବିଷୟରେ ମୁଣ୍ଡ ଘୂରାଇବା ଦରକାର ନାହିଁ ।”

ତା’ ପରେ ସେ ‘ସଦର୍‌-ଏ-ରିୟାସତ୍‌’ଙ୍କର ପରବର୍ତ୍ତୀ ମନ୍ତବ୍ୟପ୍ରତି ଅପେକ୍ଷା ନ କରି ସଙ୍ଗେ ସଙ୍ଗେ ସେଠାରୁ ବାହାରିଗଲେ ।

ଅବ୍‌ଦୁଲ୍ଲ୍‌ଙ୍କର ଉଦ୍ଧତ ଆଚରଣ ଦେଖି ‘ସଦର୍‌-ଏ-ରିୟାସତ୍‌’ କରଣ-ସିଂହ କିଛି ସମୟ ନୀରବ ରହି ଚିନ୍ତା କରିବାକୁ ଲାଗିଲେ । ସେ ଉପ-ପ୍ରଧାନ-ମନ୍ତ୍ରୀ ବଖ୍‌ଶୀ ଗୁଲାମ୍‌ ମହମ୍ମଦ୍‌ଙ୍କୁ ଡକାଇଆଣି ତାଙ୍କ ସହିତ ଅନେକ ସମୟ ପର୍ଯ୍ୟନ୍ତ ଗମ୍ଭୀର ଆଲୋଚନା କଲେ । ତା’ପରେ ତାଙ୍କ ପୂର୍ବ ନିର୍ଦ୍ଧାରିତ ଯୋଜନା ଅନୁସାରେ କାର୍ଯ୍ୟ କରିବାକୁ ତତ୍ପର ହୋଇପଡ଼ିଲେ । ସଙ୍ଗେ ସଙ୍ଗେ ଅତି ସତର୍କତାର ସହିତ ଆଦେଶ ଜାରି ହେଲା ଏବଂ ପୋଲିସ ଅଧିକାରୀମାନଙ୍କୁ ପ୍ରସ୍ତୁତ ହୋଇ ରହିବା ଲାଗି ନିର୍ଦ୍ଦେଶ ଦିଆଗଲା । ଯଥାଶୀଘ୍ର ସମ୍ଭବ ସହର ଭିତରେ ଓ ବାହାରେ କଡ଼ାକଡ଼ିଭାବରେ ପୋଲିସ ପ୍ରହରୀ ନିଯୁକ୍ତ କରାଗଲା । ବଖ୍‌ଶୀ ଗୁଲାମ୍‌ ମହମ୍ମଦ୍‌ ମଧ୍ୟ ଅତି ସାବଧାନତାର ସହିତ ଏ ସମସ୍ତ ବ୍ୟବସ୍ଥା କରିବାର ଆୟୋଜନ କଲେ । କାରଣ, ସିଂହ ଥରେ ଯନ୍ତାରୁ ଖସିଗଲେ ଆଉ କାହାରି ରକ୍ଷା ନାହିଁ ! ସହର ଓ ଆଖ ପାଖ ଅଞ୍ଚଳର ସୁରକ୍ଷା ପରେ ପରେ ଗୋଟିଏ ସୁଦକ୍ଷ ଓ ସଶସ୍ତ୍ର ପୋଲିସଦଳ ଗଭୀର ଘନ ଅନ୍ଧକାର ମଧ୍ୟରେ ‘ଗୁଲ୍‌ମାର୍ଗ’ ଅଭିମୁଖେ ପ୍ରସ୍ଥାନ କଲେ । ସେଠାରେ ସେମାନେ ଶେଖ୍‌ ଅବ୍‌ଦୁଲ୍ଲା ରହିଥିବା ଡାକବଙ୍ଗଳାଟିକୁ ଚାରିଆଡ଼ୁ ଘେରାଉ କରି ଜଗି ରହିଲେ । ଧୀରେ ଧୀରେ ରାତିର ନୀରବତା ବୃଦ୍ଧି ପାଇଲା । ପ୍ରାୟ ରାତି ବାରଟା ସମୟରେ ‘ସଦର୍‌-ଏ-ରିୟାହତ୍‌’ଙ୍କ ଏ.ଡ.ସି. ଶେଖ୍‌ ଅବ୍‌ଦୁଲ୍ଲାଙ୍କ ଡାକବଙ୍ଗଳାରେ ଉପସ୍ଥିତ ହୋଇ ଭିତରକୁ ସମ୍ବାଦ ପଠାଇଲେ । ଶେଖ୍‌ ସାହେବ ଅତ୍ୟନ୍ତ ବିରକ୍ତି ସହକାରେ ଏ. ଡ. ସି.ଙ୍କ ନିକଟକୁ ଆସିଲେ । ଏ. ଡ. ସି. ନିଜ ପକେଟରୁ ବାହାର କରି ଖଣ୍ଡିଏ ପତ୍ର ତାଙ୍କଆଡ଼କୁ ବଢ଼ାଇ ଦେଇ ବିନମ୍ର ଭାବରେ କହିଲେ :

“ଏ ପତ୍ର କେବଳ ଆପଣଙ୍କ ହାତରେ ଦେବା ଲାଗି ମୋତେ କୁହାଯାଇଛି ।”

: “ଏତେ ରାତିରେ ଆସିବାର କ’ଣ ଦରକାର ଥିଲା ? ଏଠାରେ କ’ଣ ତମାସା ଚାଲିଛି କି ?”

ସେ ବିରକ୍ତିପୂର୍ଣ୍ଣ ମୁଖ ଭଙ୍ଗୀ ପ୍ରକାଶ କରି ତାଙ୍କ ହାତରୁ ପତ୍ରଟିକୁ ଭିଡ଼ନେଲେ ।

"ମୋତେ ତାହ ଶ୍ରୀ ନର୍ଦ୍ଦେଶ ଦିଆଯାଇଥିଲା।" ଆହୁରି ନମ୍ରଭାବରେ କହିଲେ ଏ. ଡ଼ି. ସି. ।

ଶେଖ୍ ଅବ୍‌ଦୁଲ୍ଲା ପତ୍ରଟିକୁ ଖୋଲି ତା' ଉପରେ ଆଖି ବୁଲାଇ ନେଇ ଅତ୍ୟନ୍ତ କ୍ରୋଧ ପ୍ରକାଶ କରି କହିଲେ :

"ଯାଅ ! ଏଥର ତା'ର ମଧ୍ୟ ଦିନ ନିକଟ ହୋଇଆସିଲାଣି।"

ଏହାପରେ ଆହୁରି କେତେ କଣ' ଅସଂଯତପୂର୍ଣ୍ଣ ବାକ୍ୟ କହି କହି ସେ ଭିତରକୁ ଚାଲିଗଲେ ।

(ଶେଖ୍ ଅବ୍‌ଦୁଲ୍ଲାଙ୍କ ସରକାରକୁ ବରଖାସ୍ତ କରି ଲେଖାଯାଇଥିବା 'ସଦର୍-ଏ-ରିୟାସତ୍'ଙ୍କ ପତ୍ର)

କର୍ଣ୍ଣମହଲ, ଶ୍ରୀନଗର

ଅଗଷ୍ଟ ୮, ୧୯୫୩

ମୋର ପ୍ରିୟ ଶେଖ୍ ଅବ୍‌ଦୁଲ୍ଲା ସାହେବ୍ !

ଆପଣଙ୍କର ସ୍ମରଣ ଥିବ; ଆଜ ଆମର ଦେଖା ସାକ୍ଷାତ୍ ସମୟରେ ଆପଣଙ୍କ ମନ୍ତ୍ରିମଣ୍ଡଳରେ ଉପୁଜିଥିବା ମତଭେଦ ସମ୍ପର୍କରେ ମୁଁ ଆପଣଙ୍କଠାରେ ଗଭୀର ଚିନ୍ତାପୂର୍ଣ୍ଣ ବକ୍ତବ୍ୟ ବ୍ୟକ୍ତ କରିଥିଲି । ମୁଁ ଆହୁରି ମଧ୍ୟ ସୁବ୍ୟବସ୍ଥିତ ଶାସନ-ନୀତିର ପରିଚାଳନା ନିମିତ୍ତ ମନ୍ତ୍ରିମଣ୍ଡଳର ସଦସ୍ୟମାନଙ୍କ ମଧ୍ୟରେ ଶୃଙ୍ଖଳା ରହିବା ଅତ୍ୟନ୍ତ ଆବଶ୍ୟକ ବୋଲି ଆପଣଙ୍କୁ ଜଣାଇଥିଲି । କିନ୍ତୁ ସେ ଯାହାହେଉ, ଆପଣ ସେହି ମତଭେଦର ଦୂରୀକରଣ ନିମିତ୍ତ ମୋ' ନିକଟରେ କୌଣସି ପ୍ରସ୍ତାବ ଉପସ୍ଥାପିତ କଲେ ନାହିଁ ।

ଅନେକଦିନ ହେଲା ମନ୍ତ୍ରିମଣ୍ଡଳର ସଦସ୍ୟମାନଙ୍କ ମଧ୍ୟରେ ଉପୁଜିଥିବା ମତଭେଦ ଫଳରେ, ରାଜ୍ୟର ଜନସାଧାରଣ ନାନା ପ୍ରକାର ଆଶଙ୍କା ତଥା ଦ୍ୱନ୍ଦ୍ୱଗ୍ରସ୍ତତାର ସମ୍ମୁଖୀନ ହୋଇଛନ୍ତି । ପରିସ୍ଥିତି ଏପରି ଆକାର ଧାରଣ କଲାଣି ଯେ, ଆପଣଙ୍କ ମନ୍ତ୍ରିମଣ୍ଡଳର ଅନ୍ୟ ଚାରି ଜଣ ସଦସ୍ୟଙ୍କ ମଧ୍ୟରୁ ତିନି ଜଣ, ଆପଣଙ୍କ କାର୍ଯ୍ୟପ୍ରଣାଳୀ ତଥା ଶାସନ-ନୀତିରେ ସମ୍ପୂର୍ଣ୍ଣ ଅସନ୍ତୋଷ ପ୍ରକାଶ କରି ଗୋଟିଏ ଅଭିଯୋଗପତ୍ର ଆପଣଙ୍କ ନିକଟରେ ଉପସ୍ଥାପିତ କରିବା ସଙ୍ଗେ ସଙ୍ଗେ ମୋ' ନିକଟକୁ ମଧ୍ୟ ତା'ର ପ୍ରତିଲିପି ପଠାଇଛନ୍ତି । ସେ ପ୍ରତିଲିପିରୁ ସ୍ପଷ୍ଟ ପ୍ରମାଣିତ ହେଉଛି ଯେ, ଆପଣଙ୍କ ମନ୍ତ୍ରିମଣ୍ଡଳ ମଧ୍ୟରେ ମତଭେଦର

ସୀମା ଅତିକ୍ରମ କଲାଣି; ଯାହା ଫଳରେ; ରାଜ୍ୟର ଶାନ୍ତି, ସୁବ୍ୟବସ୍ଥା ତଥା ଏକତା ସଙ୍କଟପୂର୍ଣ୍ଣ ଅବସ୍ଥାର ସମ୍ମୁଖୀନ ହୋଇଛି ।

ଆଜି ସନ୍ଧ୍ୟାସମୟରେ ମୋ' ବାସଭବନରେ ମନ୍ତ୍ରିମଣ୍ଡଳର ସଦସ୍ୟମାନଙ୍କର ଏକ ବୈଠକ ଡକାଇବା ଲାଗି, ଆଜି ଆମର ଆଲୋଚନା ସମୟରେ, ମୁଁ ଏକ ପ୍ରସ୍ତାବ ଦେଇଥିଲି । ଉକ୍ତ ବୈଠକରେ, ରାଜ୍ୟରେ ଏକ ସୁସଙ୍ଗଠିତ ଦକ୍ଷ ସ୍ଥାୟୀ ସରକାରର ଗଠନ ସମ୍ପର୍କରେ ଆଲୋଚନା କରାଯିବାଲାଗି ମୁଁ ମୋର ଔତ୍ସୁକ୍ୟ ପ୍ରକାଶ କରିଥିଲି । କିନ୍ତୁ ମୋତେ ଦୁଃଖର ସହିତ ଜଣାଇବାକୁ ପଡ଼ୁଛି ଯେ, ଆପଣ ମୋ' ପ୍ରସ୍ତାବକୁ ଜାଣିଶୁଣି ଏଡ଼ାଇଦେଇ ଚାଲିଗଲେ ।

ଏହି ସମସ୍ତ ପରିସ୍ଥିତିପ୍ରତି ଦୃଷ୍ଟିଦେଇ, ରାଜ୍ୟର ସର୍ବୋଚ୍ଚ କର୍ତ୍ତୃରୂପେ; ମୁଁ ଅନୁଭବ କରୁଛି ଯେ ବର୍ତ୍ତମାନର ସରକାର ରାଜକୀୟ ଶାସନଭାର ସମ୍ଭାଳିବାରେ ସମ୍ପୂର୍ଣ୍ଣ ଅନୁପଯୁକ୍ତ । ତେଣୁ ଅତି ଦୁଃଖର ସହିତ ଆପଣଙ୍କୁ ଜଣାଇବାକୁ ପଡ଼ୁଛି ଯେ, ମୁଁ ବାଧ୍ୟହୋଇ ଆପଣଙ୍କ ପ୍ରଧାନମନ୍ତ୍ରୀତ୍ୱରେ ଗଠିତ ମନ୍ତ୍ରିପରିଷଦ୍‌କୁ ଭାଙ୍ଗି ଦେବାର ଆଦେଶ ଦେଉଛି । ଏଥି ସହିତ ମୋ' ଆଦେଶନାମାର ପ୍ରତିଲିପି ଗ୍ରଥିତ ହୋଇଛି ।

ଏ ପ୍ରକାର ପଦକ୍ଷେପ ନେବା ଫଳରେ ମୋ' ମନରେ ଯେଉଁ ଦୁଃଖ ଜାତ ହୋଇଛି, ମୁଁ ତାହା ବ୍ୟକ୍ତ କରିପାରୁ ନାହିଁ । କିନ୍ତୁ ରାଜ୍ୟର ଜନସାଧାରଣଙ୍କ ସ୍ୱାର୍ଥରକ୍ଷା ଦୃଷ୍ଟିରୁ ବାଧ୍ୟହୋଇ ମୋତେ ଏହା କରିବାକୁ ପଡ଼ୁଛି । କାରଣ, ଜନସ୍ୱାର୍ଥରକ୍ଷା ହିଁ ମୋର ପ୍ରଧାନ ଦାୟିତ୍ୱ । ଆଶାକରେ, ଏହାଦ୍ୱାରା ଆମର ପାରସ୍ପରିକ ସମ୍ପର୍କରେ କୌଣସି ପ୍ରକାର ଆଞ୍ଚ ଆସିବ ନାହିଁ ।

ଭବଦୀୟ
ସ୍ୱା-କରଣ ସିଂହ
'ସଦର୍-ଏ-ରିୟାସତ୍'

**ଆଦେଶନାମା**

ଯେହେତୁ ମୁଁ ଗତ କେତେ ମାସ ହେଲା ଦେଖିପାରୁଛି ଯେ; ରାଜନୈତିକ, ଆର୍ଥିକ ଓ ପ୍ରଶାସନିକ ବିଷୟକୁ ନେଇ ମନ୍ତ୍ରିମଣ୍ଡଳର ସଦସ୍ୟମାନଙ୍କ ମଧ୍ୟରେ ତୀବ୍ର ମତଭେଦ ଉତ୍ପନ୍ନ ହୋଇଛି, ଯାହାକି ରାଜ୍ୟର ସ୍ୱାର୍ଥଦୃଷ୍ଟିରୁ ଗମ୍ଭୀର ଚିନ୍ତାର ବିଷୟ;

ଯେହେତୁ ମନ୍ତ୍ରିମଣ୍ଡଳର ସଦସ୍ୟମାନେ ସାଧାରଣରେ ଏ ପ୍ରକାର ମତ-ଭେଦକୁ ବ୍ୟକ୍ତ କରିସାରିଲେଣି ;

ଯେହେତୁ କେତେକ ମୌଳିକ ବିଷୟ ସମ୍ବନ୍ଧରେ ମନ୍ତ୍ରମଣ୍ଡଳର ଅଧି-କାଂଶ ସଦସ୍ୟ ଓ ପ୍ରଧାନମନ୍ତ୍ରୀଙ୍କ ମତ ଭିନ୍ନ ଭିନ୍ନ ତଥା ବିରୋଧାତ୍ମକ ହୋଇଉଠିଛି ;

ଯେହେତୁ ସଦ୍‌ଭାବନା ଦୃଷ୍ଟିରୁ ମତଭେଦ ଦୂରୀକରଣର ସମସ୍ତ ଚେଷ୍ଟା ବିଫଳ ହୋଇଛି ଓ ବର୍ତ୍ତମାନର ମନ୍ତ୍ରିପରିଷଦ ଜନସାଧାରଣଙ୍କ ବିଶ୍ବାସ ହରାଇବସିଲଣି ବୋଲି ଅଧିକାଂଶ ସଭ୍ୟ ମତ ବ୍ୟକ୍ତ କରିଛନ୍ତି ;

ଯେହେତୁ ଜନସାଧାରଣଙ୍କ ଆର୍ଥିକ ଦୁର୍ଗତି ଦିନକୁ ଦିନ ବଢ଼ିଚାଲିଛି, ସୁତରାଂ ଶୀଘ୍ରାତିଶୀଘ୍ର ତାହାର ନିରାକରଣଲାଗି ସମସ୍ତ ପ୍ରକାର ପ୍ରଚେଷ୍ଟା ହେବା ଅତ୍ୟନ୍ତ ଆବଶ୍ୟକ;

ଯେହେତୁ, ବର୍ତ୍ତମାନ ରାଜ୍ୟର ମନ୍ତ୍ରିମଣ୍ଡଳମଧ୍ୟରେ ଏପରି ପରିସ୍ଥିତି ସୃଷ୍ଟି ହୋଇଛି ଯେ, ନିଃସ୍ୱାର୍ଥପରତା ଓ ଦକ୍ଷତାର ସହିତ ପ୍ରଶାସନ କାର୍ଯ୍ୟ ଚଳାଇବା ଆଉ ସମ୍ଭବ ନୁହେଁ;

ଯେହେତୁ, ଇଦାନୀଂତନ ମନ୍ତ୍ରିମଣ୍ଡଳ ସାମୂହିକଭାବରେ ରାଜ୍ୟର ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱକୁ ଅନୁଭବ କରି କାର୍ଯ୍ୟ ସଞ୍ଚାଳନ କରିବା ଅସମ୍ଭବ; ତା' ଫଳରେ ରାଜ୍ୟର ଉନ୍ନତି, ଶାସନଗତ ବ୍ୟବସ୍ଥା ତଥା ସୌହାର୍ଦ୍ଦ୍ୟସମ୍ପର୍କ ଅତି ସଙ୍କଟପୂର୍ଣ୍ଣ ଅବସ୍ଥାରେ ଆସି ଉପସ୍ଥିତ ହୋଇଛି ।

ତେଣୁ, ରାଜ୍ୟର ଜନସାଧାରଣଙ୍କଦ୍ୱାରା 'ସଦର୍-ଏ-ରିୟାସତ୍'ପରି ଏକ ଦାୟିତ୍ୱପୂର୍ଣ୍ଣ ପଦରେ ନିର୍ବାଚିତ ଶାସନମୁଖ୍ୟ ମୁଁ କରଣ ସିଂହ, ଜାମୁ ଓ କାଶ୍ମୀର ରାଜ୍ୟର ପ୍ରଧାନମନ୍ତ୍ରୀ ଶେଖ୍ ମହମ୍ମଦ୍ ଅବ୍‌ଦୁଲ୍ଲାଙ୍କୁ ବରଖାସ୍ତ କରୁଛି ତଥା ଏଥି ସଙ୍ଗେ ସଙ୍ଗେ ମଧ୍ୟ ତାଙ୍କ ମନ୍ତ୍ରିମଣ୍ଡଳକୁ ଭଙ୍ଗ କରିଦେଉଛି !

ଶ୍ରୀନଗର
୮ ଅଗଷ୍ଟ, ୧୯୫୩

ସ୍ୱା-କରଣ ସିଂହ
'ସଦର୍-ଏ-ରିୟାସତ୍'

ଶେଖ୍ ଅବ୍‌ଦୁଲ୍ଲାଙ୍କ ଦାୟିତ୍ୱହୀନତା, ଅସଂଯତ ଭାଷଣ ତଥା ଅସଙ୍ଗତ ବ୍ୟବହାରଲାଗି 'ସଦର୍-ଏ-ରିୟାସତ୍' ତାଙ୍କୁ ବରଖାସ୍ତ କରିଦେଲେ ।

ଏ. ଡ଼ି. ସି.ଙ୍କର ଫେରି ଆସିବାର ଠିକ୍ ଅଧଘଣ୍ଟାକପରେ ଜନୈକ ପୋଲିସ୍ ଅଧିକାରୀ କେତେକ ପୋଲିସ ସିପାହୀଙ୍କ ଗହଣରେ ଶେଖ୍ ଅବ୍ଦୁଲ୍ଲାଙ୍କ ଡାକବଙ୍ଗଳା ଭିତରକୁ ପ୍ରବେଶ କଲେ । ସେ ସଙ୍ଗେ ସଙ୍ଗେ ଭିତରକୁ ଖବର ପଠାଇଲେ ଏବଂ ଶେଖ୍ ଅବଦୁଲ୍ଲା ବାହାରକୁ ଆସିବା ମାତ୍ରେ ତାଙ୍କୁ ଗିରଫ୍ ପରୱାନା ଦେଖାଇଦେଲେ । ଶେଖ୍ସାହେବ ପ୍ରଥମେ କିଛି ବୁଝିପାରିଲେ ନାହିଁ ; କିନ୍ତୁ ସମ୍ମୁଖରେ କେତେକ ପୋଲିସଙ୍କୁ ଦେଖି କ୍ଷଣକ ମଧ୍ୟରେ ପରିସ୍ଥିତିର ଗମ୍ଭୀରତା ସମ୍ବନ୍ଧରେ ଅନୁମାନ କରିନେଇ ଖୁବ୍ ରାଗିଉଠିଲେ । କିନ୍ତୁ ପୋଲିସ ଅଧିକାରୀ ନୀରବରେ ଛିଡ଼ା ହୋଇ ସବୁକିଛି ଶୁଣିବା ପରେ ଧୀରେ କହିଲେ :

"ମୁଁ ଆଜି କିଛି କରିବାରେ ସମ୍ପୂର୍ଣ୍ଣ ଅସମର୍ଥ । ମୋତେ ଯାହା ଆଦେଶ ହୋଇଛି, ମୁଁ ସେହି ଅନୁସାରେ କାର୍ଯ୍ୟ କରିବାକୁ ଯାଉଛି । ଆପଣ ବର୍ତ୍ତମାନ ବାହାରି ଆସି ମୋଟରରେ ବସିଯାଆନ୍ତୁ !"

ଶେଖ୍ ଅବ୍ଦୁଲ୍ଲାଙ୍କ ଚେହେରା କ୍ରୋଧରେ ତମ ତମ ହୋଇ ଉଠିଲା । ସେ ବୁଦ୍ଧି ବିବେକ ହରାଇ ଏଣୁ ତେଣୁ ବକିବାକୁ ଲାଗିଲେ ଏବଂ ପୋଲିସ ଅଧିକାରୀଙ୍କୁ ଶୀଘ୍ର ସେ ସ୍ଥାନ ତ୍ୟାଗ କରି ଚାଲିଯିବାକୁ ଗର୍ଜନ ତର୍ଜନ ଆରମ୍ଭ କରିଦେଲେ । କିନ୍ତୁ ପୋଲିସ ଅଧିକାରୀ ସେଥିରେ ତିଳେମାତ୍ର ବିବ୍ରତ ନ ହୋଇ ନିଜର ଅସମର୍ଥତା ପ୍ରକାଶପୂର୍ବକ ଶେଖ୍ ସାହେବଙ୍କୁ ଶୀଘ୍ର ଆସି ମୋଟର୍‌ରେ ବସିଯିବା ଲାଗି ବାଧ୍ୟ କଲେ । ପରିଶେଷରେ ଶେଖ୍ ସାହେବ ଏଣୁ ତେଣୁ ବକାବକି କରି ମୋଟରରେ ଯାଇ ବସିପଡ଼ିଲେ । ସେତେବେଳେ ତାଙ୍କ ନିକଟରେ ଆଉ କୌଣସି ଉପାୟ ନ ଥିଲା । ଆଦେଶାନୁସାରେ ଶେଖ୍ ଅବ୍ଦୁଲ୍ଲାଙ୍କୁ ମୋଟରରେ ବସାଇ ପୋଲିସ ଅଧିକାରୀ ରାତାରାତି ୧୬୦ ମାଇଲ ଦୂର ଅତିକ୍ରମ କରି, ଜାମ୍ମୁ ନିକଟସ୍ଥ ଉଧମପୁର ନେଇ, ସେଠାକାର କାରାଗାରରେ ବନ୍ଦୀ କରି ରଖିଲେ ।

ଏଣେ 'ସଦର୍-ଏ-ରିୟାସତ୍' କରଣ ସିଂହଙ୍କ ଆଦେଶାନୁକ୍ରମେ ଶ୍ରୀନଗରରେ ମଧ୍ୟ 'ବୁଲ୍‌ବୁଲେ-ଏ-କାଶ୍ମୀର' ଅଫ୍‌ଜଲ ବେଗ୍‌ଙ୍କ ସମେତ ପାକିସ୍ତାନର ଦଲାଲ ଓ ଶେଖ୍ ଅବଦୁଲ୍ଲାଙ୍କ ମୁଖ୍ୟ ସମର୍ଥକମାନଙ୍କୁ ସେହି ରାତି ମଧ୍ୟରେ ପୋଲିସ ଗିରଫ କରିନେଲେ । ଏହାପରେ ପ୍ରାୟ ରାତି ତିନିଟା-ବେଳେ 'ସଦର୍-ଏ-ରିୟାସତ୍' ବକ୍‌ସି ଗୁଲାମ୍ ମହମ୍ମଦଙ୍କୁ ପ୍ରଧାନମନ୍ତ୍ରୀରୂପେ

ଶପଥ ପାଠ କରାଇ ଅନ୍ୟାନ୍ୟ କାର୍ଯ୍ୟକ୍ରମ ସମ୍ବନ୍ଧରେ ବିସ୍ତୃତ ଆଲୋଚନା କଲେ । ଏ ସମସ୍ତ କାର୍ଯ୍ୟ ଶେଷ ହେବାବେଳକୁ ପ୍ରାୟ ଭୋର ୫ଟା ବାଜିଗଲା, ତା' ପରେ ସେ ପ୍ରସନ୍ନ ବଦନରେ ଭିତରକୁ ପ୍ରବେଶ କଲେ । ଦୈନନ୍ଦିନ ପ୍ରାତଃକ୍ରିୟାରୁ ନିବୃତ୍ତ ହୋଇ ସ୍ନାନ କରିବାପରେ ନିତ୍ୟନୈମିତ୍ତିକ ପୂଜାପାଠରେ ବସିଲେ । ତାଙ୍କ ହୃଦୟରେ ଇହଲୋକ ଓ ପରଲୋକର ଅନୁସନ୍ଧିତ୍ସା ସମାନଭାବରେ ରହିଛି । ତେଣୁ ସେ ଉଭୟ କାର୍ଯ୍ୟର ପରିପୂର୍ତ୍ତି ତା ଲାଗି ସଦା ସର୍ବଦା ପ୍ରଯତ୍ନଶୀଳ ହୋଇଥା'ନ୍ତି । ସେ ତାଙ୍କ ଜୀବନକାଳ ମଧ୍ୟରେ, ସେହିଦିନ ଏକ ଅଭୂତ ଏବଂ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟରେ ପୂର୍ଣ୍ଣ ସଫଳତା ହାସଲ କରିପାରିଥିଲେ ।

ପ୍ରାତଃକାଳରୁ ଜାମ୍ମୁ ଓ କାଶ୍ମୀରର ବେତାର କେନ୍ଦ୍ରରୁ ସମ୍ବାଦ ପ୍ରଚାରିତ ହେଲା: "ସଦର୍-ଏ-ରିୟାସତ୍' ପ୍ରଧାନମନ୍ତ୍ରୀ ଶେଖ୍ ଅବ୍ଦୁଲ୍ଲାଙ୍କୁ ଗିରଫ କଲେ........ବକ୍ସି ଗୁଲାମ୍ ମହମ୍ମଦ ପ୍ରଧାନମନ୍ତ୍ରୀ ଭାବରେ ଶପଥ ଗ୍ରହଣ କଲେ.......... ।"

ଏ ସମ୍ବାଦ ବିଦ୍ୟୁତ୍ ବେଗରେ ଦେଶର ଗୋଟିଏ ପ୍ରାନ୍ତରୁ ଅନ୍ୟପ୍ରାନ୍ତ ପର୍ଯ୍ୟନ୍ତ ଖେଳିଗଲା । ଏହା କେବେ କ'ଣ ସମ୍ଭବ ହୋଇପାରେ ! ବୋଧହୁଏ, କେହି କେବେ ଏକଥା କଳ୍ପନା ସୁଦ୍ଧା କରି ନ ଥିବ କିମ୍ବା ଯଦି କେହି କଳ୍ପନା କରିଥାଏ, ତା' ହେଲେ ନିଜ ଚିନ୍ତାଶକ୍ତିର ଅଳୀକତା ଲାଗି ନିଜେ ନ ହସି ରହିପାରି ନ ଥିବ । ଶେଖ୍ ଅବ୍ଦୁଲ୍ଲାଙ୍କୁ ପ୍ରଧାନମନ୍ତ୍ରୀ ପଦରୁ ବରଖାସ୍ତ କରି ବନ୍ଦୀ କରାଯାଇପାରେ, ଏହା କଳ୍ପନାତୀତ ବିଷୟ ! ଅସମ୍ଭବ ସମ୍ଭବରେ ତଥା ସିଂହ ଶୃଗାଳରେ ପରିଣତ ହେଲା । 'ସଦର୍-ଏ-ରିୟାସତ୍' କରଣ ସିଂହଙ୍କ କାର୍ଯ୍ୟଥିଲା ଇତିହାସର ଅଦ୍ୱିତୀୟ ଉଦାହରଣ ! ସେ ନିଜ କର୍ତ୍ତବ୍ୟପରାୟଣତାର ଅଭୂତ ଉଦାହରଣ ପ୍ରସ୍ତୁତ କରିବା ସଙ୍ଗେ ସଙ୍ଗେ ଏକ ଐତିହାସିକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ କରିବାରେ ସମର୍ଥ ହୋଇଥିଲେ । ଦେଶର ପ୍ରତିଷ୍ଠା ଦେଶର ଗୌରବକୁ ଅକ୍ଷୁର୍ଣ୍ଣ ରଖିବା ସଙ୍ଗେ ସଙ୍ଗେ; ନିଜ ବ୍ୟକ୍ତିତ୍ୱର ନୂତନ ଅଧ୍ୟାୟ ଲେଖି ସେ ଜଗଦ୍ବାସୀଙ୍କୁ ବିସ୍ମୟାଭିଭୂତ କରାଇ ପାରିଥିଲେ । ସେ ଶେଖ୍ ଅବଦୁଲ୍ଲାଙ୍କୁ ଗିରଫକରି କେବଳ କାଶ୍ମୀରର ଭବିଷ୍ୟତ ଗଠନରେ ସମର୍ଥ ହୋଇ ନ ଥିଲେ, ବରଂ ନିଜ ମାତୃଭୂମିକୁ ପାକିସ୍ତାନର କବଳରୁ ରକ୍ଷା କରିପାରିଥିଲେ । ତା' ଫଳରେ ସେ ଭାରତ ଜନନୀଙ୍କର ବରପୁତ୍ର ଭାବରେ ଅଭିହିତ ହେବାର ଗୌରବ ଅର୍ଜନ କରିଛନ୍ତି ! ● ● ●

# ଏଗାର

ଯେଉଁ ଜାମୁର ଅଧିବାସୀମାନେ ଦିନେ 'କଳାପତାକା' ଦେଖାଇ କରଣ ସିଂହଙ୍କ ବିରୁଦ୍ଧରେ ବିକ୍ଷୋଭ ପ୍ରଦର୍ଶନପୂର୍ବକ ତାଙ୍କୁ ଅପମାନିତ କରିଥିଲେ; ସେହିମାନେ ତାଙ୍କୁ ନାନାପ୍ରକାର ଉପାଧିରେ ବିଭୂଷିତ କରିବା ସଙ୍ଗେ ସଙ୍ଗେ ମାସ ମାସ ଧରି ତାଙ୍କ ବୁଦ୍ଧିମତ୍ତା, କର୍ତ୍ତବ୍ୟପରାୟଣତା, ଦୃଢ଼ତା, ଧୀରତା ତଥା ସାହସିକତାର ଭୂରି ଭୂରି ପ୍ରଶଂସା କରି ଆନନ୍ଦରେ ଉତ୍-ଫୁଲ୍ଲ ହୋଇଉଠିଲେ । ସଭା-ସମାଜ, ହାଟ-ବାଟ, ଦୋକାନ-ବଜାର, ସାହି-ପଡ଼ିଶା ତଥା 'ତମ୍ବୀ' ଆଦିପାରି ଗାଁ'ଗଣ୍ଡାରେ ମଧ୍ୟ ଏହି ଆଲୋଚନା ଚାଲିଲା । ନିଜ ନିଜର ବୁଦ୍ଧିବିବେକ ଅନୁସାରେ କେଉଁଠାରେ ଯୁବରାଜ କରଣ ସିଂହଙ୍କୁ ଦକ୍ଷ 'ସଦର-ଏ-ରିୟାସତ୍'ଭାବରେ, ତାଙ୍କର ଗୁଣ ବ୍ୟାଖ୍ୟାନ କରାଯାଇ ପ୍ରଶଂସା କରାଯିବାକୁ ଲାଗିଲା ଏବଂ ଅନ୍ୟ କୌଣସି କୌଣସିଠାରେ ଶୁଣିବାକୁ ମିଳିଲା :

"କି ବୁଦ୍ଧି ପାଇଛୁ ପିଲାଟା; ଏତେ କମ୍ ବୟସରେ କି କାମକରି ଦେଖାଇଲା ଭଲା ? ଏପରି ପେଞ୍ଚ୍ କଲା ଯେ, 'ପୁଅ' (ଶେଖ୍ ଅବଦୁଲ୍ଲାଙ୍କୁ ତାଚ୍ଛଲ୍ୟଭାବରେ 'ପୁଅ' ବିଶେଷଣରେ ବିଭୂଷିତ କରାଗଲା ) ଏକାଥରକେ 'ଚିତ୍' ! ସବୁ ବାହାଦୁରୀ କୁଆଡ଼େ ଫସର ଫାଟିଲା, ଏଥର ଜେଲରେ ପଡ଼ି ଚଡ଼ି ହଡ଼ିବ ।

ଅନ୍ୟ କେହି କହିଲା :

"ପୁଅ ତ ବହୁ ଆଗରୁ ଜେଲ୍‌ରେ ପଡ଼ି ପଡ଼ି ସଡ଼ି ଥିଲା ; ପୁରୁଣା ଅଭ୍ୟାସ ଅଛି, ବେଶୀ କଷ୍ଟ ହେବ ନାହିଁ । ଆରେ··· ଭାଇ ! ଶାସନ କରିବାକୁ ହେଲେ ବଂଶଗତ ଯୋଗ୍ୟତା ଆବଶ୍ୟକ ! ଶେଖ୍ ଅବଦୁଲ୍ଲା ପରି ପାକିସ୍ତାନୀ ଦଲାଲ୍ ଯଦି ହୁକୁମତ୍ କରିପାରନ୍ତେ ତା'ହେଲେ ତ, କଥା

ଶେଷ ! ସେ'ତ ଆଜ ପର୍ଯ୍ୟନ୍ତ ପଣ୍ଡିତ ଜବାହରଲାଲ ନେହରୁଙ୍କ ମେହେର୍‌ବାନୀରୁ ଟେକିଥିଲା; ନୋହିଲେ, ମହାରାଜା ହରି ସିଂହ ତ ତା'ର ଦଫାରଫା ସାରି ଦେଇଥିଲେ । କେବେଠାରୁ 'କାଶ୍ମୀର ସିଂହ' ଶେଷ ପାଇଯାଇଥା'ନ୍ତା । କିନ୍ତୁ କହିବା କ'ଣ ? ଯୁଗ ତ ସେଇଆ --"

ଅନ୍ୟ କେହି କହିବାକୁ ଲାଗିଲେ

"ଦେଖ ତ, ପିଲ୍‌ଟା ( କରଣ ସିଂହଙ୍କ ପ୍ରତି ସ୍ନେହସୂଚକ ସମ୍ବୋଧନ ) କି' ଚମତ୍କାର ଉପାୟରେ ପ୍ରତିଶୋଧ ନେଲା । କମାଲ୍ କରିଦେଲା; ଠିକ୍ ପୁତ୍ରଧର୍ମ ପାଳନ କରିଛି । ସାବାସ୍ ଯୁବରାଜ କରଣ ସିଂହ ! ମହାରାଜ ଏ ଖବର ଶୁଣି ଆନନ୍ଦରେ ବିଭୋର ହୋଇ ଉଠୁଥିବେ । ଡୋଗ୍ରାମାନଙ୍କ ମାନସମ୍ମାନ ରକ୍ଷା କରିବା ସଙ୍ଗେ ସଙ୍ଗେ ନିଜ ବାହାଦୁରି ମଧ୍ୟ ଦେଖାଇ ଦେଲା !"

ଏହିପରିଭାବରେ ଅନେକ ଦିନ ପର୍ଯ୍ୟନ୍ତ ଆଲୋଚନା ଚାଲିଲା ଏବଂ ତା'ପରେ ସେ ଯେବେ ଜାମ୍ମୁ ଆସିଲେ, ସେତେବେଳେ ତାଙ୍କର ସ୍ୱାଗତ ସମ୍ବର୍ଦ୍ଧନା ଉଦ୍ଦେଶ୍ୟରେ ଅଜଳ୍ପମାପ୍ଣ ସମାବେଶ ଅନୁଷ୍ଠିତ ହେଲା । ତା' ଦେଖି ମନେହେଲା —ଜାମ୍ମୁର ଆବାଳବୃଦ୍ଧବନିତାଙ୍କର ସେ (ଯୁବରାଜ କରଣ ସିଂହ) ନୟନର ପିତୁଳୀ !

'କର୍ମଣ୍ୟେ ବାଧିକାରସ୍ତେ ମା ଫଳେଷୁ କଦାଚନ' , ଭଗବାନ ଶ୍ରୀକୃଷ୍ଣ 'ଶ୍ରୀମଦ୍‌ଭଗବଦ୍ ଗୀତା'ରେ ଯେଉଁ ବାଣୀ ଅର୍ଜ୍ଜୁନଙ୍କୁ ଶୁଣାଇଥିଲେ ତଦନୁସାରେ ଯୁବରାଜ କରଣ ସିଂହ ନିଜର ମନୋବଳ ସଙ୍ଗଠନ କରି କାର୍ଯ୍ୟରେ ତତ୍ପର ହୋଇଉଠିଲେ । ଭଗବାନ ତାଙ୍କ କାର୍ଯ୍ୟରେ ପ୍ରସନ୍ନ ହୋଇ ତାଙ୍କୁ ସୁଫଳ ପ୍ରଦାନ କରୁଥିଲେ । ତେଣୁ କରଣ ସିଂହ ପୁଣି ପ୍ରଭୁଙ୍କ ଚରଣାରବିନ୍ଦରେ ପ୍ରଣାମ ନିବେଦନ ନିମିତ୍ତ ସପତ୍ନୀକ ପଦବ୍ରଜରେ 'ଅମରନାଥ' ଯାତ୍ରା କଲେ । ସେଠାରୁ ଫେରିବାପରେ ମାତା ତାରଦେବୀଙ୍କ ଧହିତ ଭାରତର ଅନ୍ୟାନ୍ୟ ତୀର୍ଥସ୍ଥାନ ପରିଦର୍ଶନ କଲେ । ତା'ପରେ ସେ ଅନ୍ତରରେ ଓ ବାହାରେ ଅପାର ଶାନ୍ତି ଅନୁଭବ କଲେ । ଏହାପରେ ସେ ଜାମ୍ମୁ, କାଶ୍ମୀର ଓ ଲଦାଖ ଅଞ୍ଚଳର ପରିଦର୍ଶନରେ ବାହାରି ପଡ଼ିଲେ । ସେହି ପରିଦର୍ଶନରେ ଯାଇ ସେ ଲୋକମାନଙ୍କ 'ହାରଗୁହାରି' ଶୁଣି, ତା'ର ସମାଧାନଲାଗି ଆଶ୍ୱାସନା ଦେଲେ । ସେ ସେହି ଯାତ୍ରାରେ ଜନସାଧାରଣଙ୍କ ଦୁର୍ଦ୍ଦଶା ଦେଖି ଚିନ୍ତିତ ହୋଇଗଲେ ।

ରାଜ୍ୟର ଉନ୍ନତିକଳ୍ପେ ଭାରତରୁ କୋଟି କୋଟି ଟଙ୍କା ସାହାଯ୍ୟ ଆକାରରେ ମିଳୁଥିଲେ ମଧ୍ୟ ଜନତାର ଦୁର୍ଦ୍ଦଶା କ୍ଷୀଣହେବା ପରିବର୍ତ୍ତେ ବୃଦ୍ଧିପାଉଛି କିପରି ? ସେ ସାହାଯ୍ୟ ଟଙ୍କା ଗଲା କୁଆଡ଼େ ? କେଉଁମାନଙ୍କ ମଧ୍ୟରେ ତା'ର ବଣ୍ଟନ କରାହୋଇଛି ? ତା ସଙ୍ଗେ ସଙ୍ଗେ ସନ୍ ୧୯୪୮ରେ ଯେଉଁ ରାଜ୍ୟର ଆୟ ଥିଲା ଛ' କୋଟି ପଚିଶ ଲକ୍ଷ, ତାହା ସନ୍ ୧୯୫୧ ସାଲ ବେଳକୁ ଚାରି କୋଟି ପଚିଶ ଲକ୍ଷରେ ପରିଣତ ହେଲା କିପରି ? ଯେଉଁ ଶେଖ୍ ଅବଦୁଲ୍ଲା ନିଜକୁ କେବଳ ଜନତାର ସେବକ ନୁହେଁ, ସେମାନଙ୍କର ସଂରକ୍ଷକ ବୋଲି ଡେଙ୍ଗୁରା ପିଟୁଥିଲେ, ତାଙ୍କର ଶାସନ କାଳରେ ଏ ପ୍ରକାର ଆର୍ଥିକ ଦୁର୍ଗତି ସମ୍ଭବ ହେଲା କିପରି ? ଧୀରେ ଧୀରେ ଶେଖ୍ ଅବଦୁଲ୍ଲାଙ୍କର ଗୁପ୍ତତଥ୍ୟ ପ୍ରକାଶ ପାଇବାକୁ ଲାଗିଲା ଏବଂ ଯୁବରାଜ କରଣ ସିଂହ ମଧ୍ୟ ଅବ୍‌ଦୁଲ୍ଲାଙ୍କ ଗୁମର ଜନତାଜନାର୍ଦ୍ଦନ ସମ୍ମୁଖରେ ଖୋଲିବାକୁ ଆରମ୍ଭ କଲେ ।

ବକ୍‌ଶୀ ଗୁଲାମ୍ ମହମ୍ମଦ ପ୍ରଧାନମନ୍ତ୍ରୀଭାବରେ ରାଜ୍ୟର କ୍ଷମତା ସମ୍ଭାଳି ନେବାରେ ନିଜକୁ ପ୍ରସ୍ତୁତ କରିନେଇଥିଲେ । କିନ୍ତୁ ସେ କିଛି ଦିନ ଲାଗି କେବଳ ଅସ୍ଥାୟୀଭାବରେ ପ୍ରଧାନମନ୍ତ୍ରୀ ପଦରେ ପ୍ରତିଷ୍ଠିତ ହୋଇ-ଥିଲେ । ଗୋଟିଏ ନିର୍ଦ୍ଦିଷ୍ଟ ଅବଧି ମଧ୍ୟରେ ବିଧାନସଭାର ନେତାଭାବରେ ନିର୍ବାଚିତ ହେବାର ଆବଶ୍ୟକତା ଥିଲା । ତା'ପରେ ସେ ପ୍ରଧାନମନ୍ତ୍ରୀରୂପେ ସ୍ଥାୟୀ ହେବା ବିଧାନସମ୍ମତ ପନ୍ଥା ! ବକ୍‌ଶୀ ସାହେବ ସେହି ସମୟ ମଧ୍ୟରେ ବିଧାନସଭାର ନେତାରୂପେ ନିର୍ବାଚିତ ହେବାଲାଗି ପ୍ରସ୍ତୁତ ହୋଇଗଲେ । ବିଧାନସଭାର ବୈଠକ ଆରମ୍ଭ ହେବାମାତ୍ରେ ତାଙ୍କୁ ନେତାରୂପେ ନିର୍ବାଚିତ କରାଯିବାଲାଗି ପ୍ରସ୍ତାବ ଆଗତ ହେଲା ଏବଂ ସେ ସର୍ବସମ୍ମତିକ୍ରମେ ନେତା ନିର୍ବାଚିତ ହେଲେ । ସଭ୍ୟମାନଙ୍କର ପୂର୍ଣ୍ଣ ଆସ୍ଥା ଲାଭ କରି ବକ୍‌ଶୀ ଗୁଲାମ୍ ମହମ୍ମଦ ନିଜର କାର୍ଯ୍ୟକୁଶଳତା ତଥା ସକ୍ରିୟତାର ପରିଚୟ ଦେଇଥିଲେ । ସାମ, ଦାନ, ଭେଦ, ଦଣ୍ଡ—ଏହି ନୀତିରେ ସେ ଶାସନକଳ ପରିଚାଳନା କଲେ । ଗୋଟିଏ ଦିଗରେ ପାକିସ୍ତାନୀ ଗୁଣ୍ଡା ଓ ଅନୁପ୍ରବେଶକାରୀଙ୍କୁ ନିର୍ଦ୍ଦୟଭାବରେ ଦମନ କଲେ ଏବଂ ଅନ୍ୟ ଦିଗରେ ଲେଖି ଓ ଚତୁର ବ୍ୟକ୍ତିମାନଙ୍କୁ 'କୋଟା, ପରମିଟ୍ ଓ ଠିକା ଦେଇ କରାୟତ୍ତପୂର୍ବକ ଭଦ୍ର ଓ ସୁଶୀଳ ବ୍ୟକ୍ତିମାନଙ୍କୁ ଯଥାଶକ୍ତି ସାହାଯ୍ୟ କରି ସମ୍ମାନିତ କଲେ । ବକ୍‌ଶୀ ସାହେବଙ୍କ ତାଲିକାରେ ଯେଉଁମାନଙ୍କ ନାମ 'ଅତ୍ୟନ୍ତ ବିପଜ୍ଜନକ' ବୋଲି ଲିପିବଦ୍ଧ ହୋଇଥିଲା;

ସେମାନଙ୍କ ମଧ୍ୟରୁ କେତେଜଣଙ୍କୁ ଜେଲ୍‌ରେ ବନ୍ଦୀ କରାଇଦେଲେ ଏବଂ ଅନ୍ୟ କେତେକଙ୍କୁ ସିଧାସଳଖ 'ପାକିସ୍ତାନ'କୁ ଟିକଟ କଟାଇ ଦେବାର ଯୋଗାଡ଼ କରିଦେଲେ । ଦେଖୁ ଦେଖୁ ସମଗ୍ର ରାଜ୍ୟର ବାତାବରଣ ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଗଲା । ସଂଖ୍ୟାଲଘୁ ସଂପ୍ରଦାୟଙ୍କ ଭୟ ଦୂରୀଭୂତ ହେଲା; ସେମାନେ ସାହସର ସହିତ ଯେକୌଣସି କାର୍ଯ୍ୟାନୁଷ୍ଠାନ କରିବାରେ ଲାଗିପଡ଼ିଲେ । ସେମାନଙ୍କ ମନରୁ ଶେଖ୍ ଅବଦୁଲ୍ଲାଙ୍କ ସମର୍ଥକମାନଙ୍କ ଦୌରାତ୍ମ୍ୟର ଆତଙ୍କ ଦୂର ହେଲା । ବିଶେଷତଃ କାଶ୍ମୀରରେ ଏକ ନୂତନ ଯୁଗର ଅଭ୍ୟୁଦୟ ହେବା ସଙ୍ଗେ ସଙ୍ଗେ ପାକିସ୍ତାନୀମାନଙ୍କ ଭୟ ଦୂର ହେବାକୁ ଲାଗିଲା । ବକ୍‌ସି ଗୁଲାମ୍ ମହମ୍ମଦଙ୍କ ମନ୍ତ୍ରିମଣ୍ଡଳରେ ଗୁଲାମ୍ ମହମ୍ମଦ ସାଦିକ୍, ମୀର୍ କାଶିମ୍, ଶ୍ୟାମଲାଲ ସରଫ୍ ଓ ଗିରିଧାରୀଲାଲ ଡୋଗ୍ରା ସହଯୋଗୀ ମନ୍ତ୍ରୀରୂପେ କାର୍ଯ୍ୟଭାର ଗ୍ରହଣ କଲେ ।

ସନ୍ ୧୯୦୭ ସାଲରେ କାଶ୍ମୀରର 'ନର୍ଓ୍ୱାର୍‌ଦଲ୍ ମହଲା'ରେ ବକ୍‌ସି ଗୁଲାମ୍ ମହମ୍ମଦ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ଦର୍ଜି ବ୍ୟବସାୟୀ ଥିଲେ ଏବଂ ମା' କୌଣସି ଏକ ସମ୍ଭ୍ରାନ୍ତ ପରିବାରରେ 'ଆୟା' ରୂପେ କାର୍ଯ୍ୟ କରୁଥିଲେ । ତାଙ୍କର ଶିକ୍ଷାଗତ ଯୋଗ୍ୟତା ଦଶମ ଶ୍ରେଣୀ ପର୍ଯ୍ୟନ୍ତ ଥିଲା । ତା'ପରେ ସେ ଚାକିରି ଅନ୍ୱେଷଣ କରିବାରେ ଅନେକଆଡ଼େ ବୁଲିଲେ । ଅନେକ ଦିନ ପରେ ଶ୍ରୀନଗରରେ କୌଣସି ଏକ 'ଟେଲ ଏଜେନ୍‌ସି'ର ଗୁମାସ୍ତା କାର୍ଯ୍ୟରେ ନିଯୁକ୍ତ ହେଲେ । ସେ ଅଳ୍ପ କେତେ ଦିନଲାଗି ଖ୍ରୀଷ୍ଟିୟାନ ଧର୍ମରେ ଦୀକ୍ଷିତ ହୋଇଥିଲେ । ତା'ପରେ ସେ ଶେଖ୍ ଅବଦୁଲ୍ଲାଙ୍କ ସହିତ ରାଜନୀତିରେ ଯୋଗଦେଇ ସନ୍ ୧୯୩୦ ସାଲଠାରୁ ସକ୍ରିୟ ରାଜନୀତିରେ ଭାଗ ନେବାକୁ ଆରମ୍ଭ କଲେ । ସେ ସଦାସର୍ବଦା ଶେଖ୍ ଅବଦୁଲ୍ଲାଙ୍କ ଚିନ୍ତାଧାରାସହିତ ଏକମତ ହୋଇପାରୁ ନ ଥିଲେ ହେଁ, ତାଙ୍କ ବିରୋଧରେ ଛିଡ଼ା ହେବାକୁ କେବେହେଲେ ସାହସ କରୁ ନ ଥିଲେ । ତଥାପି ସେ ଉପଯୁକ୍ତ ଅବସରର ପ୍ରତୀକ୍ଷାରୁ ବିରତ ହୋଇ ନ ଥିଲେ ।

ଧୀରେ ଧୀରେ ଜାମ୍ମୁ ଓ କାଶ୍ମୀର ରାଜ୍ୟରେ ବକ୍‌ସି ଗୁଲାମ୍ ମହମ୍ମଦଙ୍କ ପ୍ରତିଷ୍ଠା ବୃଦ୍ଧି ପାଇଲା ଏବଂ ଭାରତର ଅନ୍ୟାନ୍ୟ ଅଞ୍ଚଳରେ ତାଙ୍କର ସୁନାମ ଓ କାର୍ଯ୍ୟକଳାପର ଗୌରବ ପରିବ୍ୟାପ୍ତ ହେବାକୁ ଲାଗିଲା । ସେ ମଧ୍ୟ ଗୁରୁଗମ୍ଭୀର ସ୍ୱରରେ ଘୋଷଣା କଲେ :

"ଯେପର୍ଯ୍ୟନ୍ତ ସୂର୍ଯ୍ୟ-ଚନ୍ଦ୍ର ରଶ୍ମି ବିକିରଣ କରୁଛନ୍ତି, ସେପର୍ଯ୍ୟନ୍ତ କାଶ୍ମୀର ଭାରତର ଅଙ୍ଗ ହୋଇ ରହିବ । ବିଶ୍ୱର କୌଣସି ଶକ୍ତି ଏହି ସମ୍ପର୍କକୁ ଛିନ୍ନ କରି ପାରିବେ ନାହିଁ । କାଶ୍ମୀର ଭାରତର ଅବିଚ୍ଛେଦ୍ୟ ଅଙ୍ଗ ଏବଂ ଏହା ଚିରଦିନଲାଗି ସ୍ଥାୟୀ ହୋଇ ରହିବ···ଇତ୍ୟାଦି ।"

କେବଳ ସେତିକି ନୁହେଁ, ସନ୍ ୧୯୫୭ ସାଲରେ ଜାମ୍ମୁ ଓ କାଶ୍ମୀର ରାଜ୍ୟର ସଂବିଧାନ ପ୍ରସ୍ତୁତ କରାଯାଇ ସେଥିରେ ସ୍ପଷ୍ଟଭାବରେ ଉଲ୍ଲେଖ ରହିଲା :

"ଜାମ୍ମୁ ଓ କାଶ୍ମୀର ରାଜ୍ୟ ଭାରତୀୟ ସଂଘର ଅଭିନ୍ନ ଅଙ୍ଗ; ଏହା ଚିର-ଦିନଲାଗି ଭାରତର ହୋଇ ରହିବ ।"

ସନ୍ ୧୯୫୭ ସାଲ ମାର୍ଚ୍ଚ ମାସରେ ଜାମ୍ମୁ ଓ କାଶ୍ମୀରରେ ଦ୍ୱିତୀୟ ନିର୍ବାଚନ ଆରମ୍ଭ ହେଲା । ବକ୍ଷ୍ଶୀଜୀ ପୁଣି ଥରେ ରାଜ୍ୟର ପ୍ରଧାନମନ୍ତ୍ରୀ ପଦରେ ନିର୍ବାଚିତ ହେଲେ ଏବଂ କରଣ ସିଂହ ମଧ୍ୟ 'ସଦର୍-ଏ-ରିୟାସତ୍'ରୂପେ କାର୍ଯ୍ୟଭାର ଗ୍ରହଣ କଲେ । ଜାମ୍ମୁ ଓ କାଶ୍ମୀରର ଶାସନ କ୍ଷେତ୍ରରେ ଏକ ନୂତନ ଅଧ୍ୟାୟ ଆରମ୍ଭ ହୋଇ ପ୍ରଗତିର ଚକ ଘୂରିବାକୁ ଲାଗିଲା । ନୂତନ ନୂତନ ଯୋଜନାର ଶ୍ରୀଗଣେଶ ହେଲା ଏବଂ ଦାରିଦ୍ର୍ୟ ଓ ବେକାରି ସମସ୍ୟାର ଦୂରୀକରଣ ଦିଗରେ ଶାସକବର୍ଗଙ୍କ ସକ୍ରିୟତା ପରିଲକ୍ଷିତ ହେଲା । ମୋଟ ଉପରେ କହିବାକୁ ଗଲେ 'ସଦର୍-ଏ-ରିୟାସତ୍'ଙ୍କର ପୂର୍ଣ୍ଣ ସମର୍ଥନ ଓ ସହଯୋଗ ଲାଭ କରି ବକ୍ଷ୍ଶୀଜୀ ରାଜ୍ୟର ସମୁନ୍ନତିରେ ଅଗ୍ରସର ହେଲେ । ଦିନକୁ ଦିନ ଆଶାର ନୂତନ କିରଣ ଝଲସି ଉଠିଲା ଏବଂ ଜନତା ଜନାର୍ଦ୍ଦନ ମଧ୍ୟ ସେହି ନୂତନ କିରଣରେ ଉଦ୍ଭାସିତ ହୋଇ ଆନନ୍ଦରେ ବିଭୋର ହୋଇଉଠିଲେ ।



## ଚାରି

ପ୍ରତିଭା ହେଉଛି ଈଶ୍ୱରଦତ୍ତ ଗୁଣ; କିନ୍ତୁ ତା'ର ପୂର୍ଣ୍ଣବିକାଶ ପ୍ରତିଭାବାନ୍ ବ୍ୟକ୍ତି ଉପରେ ନିର୍ଭର କରେ । ପ୍ରକୃତରେ ଦେଖିବାକୁ ଗଲେ, ସଂସାରରେ ପ୍ରତିଭାସମ୍ପନ୍ନ ବ୍ୟକ୍ତିଙ୍କ ସଂଖ୍ୟା ନିତାନ୍ତ ଅଳ୍ପ ଏବଂ ସେହି ଅଳ୍ପସଂଖ୍ୟକ ବ୍ୟକ୍ତିମାନଙ୍କ ମଧ୍ୟରେ ଏପରି ଅନେକ ବ୍ୟକ୍ତି ଅଛନ୍ତି; ଯେଉଁମାନେ ନିଜ ପ୍ରତିଭାର ସମୁଚିତ ବିକାଶ କରି, ନିଜର ଉନ୍ନତି କରିବା ସଙ୍ଗେ ସଙ୍ଗେ ଦେଶ ଓ ଦଶର ଉନ୍ନତି କରିବାରେ ସମର୍ଥ ହୁଅନ୍ତି ଏବଂ ତତ୍ ସଙ୍ଗେ ସଙ୍ଗେ ଦେଶର ଉତ୍ଥାନ ଓ ପୂର୍ଣ୍ଣବିକାଶ ଦିଗରେ ମଧ୍ୟ ସେମାନେ ସଦାସର୍ବଦା ଯତ୍ନଶୀଳ ହୋଇଥାନ୍ତି । ଏଭଳି ବ୍ୟକ୍ତିମାନଙ୍କ ତାଲିକାରେ ଯୁବରାଜ କରଣ ସିଂହଙ୍କ ନାମ ଆଦରର ସହିତ ଉଲ୍ଲେଖ କରାଯାଇପାରେ । ଭାରତରେ ତାଙ୍କ ପରି ପ୍ରତିଭାବାନ୍, ବିବେକଶୀଳ, କର୍ତ୍ତବ୍ୟନିଷ୍ଠ ଓ କର୍ମଠ ରାଜକୁମାର ପ୍ରାୟ କେହି ନାହାନ୍ତି ବୋଲି କହିଲେ, ଅତ୍ୟୁକ୍ତି ହେବ ନାହିଁ । ସମସ୍ତ ସାଂସାରିକ ଦୁର୍ଗୁଣଠାରୁ ଦୂରରେ ରହି, ଏତେ ଅଳ୍ପ ସମୟରେ କରଣ ସିଂହ ଯେଉଁ କର୍ତ୍ତବ୍ୟପରାୟଣତା, ଆଗ୍ରହ-ବିଗ୍ରହ, ନୀତି ନିୟମ ଓ ଧର୍ମ-କର୍ମର ଉଦାହରଣ ପ୍ରସ୍ତୁତ କରିପାରିଛନ୍ତି, ତାହା ଯେ କେବଳ ପ୍ରଶଂସନୀୟ ତା ନୁହେଁ, ଭାବୀ ବଂଶଧରମାନଙ୍କ ପକ୍ଷେ ଦେଦୀପ୍ୟମାନ ସୂର୍ଯ୍ୟକିରଣ ପରି ଅତି ସୁସ୍ପଷ୍ଟ ଏବଂ ସମୁଜ୍ଜ୍ୱଳ । ଜାମ୍ମୁ ଓ କାଶ୍ମୀରର ପ୍ରବଳ ରାଜନୈତିକ ଘୂର୍ଣ୍ଣିବାତ୍ୟା ସମୟରେ ସମସ୍ତ ରାଜକାର୍ଯ୍ୟରେ ବ୍ୟସ୍ତଥାଇ ମଧ୍ୟ ସେ ବି.ଏ. ଓ ଏମ. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇପାରିଥିଲେ । ସେ ଏମ୍. ଏ. ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରିବା ସଙ୍ଗେ ସଙ୍ଗେ ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ଏକ ସ୍ୱତନ୍ତ୍ର 'ରେକର୍ଡ' ରଖି ପାରିଥିଲେ । ତାଙ୍କର ଭାଷାରେ କହିବାକୁ ଗଲେ :

"ଅନ୍ୟମାନଙ୍କୁ ଆସ୍ୱସ୍ତ କରିବା ପୂର୍ବରୁ ନିଜକୁ ସୁସଙ୍ଗଠିତ କରିବା ଉଚିତ । ଯେ ପର୍ଯ୍ୟନ୍ତ ଆଧାର ସୁଦୃଢ଼ ନ ହୋଇଛି, ସେ ପର୍ଯ୍ୟନ୍ତ କୌଣସି କାର୍ଯ୍ୟ ହୋଇପାରିବ ନାହିଁ । ଆତ୍ମିକ ଉପଲବ୍‌ଧି ମନୁଷ୍ୟର ଜୀବନଗଠନ ପକ୍ଷରେ ନିତାନ୍ତ ଆବଶ୍ୟକ । ତାହା ବ୍ୟତୀତ ମନୁଷ୍ୟର କାର୍ଯ୍ୟରେ ପରିପକ୍ୱତା ଆସିପାରେ ନାହିଁ ।"

କରଣ ସିଂହଙ୍କର ଏହି ମନ୍ତବ୍ୟରୁ ତାଙ୍କର ଆତ୍ମିକ ବଳ ତଥା ଗଭୀର ଜ୍ଞାନର ଉପଲବ୍‌ଧି ସମ୍ବନ୍ଧରେ ସହଜରେ ଅନୁମାନ କରାଯାଇପାରେ । ୧୯୬୭ ସାଲରେ ଶ୍ରୀନଗରଠାରେ ଅନୁଷ୍ଠିତ 'ନିଖିଳ ଭାରତ ଦାର୍ଶନିକ ସମ୍ମେଳନ'ର ଉଦ୍‌ଘାଟନ ଉତ୍ସବରେ ସେ ଏହି ମନ୍ତବ୍ୟ ପ୍ରକାଶ କରିଥିଲେ । ଭାଷଣ ପ୍ରସଙ୍ଗରେ ସେ ଆହୁରି ମଧ୍ୟ କହିଥିଲେ—

ସେହି ପରମାତ୍ମାଙ୍କ ସମ୍ବନ୍ଧରେ ସମ୍ୟକ୍ ଜ୍ଞାନ ଅର୍ଜନ ତଥା ସରଳ ଉପାସ୍ୟରେ ତାଙ୍କର ସାନ୍ନିଧ ଲାଗି ଦାର୍ଶନିକ ସମାଜ, ବିଶ୍ୱ ଜନତାର କଲ୍ୟାଣ ଉଦ୍ଦେଶ୍ୟରେ ନାନାମାର୍ଗର ଯେଉଁ ଅବତାରଣା କରିଛନ୍ତି; ସେଥିରେ କାଶ୍ମୀରର ସହଯୋଗ ଅତି ଉଚ୍ଚ କୋଟିର ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଖ୍ରୀ.ପୂ. ପ୍ରଥମ ଶତାବ୍ଦୀରେ ଶ୍ରୀନଗରଠାରୁ ପଚିଶ ମାଇଲ ଦୂରବର୍ତ୍ତୀ ସମ୍ରାଟ କନିଷ୍କଙ୍କଦ୍ୱାରା ପ୍ରତିଷ୍ଠିତ 'କନିଷ୍କପୁର'ରେ ବୌଦ୍ଧଧର୍ମର ଚତୁର୍ଥ ଅଧିବେଶନ ଅନୁଷ୍ଠିତ ହୋଇଥିଲା । କେବଳ ସେତିକ ନୁହେଁ କାଶ୍ମୀର ଦିନେ ବୌଦ୍ଧ ମତବାଦର ପ୍ରଚାର ତଥା ପ୍ରସାରର ପ୍ରଧାନ କେନ୍ଦ୍ର ଥିଲା । ଚୀନ ଓ ତିବ୍ବତ ଆଦି ଦେଶରେ ବୌଦ୍ଧଧର୍ମର ପ୍ରଚାର କାର୍ଯ୍ୟ କେବଳ କାଶ୍ମୀର ଯୋଗୁଁ ହିଁ ସମ୍ଭବ ହୋଇପାରିଥିଲା । ମହାନ୍ ଚିନ୍ତାଶୀଳ ଆଚାର୍ଯ୍ୟ ନାଗାର୍ଜ୍ଜୁନ ଏହି ଦେଶରେ ଜନ୍ମଗ୍ରହଣ କରି ନିଜର ଜ୍ଞାନଗରିମାରେ ବିଶ୍ୱବାସୀଙ୍କୁ ବିସ୍ମୟାଭିଭୂତ କରାଇପାରିଥିଲେ । କେବଳ ସେତିକ ନୁହେଁ, ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରେ ଏହି ପବିତ୍ର ଭୂମିରେ ଶୈବ ଦର୍ଶନର ଉତ୍‌ଥାନ ସମ୍ଭବ ହୋଇଥିଲା । ଉକ୍ତ ଦର୍ଶନର ନୂତନ ପ୍ରଭାବ ଫଳରେ ବୌଦ୍ଧମାନେ ଆତଙ୍କିତ ହୋଇଉଠିଥିଲେ ଏବଂ ସମୟକ୍ରମେ ତାହା ଆଶାଜନକଭାବରେ ସମୁନ୍ନତ ହୋଇପାରିଥିଲା । ବାସଗୁପ୍ତ କଲ୍ଲଟ, ସୋମାନନ୍ଦ ଓ ଉତ୍ପଳାଚାର୍ଯ୍ୟ ପ୍ରଭୃତି ଚିନ୍ତାଶୀଳ ବ୍ୟକ୍ତିମାନେ ଏହାର

ପ୍ରବର୍ତ୍ତକରୂପେ ସୁଖ୍ୟାତି ଅର୍ଜନ କରିଥିଲେ । ସେହି ସୁଜ୍ଞାମୀ ଦାର୍ଶନିକ-ମାନଙ୍କୁ ସ୍ମରଣ କରି ଆଜି ଆମ୍ଭେମାନେ ଗୌରବାନ୍ୱିତ ହେଉଥାଇଁ । ଖ୍ରୀଷ୍ଟୀୟ ଦଶମ ଶତାବ୍ଦୀର ମହାନ୍ ଦାର୍ଶନିକ ଅଭିନବ ଗୁପ୍ତ ଏହି ପବିତ୍ର ଭୂମିରେ ଜନ୍ମଗ୍ରହଣ କରି ଶୈବ-ଦର୍ଶନରୂପକ ଶୁଦ୍ଧ ସୁବର୍ଣ୍ଣକୁ ସୁଗନ୍ଧଯୁକ୍ତ କରିବାରେ ସମର୍ଥ ହୋଇଥିଲେ ।

"ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ଶତାବ୍ଦୀର ମଧ୍ୟଭାଗରୁ ଇସ୍‌ଲାମ୍‌ଧର୍ମର ପ୍ରବର୍ଦ୍ଧମାନ ପ୍ରଭାବ ଓ ବିକାଶ ଫଳରେ 'ସୂଫୀ' ମତରେ ଏକ ନୂତନ ରୂପ ପ୍ରତିଭାତ ହେଲା । ସୁଦୂର ଆରବ ଓ ପାରସ୍ୟ ଦେଶରୁ 'ସୂଫୀ' ଫକୀରମାନେ ଈଶ୍ୱରଙ୍କ ସାନ୍ନିଧ୍ୟଲାଭ ଉଦ୍ଦେଶ୍ୟରେ ଆସି 'ପ୍ରେମମାର୍ଗ'ର ଯେଉଁ ବ୍ୟାଖ୍ୟାନ କରିଥିଲେ, ତାହା ବାସ୍ତବିକ ପ୍ରଶଂସନୀୟ ତଥା ଅନୁକରଣୀୟ ମଧ୍ୟ । ଏହିପରିଭାବରେ ଦେଖିବାକୁ ଗଲେ—ଭାରତୀୟ ଦର୍ଶନରୂପୀ ବିଶାଳ ସୌଧକୁ ଆହୁରି ଭବ୍ୟ ଓ ମନୋଜ୍ଞ କରିବାରେ କାଶ୍ମୀରର ସହଯୋଗ ବିଶେଷ ଉଲ୍ଲେଖନୀୟ ! ଏଣୁ ଆଜି ଏଠାରେ ସମବେତ ବିଦ୍ୱାନ୍‌ମାନଙ୍କଠାରେ ମୋର ନିବେଦନ, ଯଦି ଆପଣମାନେ ଆଜିର ମାନବସମାଜର ଦୈନନ୍ଦିନ ସମସ୍ୟାଗୁଡ଼ିକପ୍ରତି ବିଶେଷ ଦୃଷ୍ଟିଦେଇ ତା'ର ସମାଧାନ ଦିଗରେ କାର୍ଯ୍ୟ କରିବାରେ ସମର୍ଥ ହୁଅନ୍ତେ; ତା' ହେଲେ ମାନବସଭ୍ୟତାର ପ୍ରଭୂତ କଲ୍ୟାଣ ସାଧିତ ହୁଅନ୍ତା । ଏହି ଚିରନ୍ତନ ସତ୍ୟର ଉପଲବ୍ଧିଦ୍ୱାରା ଆପଣମାନେ ଅସହାୟ ମାନବସମାଜକୁ ଏପରି ଏକ ସମୃଦ୍ଧ ସମାଜରେ ପରିଣତ କରିବାରେ ସମର୍ଥ ହେବେ, ଯାହା ଫଳରେ ଆମ୍ଭେମାନେ ଭ୍ରାତୃତ୍ୱର ନିଗଡ଼ ବନ୍ଧନରେ ଆବଦ୍ଧ ହୋଇ ବାସ୍ତବିକ ସୁଖ ଓ ସୌଭାଗ୍ୟ ଅନୁଭବ କରିପାରିବା ।"

ପୂର୍ବର ଦୁଃସ୍ଥିତି ପ୍ରାୟ ସୁଧୁରିଯାଇ କାଶ୍ମୀରର ବାତାବରଣରେ ଏକପ୍ରକାର ସ୍ଥିରତା ଆସିଗଲା । ତେଣୁ କରଣ ସିଂହ ନିଜ ଖର୍ଚ୍ଚରେ ବିଦେଶ ଭ୍ରମଣରେ ବାହାରିଲେ । ତାଙ୍କର ଦୃଷ୍ଟିକୋଣ ଅନୁସାରେ କହିବାକୁ ଗଲେ :

"ନିଜ ଦେଶ ସମ୍ବନ୍ଧରେ ପ୍ରକୃତ ତଥ୍ୟ ଜାଣିବାକୁ ହେଲେ, ତାକୁ ବାହାରୁ ଦେଖିବା ଆବଶ୍ୟକ; ଆମ ଦେଶ ସମ୍ବନ୍ଧରେ ବାହାରର ଲୋକମାନଙ୍କ ମତାମତ ଜାଣିବା ଉଚିତ । ଆମ ଦେଶ ଓ ସମାଜର ସ୍ୱରୂପ ସମ୍ବନ୍ଧରେ ବୈଦେଶିକ ସ୍ତରର ଜନସାଧାରଣଙ୍କର ଚିନ୍ତାଧାରା କଣ, ତାର ଅନୁସନ୍ଧାନ

କରାଯିବା ଆବଶ୍ୟକ । ଆବଶ୍ୟକତାନୁସାରେ ଦେଶର ଭଲ ମନ୍ଦ ବିଷୟରେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରିବା ବିଧେୟ ।"

ଏହି ଦୃଷ୍ଟିରୁ କରଣ ସିଂହ ବିଦେଶ ଭ୍ରମଣରେ ଯାଇ ବିଭିନ୍ନ ଦେଶର ଭିନ୍ନ ଭିନ୍ନ ତଥ୍ୟ ସମ୍ବନ୍ଧରେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କଲେ; ବିଭିନ୍ନ ମତବାଦର ବ୍ୟକ୍ତିମାନଙ୍କ ସହିତ ମିଳାମିଶି ଚିନ୍ତାଧାରାର ଆଦାନପ୍ରଦାନ କରିବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ଦେଶ ସହିତ ନିଜ ଦେଶର ଏକ ତୁଳନାତ୍ମକ ଅଧ୍ୟୟନ କରିବାକୁ ଲାଗିଲେ । ରାଷ୍ଟ୍ରର ସଙ୍ଗଠନରେ ସକ୍ରିୟ ଭାଗ ନେବା ଉଦ୍ଦେଶ୍ୟରେ ନିଜ ଜୀବନକୁ ସାର୍ଥକ ତଥା ନିଜର ଅସ୍ତିତ୍ୱକୁ ଜାଗ୍ରତ କରାଇବାରେ ସେ ସର୍ବଦେଳେ ପ୍ରଯତ୍ନଶୀଳ ଥିଲେ । ସଂସାରର ପ୍ରତ୍ୟେକ ଶରୀରଧାରୀ ପକ୍ଷରେ ଧର୍ମ, ଅର୍ଥ, କାମ, ମୋକ୍ଷ ପ୍ରତି ବିଚାର କରି କାର୍ଯ୍ୟ କରିବା ଆବଶ୍ୟକ । କାରଣ, ତାହା ହିଁ ମନୁଷ୍ୟ ଜୀବନର ଚରମ ଲକ୍ଷ୍ୟ ।

ବିଦେଶ ଭ୍ରମଣରୁ ଫେରିବା ପରେ 'ସଦର୍-ଏ-ରିୟାସତ୍' କରଣ ସିଂହ ରାଜ୍ୟର ସମୁନ୍ନତିରେ ତତ୍ପର ହୋଇଉଠିଲେ; କିନ୍ତୁ ଅଳ୍ପଦିନ ମଧ୍ୟରେ ସେ ନିଜକୁ ନିୟନ୍ତ୍ରଣ କରିବା ଲାଗି ବାଧ୍ୟ ହେଲେ । ରାଜ୍ୟର ଆଭ୍ୟନ୍ତରୀଣ ରାଜନୈତିକ ଗତିବିଧିରେ ପୁଣି ଏକ ନୂତନ ରୂପ ଦୃଷ୍ଟିଗୋଚର ହୋଇଥିଲା; ପ୍ରତିଦିନ ବିଭିନ୍ନ ପ୍ରକାରର ଅଭିଯୋଗ ତାଙ୍କ କର୍ଣ୍ଣଗୋଚର ହେଲା । ରାଜ୍ୟର ତଥାକଥିତ ରକ୍ଷକଦଳ ଭକ୍ଷକର ଆଭିମୁଖ୍ୟ ଧାରଣ କରି ପ୍ରଗତି ପଥରେ ଅଗ୍ରସର ହେବାକୁ ଆରମ୍ଭ କରିଥିଲେ । ନୂତନ କୌଶଳ, ଧୂର୍ତ୍ତତାପୂର୍ଣ୍ଣ ବ୍ୟବହାର ତଥା ସ୍ୱାର୍ଥପରତା ମାଧ୍ୟମରେ ସମସ୍ତ କାର୍ଯ୍ୟ ଆଗେଇ ଚାଲିଥିଲା । ସବୁକ୍ଷେତ୍ରରେ ଏକ ବିଶେଷ ସ୍ଥିତି ଅନୁଭୂତ ହେବାକୁ ଲାଗିଲା । କିନ୍ତୁ ସବୁ କିଛି ଚାଲିଥିଲା ଯବନିକାର ଅନ୍ତରାଳରେ । ବାହାରକୁ ସେଗୁଡ଼ିକ 'ମହାକାଳଫଳ' ପରି ବେଶ୍ ସୁନ୍ଦର ଦେଖାଯାଉଥିଲା । କେବଳ ଜନସାଧାରଣଙ୍କ ଆଖିରେ 'ଭେଲକି' ଲଗାଇ ନୂତନ ଦକ୍ଷ ଯାଦୁକରମାନେ ସ୍ୱାର୍ଥସାଧନରେ ତତ୍ପର ହୋଇ ଉଠିଥିଲେ । 'ସଦର୍-ଏ-ରିୟାସତ୍' କରଣ ସିଂହ ଏ ସବୁ ଘଟଣା ପ୍ରତ୍ୟକ୍ଷଭାବେ ଅନୁଭବ କରି ଚିନ୍ତିତ ହୋଇଉଠିଲେ । ସେ ଭାବିଥିଲେ କ'ଣ, ଆଉ ପରିଣାମରେ ହେଲା କଣ ? ସେ ସତର୍କ ହୋଇଯାଇ ବିଶୃଙ୍ଖଳାର ସମ୍ମୁଖୀନ ହେବାକୁ ମନୋବଳ ଦୃଢ଼ କରିବାରେ ଲାଗିଲେ । ଅନ୍ୟଥା ଦେଶର ପ୍ରଭୂତ କ୍ଷତି ଘଟିବା ସଙ୍ଗେ ସଙ୍ଗେ ତାଙ୍କୁ ଜନସମାଜରେ ଉପହସିତ ହେବାକୁ

ପଡ଼ଥାନ୍ତା ! ତେଣୁ କାଶ୍ମୀରର ସତର୍କ ପ୍ରହରୀ ପୁଣି ଦୃଢ଼ତାର ସହିତ କର୍ତ୍ତବ୍ୟ ପଥରେ ଏକ ସାହସୀ ପଥିକ ପରି ଅଗ୍ରସର ହେଲେ ।

ବକ୍ସି ଗୁଲାମ୍ ମହମ୍ମଦ୍—ଯେ'କି 'କାଶ୍ମୀରର ସଂରକ୍ଷକ' (ଖାଲିକ୍-ଏ-କାଶ୍ମୀର) ଉପାଧିରେ ବିଭୂଷିତ ହୋଇଥିଲେ, ପ୍ରକୃତରେ ନିଜକୁ କାଶ୍ମୀରର ସର୍ବମୟକର୍ତ୍ତା ବୋଲି ମନେ କରିବାକୁ ଲାଗିଲେ । କ୍ରମବର୍ଦ୍ଧମାନ ଯଶଃ ଓ ଅଧିକାର ବଳରେ ତାଙ୍କର ମନୋବୃତ୍ତି ପରିବର୍ତ୍ତିତ ହୋଇଗଲା । ଅବଶ୍ୟ ତାଙ୍କଠାରେ ପରମାତ୍ମାଙ୍କ ପ୍ରଦତ୍ତ ଦୁଇଟି ବିଶେଷ ଗୁଣ ଥିଲା । ଗୋଟିଏ ହେଉଛି—ତାଙ୍କର ସ୍ମରଣ ଶକ୍ତି, ଅନ୍ୟଟି ହେଉଛି—କାର୍ଯ୍ୟ ସଞ୍ଚାଳନରେ ତାଙ୍କର ଅପୂର୍ବ ଦକ୍ଷତା । ଯେପରି ରୀତିରେ ସେହି କାର୍ଯ୍ୟ ସମ୍ପାଦିତ ହେଉ ନା କାହିଁକି, ସେ ସୁସ୍ପଷ୍ଟରୂପେ ଯେକୌଣସି କାର୍ଯ୍ୟକୁ 'ନେଇ ଆଣି ଥୋଇ-ପାରିବା'ରେ ସୁନିପୁଣ ବ୍ୟକ୍ତିରୂପେ ପରିଚିତ ଥିଲେ । ପୂର୍ଣ୍ଣ ସତର୍କତାର ସହିତ, ବ୍ୟବସ୍ଥିତ ଢଙ୍ଗରେ, ଶାସନସମ୍ବନ୍ଧୀୟ ସମସ୍ତ କାର୍ଯ୍ୟକୁ ବାହାରକୁ ସର୍ବାଙ୍ଗ-ସୁନ୍ଦର କରି ସେ ସମ୍ପାଦିତ କରିପାରୁଥିଲେ । ଏତଦ୍‌ବ୍ୟତୀତ ଜାମ୍ମୁ ଓ କାଶ୍ମୀରର ପ୍ରତ୍ୟେକ 'ଅନ୍ଧିସନ୍ଧି' ସମ୍ବନ୍ଧରେ ତାଙ୍କର ପୂର୍ଣ୍ଣ ଧାରଣା ଥିଲା । ତେଣୁ ଶାସନ ପରିଚାଳନାଲାଗି ଯେଉଁ ଆବଶ୍ୟକୀୟ ଶକ୍ତିର ପ୍ରୟୋଜନ ଥିଲା, ତାକୁ ସେ ନିଜ ହାତମୁଠାରେ ରଖିପାରିଥିଲେ । ସେ ସମସ୍ତଙ୍କ ନାଡ଼ି ଚିପି ଔଷଧ-ବ୍ୟବସ୍ଥା କରିବାରେ ସୁଚତୁର ବୈଦ୍ୟରାଜ ଥିଲେ । ତେଣୁ କେହି ତାଙ୍କ ଆଖିରେ 'ଅନ୍ଧ ପୃଷ୍ଠୁଳି' ବାନ୍ଧି କାର୍ଯ୍ୟ ହାସଲ କରିପାରୁ ନ ଥିଲେ ।

ତାଙ୍କର ଅନ୍ୟତମ ବିଶେଷ ଗୁଣ—ସ୍ମରଣଶକ୍ତି ସମ୍ବନ୍ଧରେ ମଧ୍ୟ ଉଦାହରଣ ରହିଛି । ଥରେ ମାତ୍ର ଯାହା ସହିତ କଥାବାର୍ତ୍ତା କରନ୍ତି କିଂବା କୌଣସି ବିଷୟରେ ପ୍ରତିଶ୍ରୁତି ଦିଅନ୍ତି, ତାହା ପ୍ରାୟ ଜୀବନକାଳ ମଧ୍ୟରେ ଭୁଲିପାରନ୍ତି ନାହିଁ । ଏହାର ପ୍ରମାଣ ସ୍ୱରୂପ ଏଠାରେ ଦୁଇଟି ଘଟଣାର ଉଲ୍ଲେଖ କରାଯାଇପାରେ ।

ଜାମ୍ମୁ ଅଞ୍ଚଳର ଜଣେକ 'ନେସ୍‌ନାଲ୍ କନ୍‌ଫରେନ୍‌ସ୍'ର ପୁରୁଣା କର୍ମୀ ଅଭାବ ଅସୁବିଧାରେ ପଡ଼ିଥିବାବେଳେ ତାଙ୍କର ବନ୍ଧୁମାନେ, ବକ୍‌ସିଙ୍କ ସହିତ ସାକ୍ଷାତ୍ କରି କିଛି ସୁବିଧା ହାସଲ କରିବାଲାଗି ତାଙ୍କୁ ପ୍ରବର୍ତ୍ତାଇଲେ । କାରଣ ବକ୍‌ସିଙ୍କ ରାଜୁତିରେ ଯେତେବେଳେ ବହୁଲୋକ 'କୋଟା' ପରମିଟ୍ ପାଇ ଆନନ୍ଦରେ କାଳାତିପାତ କରୁଛନ୍ତି, ସେତେବେଳେ ତାଙ୍କର (ବକ୍‌ସିଙ୍କର)

ଜଣେ ପୁରୁଣା ବନ୍ଧୁ ହିସାବରେ ସେ କାହିଁକି ସେପରି ଏକ ଲାଭଜନକ ଉପାୟ ଅବଲମ୍ବନ କରି, ଜୀବନର ଶେଷ ସମୟତକ ସୁଖରେ ଅତିବାହିତ କରିବାଲାଗି ଚେଷ୍ଟା କରୁନାହାନ୍ତି ? ବିଶେଷତଃ ଏପରି ସୁଯୋଗ ଜୀବନରେ ବାରମ୍ବାର ଆସେ ନାହିଁ । ପ୍ରଥମେ ପଣ୍ଡିତ୍‌ଜୀ (ସେହି କର୍ମୀଙ୍କ ନାମ) ବନ୍ଧୁମାନଙ୍କ ଉପଦେଶ ଶୁଣି ଅସମଞ୍ଜସରେ ପଡ଼ିଲେ । କିନ୍ତୁ ପରେ ପରେ ବନ୍ଧୁମାନଙ୍କଠାରୁ ବାରମ୍ବାର ପ୍ରୋତ୍ସାହନ ପାଇ ବକ୍‌ଶୀଜୀ ଜାମ୍ମୁ ଗସ୍ତରେ ଆସିଥିବା ସମୟରେ ତାଙ୍କୁ ସାକ୍ଷାତ୍ କରି ସେ ନିଜର ଅଭୀଷ୍ଟ ନିବେଦନ କଲେ । ବକ୍‌ଶୀଜୀ ନିଜର ଅସମର୍ଥତା ପ୍ରକଟ କରି କହିଲେ :

"ପଣ୍ଡିତ୍‌ଜୀ, ଆପଣ ବିଳମ୍ବରେ ଆସିଲେ । ଆପଣଙ୍କ ନମ୍ବର ବହୁ ପଛରେ ପଡ଼ିଯିବ ! ପ୍ରାୟ ଦୁଇ ବର୍ଷ ଆପଣଙ୍କୁ ଅପେକ୍ଷା କରିବାକୁ ପଡ଼ିବ । କିନ୍ତୁ ମୁଁ ନିର୍ଭର ପ୍ରତିଶ୍ରୁତି ଦେଉଛି—ଦୁଇ ବର୍ଷପରେ ଆପଣଙ୍କୁ ନିଶ୍ଚିତ ଭାବରେ ଖଣ୍ଡିଏ 'ପରମିଟ୍' ମିଳିଯିବ । ଏଥିରେ ସନ୍ଦେହ କରିବାର କିଛି ନାହିଁ । ଆପଣ ଆଉ ଆଦୌ ଏ ବିଷୟରେ ଚିନ୍ତା କରିବେ ନାହିଁ । ମୁଁ ଆପଣଙ୍କ ଉପକାର ଆଜି ସୁଦ୍ଧା ଭୁଲି ନାହିଁ ।"

: "ତା ହେଲେ ମୁଁ କିଣ ଆପଣଙ୍କୁ ଏହା ମଧ୍ୟରେ ଥରେ ଅଧେ ସ୍ମରଣ କରାଇ ଦେବି ?"

: "କିଛି ଦରକାର ନାହିଁ ପଣ୍ଡିତ୍‌ଜୀ ! ମୁଁ ଯେଉଁ ସମୟ ଦେଇଛି, ଠିକ୍ ସେହି ସମୟ ମଧ୍ୟରେ ଆପଣଙ୍କୁ ଆପଣଙ୍କ ପ୍ରାପ୍ୟ ନିଶ୍ଚୟ ମିଳିଯିବ !"

ପଣ୍ଡିତ୍‌ଜୀ ଫେରିଆସିଲେ । ଏହା ମଧ୍ୟରେ ପ୍ରାୟ ଦେଢ଼ ବର୍ଷ ଅତୀତ ହୋଇଗଲା । ପଣ୍ଡିତ୍‌ଜୀଙ୍କ ହିତୈଷୀମାନେ ପୁଣି ଥରେ ବକ୍‌ଶୀଙ୍କୁ ସାକ୍ଷାତ୍ କରିବା ଲାଗି ତାଙ୍କ ଉପରେ ପ୍ରଭାବ ପକାଇଲେ । ତେଣୁ ବାଧ୍ୟ ହୋଇ ପଣ୍ଡିତ୍‌ଜୀ ଶ୍ରୀନଗର ଯାଇ ସକାଳଓଳି ବକ୍‌ଶୀଜୀଙ୍କ ବାସଭବନରେ ଉପସ୍ଥିତ ହେଲେ । ସେତେବେଳେ ସେଠାରେ ବହୁପୂର୍ବରୁ ଆସି ଅନେକ ଲୋକ ରୁଣ୍ଡ ହୋଇଥିଲେ । କାରଣ ପ୍ରଧାନମନ୍ତ୍ରୀଙ୍କ ସହିତ ସାକ୍ଷାତ୍ କରିବାର ତାହା ହିଁ ଥିଲା ନିର୍ଦ୍ଧାରିତ ସମୟ । ପଣ୍ଡିତ୍‌ଜୀ ଭିତରକୁ ପ୍ରବେଶ କରିବା ମାତ୍ରେ, ବକ୍‌ଶୀଜୀ ତାଙ୍କୁ ଦୂରରୁ ଦେଖିନେଲେ । ସେତେବେଳେ ସେ କେତେକ ବ୍ୟକ୍ତିଙ୍କ ସହିତ କଥା-ବାର୍ତ୍ତାରେ ବ୍ୟସ୍ତ ଥିଲେ । ପଣ୍ଡିତ୍‌ଜୀ ତାଙ୍କ ନିକଟକୁ ଯିବା ପୂର୍ବରୁ ବକ୍‌ଶୀ ଗୁଲାମ୍ ମହମ୍ମଦ୍ ସେହିଠାରେ ବସିରହି କହିଲେ :

"ପଣ୍ଡିତଜୀ ! ଆଉରି ବର୍ଷର ପାଞ୍ଚ ମାସ ସମୟ ଅଛି; ଆପଣ ବୃଥାଟାରେ ଏତେ କଷ୍ଟ ସ୍ୱୀକାର କରି ଆସିଲେ । ଠିକ୍ ସମୟରେ ତାହା ଆପଣଙ୍କ ହସ୍ତଗତ ହେବ । ଏଥିରେ ଆପଣ କିଛି ସନ୍ଦେହ କରନ୍ତୁ ନାହିଁ । ହେଉ, ଯାଆନ୍ତୁ !"

ପଣ୍ଡିତଜୀ ଫେରିଆସିଲେ । ନିର୍ଦ୍ଦିଷ୍ଟ ସମୟ ଶେଷ ହେବା ପୂର୍ବରୁ ତାଙ୍କ ନିକଟକୁ ଖଣ୍ଡିଏ 'ପରମିଟ୍' ଆସିଗଲା ।

ଜାମୁର କୌଣସି ଜଣେ ଅଧ୍ୟାପକଙ୍କ ପଦୋନ୍ନତି ତାଙ୍କର ଧୃଷ୍ଟତା ଲାଗି ହୋଇ ପାରୁ ନ ଥିଲା । ତାଙ୍କର ଅଧସ୍ତନ ଅଧ୍ୟାପକମାନେ ତାଙ୍କୁ ଟପି ଉପରକୁ ଚାଲିଗଲେ । ଥରେ ବକ୍‌ଶୀ ସାହେବ କୌଣସି ଏକ ଉତ୍ସବରେ ଯୋଗ ଦେବାଲାଗି ତାଙ୍କ କଲେଜ୍‌କୁ ଆସିଲେ । ଉତ୍ସବ ଶେଷ ହେବା ପରେ ଅଧ୍ୟାପକ ମହାଶୟ ବକ୍‌ଶୀଜୀଙ୍କ ଅନୁମତିକ୍ରମେ ନିଜ ଆପତ୍ତି ଓଜର୍ ଏବଂ ତାଙ୍କ ପ୍ରତି ବିଧାନ କରାଯାଇଥିବା ଅନ୍ୟାୟ ବିଚାର ସମ୍ବନ୍ଧରେ ବ୍ୟାଖ୍ୟାନ କରି ଶୁଣାଇଲେ । ବକ୍‌ଶୀଜୀ ସବୁ ଶୁଣିସାରି ଅଧ୍ୟାପକଙ୍କୁ ଆଶ୍ୱାସନା ଦେଇ କହିଲେ :

"ମୁଁ ଏ ସମ୍ବନ୍ଧରେ ନିଜେ ତଦାରଖ୍ କରି ଦେଖିବି । ଆପଣଙ୍କ ପ୍ରତି ଯେଉଁ ବିଚାର କରାଯାଇଛି, ବାସ୍ତବିକ୍ ସେଥିଲାଗି ମୁଁ ବଡ଼ ଦୁଃଖିତ । ଦେଢ଼ ହପ୍ତା ମଧ୍ୟରେ ଆପଣଙ୍କ ଅଭିଯୋଗ ରଫା ହୋଇଯିବ । ଆପଣ ଆଉ କିଛି ଚିନ୍ତା କରନ୍ତୁ ନାହିଁ ।"

ବକ୍‌ଶୀ ସାହେବ ଶ୍ରୀନଗର ଫେରିଗଲେ । କଥା-କଥାକେ ଅଧ୍ୟାପକ ମହାଶୟ ପ୍ରଧାନମନ୍ତ୍ରୀଙ୍କ ନିକଟରେ ଅଭିଯୋଗ କରିଥିଲେ ଏବଂ ବକ୍‌ଶୀଜୀ ମଧ୍ୟ ତାଙ୍କୁ ମୌଖିକଭାବରେ ଆଶ୍ୱାସନା ବାଣୀ ଶୁଣାଇଥିଲେ । ଏ ସମ୍ବନ୍ଧରେ ସେ ନିଜେ କୌଣସି 'ନୋଟ୍' କରି ନ ଥିଲେ କିମ୍ବା ତାଙ୍କ ସେକ୍ରେଟେରୀଙ୍କୁ ମଧ୍ୟ 'ନୋଟ୍' କରିବାକୁ କହି ନ ଥିଲେ । ତେଣୁ ଅଧ୍ୟାପକ ମହାଶୟଙ୍କ ମନରେ ବକ୍‌ଶୀ ସାହେବଙ୍କ ଆଶ୍ୱାସନାପ୍ରତି ବିଶ୍ୱାସ ଜାତ ହେଲା ନାହିଁ । କାରଣ ଗୋଟିଏ ରାଜ୍ୟର ଜଣେ କାର୍ଯ୍ୟବ୍ୟସ୍ତ ପ୍ରଧାନମନ୍ତ୍ରୀ ଏହି ସାମାନ୍ୟ ଘଟଣାକୁ ମନେ ରଖି ତଦନୁସାରେ କାର୍ଯ୍ୟ କରିବେ ବୋଲି ତାଙ୍କର ଧାରଣା ହେଲା ନାହିଁ । କିନ୍ତୁ ବକ୍‌ଶୀଜୀଙ୍କ ସହିତ ସାକ୍ଷାତ୍ ହେବାର ଦ୍ୱିତୀୟ ସପ୍ତାହରେ ନିଜର ପଦୋନ୍ନତିସୂଚକ ପତ୍ର ପାଇ ସେ ବିସ୍ମିତ ହୋଇଗଲେ ।

ଏହି ଦୁଇ ପ୍ରକାର ଗୁଣବଳରେ ବକ୍‌ଶୀ ଗୁଲାମ ମହମ୍ମଦଙ୍କର ଶକ୍ତି ଦିନକୁ ଦିନ ବୃଦ୍ଧି ପାଇବାକୁ ଲାଗିଲା ଏବଂ ସେ ଅଧିକ ପରିଶ୍ରମୀ ହୋଇଥିବାରୁ ଧୀରେ ଧୀରେ ତାଙ୍କର ଲୋକପ୍ରିୟତା ବୃଦ୍ଧି ପାଇବାକୁ ଲାଗିଲା । "କାଶ୍ମୀର ଭାରତର ଅବିଚ୍ଛେଦ୍ୟ ଅଙ୍ଗ" ଧ୍ୱନିକରି କାଶ୍ମୀର ବାହାରେ ମଧ୍ୟ ସେ ଖୁବ୍ ଲୋକପ୍ରିୟତା ଅର୍ଜନ କଲେ । ସମସ୍ତ ପ୍ରକାର ସୁଖ ସୁବିଧା ତଥା ଗୌରବ ଲାଭ ହେବାପରେ ତାଙ୍କ ହୃଦୟରେ ପ୍ରବଳ ଧନଲିପ୍ସା ଜାଗ୍ରତ ହେଲା । ତେଣୁ ସେ ଆଖିବୁଜି ନାନାଉପାୟରେ ଧନ ସଂଗ୍ରହ କରିବାକୁ ଲାଗିଲେ । ଜାମ୍ମୁ ଓ କାଶ୍ମୀରର ବିକାଶ ଓ ଜନସାଧାରଣଙ୍କ ସୁଖ ସୁବିଧା ଲାଗି ଭାରତରୁ ଅଜସ୍ର ଟଙ୍କା ଆସୁଥିଲା ; ତେଣୁ ଆଉ ଚିନ୍ତା କ'ଣ ? ଏକ ସ୍ଥାନରେ ଚାରି ଓ ଚାରି ସ୍ଥାନରେ ଦୁଇର ଖର୍ଚ୍ଚ ହିସାବ ଦେଖାଇ ଲୁଟପାଟ ଆରମ୍ଭ ହୋଇଗଲା । ଧୀରେ ଧୀରେ 'ଲୁଟି'ର ମାତ୍ରା ବଢ଼ିବାକୁ ଲାଗିଲା ଏବଂ ଏହା ଅତି ସ୍ୱାଭାବିକ ମଧ୍ୟ ଥିଲା । ଥରେ ମାତ୍ର ମଣିଷ ରକ୍ତ ବାଘ ଦାନ୍ତରେ ଲାଗିଲେ ସେ କେବଳ ମଣିଷ ଶିକାର ଲାଗି ଖୋଜ ଉଣ୍ଡି ବସେ । ଲୁଟତରାଜ କରି ସେହି ଧନକୁ ହଜମ କରିବାକୁ ହେଲେ ଲୋକମାନଙ୍କ ମୁହଁ ବନ୍ଦ କରିବାର ଆବଶ୍ୟକତା ବୋଧହେଲା । ଫଳ-ସ୍ୱରୂପ 'କୋଟା', 'ପରମିଟ୍' ବଣ୍ଟା ଗଲିଲା, କଣ୍ଟ୍ରାକ୍ଟ ଦିଆଗଲା । ବକ୍‌ଶୀ ସାହେବଙ୍କର ଭାଇ ବନ୍ଧୁ—କାଲି ଯେଉଁମାନେ ସଡ଼କ ଉପରେ ଚପଲ ଘୋଷାରି ଘୋଷାରି ବାଟ ଚାଲୁଥିଲେ, ସେମାନେ ଅଳ୍ପଦିନ ମଧ୍ୟରେ ମୋଟର୍ ଚଢ଼ି ବୁଲିଲେ । ପୁଞ୍ଜିପତି ଓ ଧପ୍‌ପାବାଜଙ୍କର ଭିଡ଼ ମଧ୍ୟ ବଢ଼ିଗଲା । ବକ୍‌ଶୀ ସାହେବ କୌଣସି ନା କୌଣସି ଉପାୟରେ ସମାଲୋଚକ-ମାନଙ୍କ ମୁହଁ ବନ୍ଦ କରିବାରେ ତତ୍ପର ହୋଇପଡ଼ିଲେ । କେବଳ ସେତିକି ନୁହେଁ ଯେଉଁ ପାକିସ୍ତାନୀ ଏଜେଣ୍ଟମାନଙ୍କର ସତ୍ତା ଲୋପ ହୋଇଯାଇଥିଲା, ସେମାନେ ପୁଣି ସକ୍ରିୟ ହୋଇଉଠିଲେ । ସବୁଠାରୁ ଆଶ୍ଚର୍ଯ୍ୟର ବିଷୟ ହେଉଛି—ବକ୍‌ଶୀ ସାହେବଙ୍କ ଇଙ୍ଗିତରେ ହିଁ ସେମାନଙ୍କ ସକ୍ରିୟତା ବୃଦ୍ଧି ପାଉଥିଲା । ସେ ଏଣେ ପାକିସ୍ତାନର ସମର୍ଥକମାନଙ୍କୁ 'ପାକିସ୍ତାନ୍ ଜିନ୍ଦାବାଦ୍' କରିବାକୁ ପ୍ରବର୍ତ୍ତାଇବା ସଙ୍ଗେ ସଙ୍ଗେ, ସେମାନଙ୍କୁ ଅବଦୁଲ୍ଲାଙ୍କ ସମର୍ଥକ ବୋଲି ଚିହ୍ନ କରାଇ ପଣ୍ଡିତ ନେହରୁଙ୍କଠାରୁ ଅଧିକ ସାହାଯ୍ୟ ଦାବି କରୁଥିଲେ । ସେହି ବିଦ୍ରୋହୀମାନଙ୍କ ମୁହଁ ବନ୍ଦ କରାଇବା ଲାଗି ପଣ୍ଡିତଜୀ କାଶ୍ମୀର ନାମରେ ଅଧିକ ସାହାଯ୍ୟ ମଞ୍ଜୁର କରୁଥିଲେ । ସେହି ସାହାଯ୍ୟ-

ଲବ୍‌ଧଧନରୁ କିଛି ଅଂଶ ସେମାନଙ୍କ ମଧ୍ୟରେ ବଣ୍ଟନ କରାଯାଉଥିଲା ଏବଂ ଅବଶିଷ୍ଟାଂଶ ବ.ବ.ସି. (ବକ୍‌ଶୀ ବ୍ରଦର୍ସ କର୍ପୋରେସନ୍) ହଜମ୍ କରୁଥିଲେ ।

ସମୟକ୍ରମେ ଏପ୍ରକାର ଲୁଟତରାଜ ବୃଦ୍ଧି ପାଇବାକୁ ଲାଗିଲା । ବକ୍‌ଶୀ ଗୁଲାମ୍ ମହମ୍ମଦ ଏହା ମଧ୍ୟରେ ଯଥେଷ୍ଟ ସମ୍ପତ୍ତି ସଞ୍ଚୟ କରିବାରେ ବେଶ୍ ସଫଳତା ହାସଲ କଲେ । ସେ ଆଉ ଦେଶର ସ୍ୱାର୍ଥ ସମ୍ପର୍କରେ ଆଦୌ ଚିନ୍ତା କଲେ ନାହିଁ କିଂବା ଜନତା-ଜନାର୍ଦ୍ଦନର ସ୍ୱାର୍ଥଲାଗି କୌଣସି କାର୍ଯ୍ୟ କଲେ ନାହିଁ । ଯେଉଁ ଜନତାର ସେବାକାର୍ଯ୍ୟରେ ସେ ଦିନରାତି ଅକ୍ଳାନ୍ତ ପରିଶ୍ରମ କରୁଥିଲେ, ସେହିମାନଙ୍କ ମୁହଁରେ ପାଉଁଶ ଦେଇ ଜନସାଧାରଣଙ୍କର ଧନସମ୍ପତ୍ତି ଲୁଟ୍ କରିବାରେ ସେ ସଦାସର୍ବଦା ବ୍ୟସ୍ତ ରହିଲେ । ତାଙ୍କର ଦୃଷ୍ଟିକୋଣ ତଥା ରାଜନୀତି ପରିବର୍ତ୍ତିତ ହୋଇଗଲା । ସେ ଜାମ୍ମୁ ଓ କାଶ୍ମୀର ତଥା ନିଜ ପ୍ରଧାନମନ୍ତ୍ରୀତ୍ୱକୁ ଭିନ୍ନ ଭିନ୍ନ ଦୃଷ୍ଟିରେ ଦେଖିବାକୁ ଲାଗିଲେ । ଏହା ମଧ୍ୟରେ ତାଙ୍କର ଅହଙ୍କାର ସୀମା ଅତିକ୍ରମ କଲା । ଶେଖ୍ ଅବ୍‌ଦୁଲ୍ଲାଙ୍କ ମନରେ ଅହଙ୍କାର ବୃଦ୍ଧି ପାଇଥିଲେ ହେଁ, ସେ ଶେଷ ପର୍ଯ୍ୟନ୍ତ ବିବେକବୁଦ୍ଧି ଅନୁସାରେ କାର୍ଯ୍ୟ କରୁଥିଲେ । କିନ୍ତୁ ବକ୍ଷଶୀ ଗୁଲାମ୍ ମହମ୍ମଦ୍ ନିଜର ଅତୀତକୁ ଏକାବେଳକେ ପାଶୋରି ଦେଇ ବିବେକ-ବୁଦ୍ଧି ହରାଇବସିଲେ । ସେ ଆହୁରି ମଧ୍ୟ ଶେଖ୍ ଅବ୍‌ଦୁଲ୍ଲାଙ୍କ ଜୀବନର ଦୁଃଖାନ୍ତ ନାଟକକୁ ପାଶୋରି ଦେଇଥିଲେ । ସେ ବୋଧହୁଏ ଭୁଲିଗଲେ—ଯେଉଁ ସତର୍କ ପ୍ରହରୀ ଶେଖ୍ ଅବ୍‌ଦୁଲ୍ଲାଙ୍କପରି କୂଟନୀତିଜ୍ଞ ଓ ବହୁଜନସମର୍ଥିତ ବ୍ୟକ୍ତିଙ୍କର ସମସ୍ତ ପ୍ରକାର ଷଡ଼ଯନ୍ତ୍ରକୁ ପଦାରେ ପକାଇ, ତାଙ୍କୁ କାରାଗାରର ଅନ୍ଧକାର କୋଠରୀ ମଧ୍ୟରେ ଆବଦ୍ଧ କରିପାରିଲେ; ତାଙ୍କ ପକ୍ଷରେ ଯେ କୌଣସି ଅନ୍ୟାୟ ବିରୁଦ୍ଧରେ କାର୍ଯ୍ୟ କରିବା ଅସମ୍ଭବ ନୁହେଁ । କିନ୍ତୁ ବକ୍‌ଶୀ ସାହେବଙ୍କ ଆଖିଆଗରେ ସ୍ୱାର୍ଥପରତାର ଯବନିକା ଝୁଲୁଥିଲା । ତେଣୁ ସେ 'ସଦର୍-ଏ-ରିୟାସତ୍'ଙ୍କ ଦୂରଦର୍ଶିତା ତଥା କାର୍ଯ୍ୟଦକ୍ଷତା ସମ୍ବନ୍ଧରେ ଭୁଲି ଯାଇଥିଲେ । ସେ ଭୂତ ଓ ଭବିଷ୍ୟତର କୌଣସି ଚିନ୍ତା ନ କରି, କେବଳ ବର୍ତ୍ତମାନର ସ୍ୱାର୍ଥରେ ଅନ୍ଧ ହୋଇ ବହୁ ଅନ୍ୟାୟ ତଥା ଅସାମାଜିକ ଉପାୟରେ ଧନସଂଗ୍ରହ କରିବାକୁ ଲାଗିଲେ । ତେଣେ ସୁଚତୁର ସତର୍କ ପ୍ରହରୀ 'ସଦର୍-ଏ-ରିୟାସତ୍' କରଣ ସିଂହ ପ୍ରତି ପନ୍ଦର ଦିନରେ ଥରେ ବକ୍‌ଶୀ ଗୁଲାମ୍ ମହମ୍ମଦଙ୍କ ଗତିବିଧି ସମ୍ବନ୍ଧରେ ଗୁପ୍ତପତ୍ର ଲେଖି ଭାରତ ସରକାରଙ୍କୁ ଜଣାଇ ଦେଉଥିଲେ ।

● ● ●

# ତେର

ବକ୍ସି ଗୁଲମ୍ ମହମ୍ମଦ୍‌ଙ୍କ କାର୍ଯ୍ୟ ପ୍ରଣାଳୀରେ ଅସନ୍ତୁଷ୍ଟ ହୋଇ ଗୁଲମ୍ ମହମ୍ମଦ୍ ସାଦିକ୍ ତାଙ୍କୁ ସମାଲୋଚନା କରିବାକୁ ଆରମ୍ଭ କରିଦେଲେ । ଧୀରେ ଧୀରେ ବକ୍ସିଙ୍କ ଭ୍ରଷ୍ଟାଚାରର ଗୁପ୍ତ ତଥ୍ୟ ପଦାରେ ପଡ଼ିଲା ଏବଂ ଜନସାଧାରଣ ତାଙ୍କ ସ୍ୱାର୍ଥପରତା ସମ୍ବନ୍ଧରେ ଯଥେଷ୍ଟ ଆଭାସ ପାଇ-ପାରିଲେ । ସାଦିକ୍ ମଧ୍ୟ ଜନସାଧାରଣଙ୍କ ଆଗରେ ବକ୍ସି ସାହେବଙ୍କ ଦୁର୍ଗୁଣମାନ ବ୍ୟାଖ୍ୟାନ କରି ସେମାନଙ୍କୁ ଆହୁରି ଉତ୍ତେଜିତ କରାଇବାକୁ ଲାଗିଲେ । ସେ ବକ୍ସିଙ୍କ ସମ୍ବନ୍ଧରେ ଆଲୋଚନା କରିବା ସମୟରେ ଭାରତ ସରକାରଙ୍କଠାରୁ ସାହାଯ୍ୟସ୍ୱରୂପ କୋଟି କୋଟି ଟଙ୍କା ମିଳୁଥିବା ସତ୍ତ୍ୱେ ଦେଶର ଜନସାଧାରଣଙ୍କ ସ୍ଥିତିର ଅବନତି କାହିଁକି ଘଟୁଛି ଏବଂ ଜନତା-ଜନାର୍ଦ୍ଦନର ଦଶା ଏପରି ଦୟନୀୟ କାହିଁକି ହେଉଛି ବୋଲି ପ୍ରଶ୍ନ ଉତ୍ଥାପନ କଲେ । ଆହୁରି ମଧ୍ୟ ସେ ଆଲୋଚନା ପ୍ରସଙ୍ଗରେ ଅତ୍ୟାବଶ୍ୟକୀୟ ଜିନିଷ ପତ୍ରର ଦରଦାମ ହୁ'ହୁ' ହୋଇ ବଢ଼ୁଥିବା ସଂପର୍କରେ ପ୍ରଶ୍ନ ଉଠାଇବା ସଙ୍ଗେ ସଙ୍ଗେ, କାଲି ଯେଉଁମାନେ ସାଧାରଣ ସ୍ତରର ବ୍ୟକ୍ତିରୂପେ ସମାଜରେ ପରିଚିତ ଥିଲେ, ସେମାନେ କିପରି ଲକ୍ଷପତି ହୋଇ ପାରିଛନ୍ତି, ତାର କାରଣମାନ ଜନସାଧାରଣଙ୍କ ଆଗରେ ଉଦ୍‌ଘାଟନ କଲେ । ଧୀରେ ଧୀରେ ସାଦିକ୍ ସାହେବଙ୍କ ଆଲୋଚନାର ରୂପ ଉଗ୍ର ହୋଇଉଠିଲା । ସେ କିଛିଦିନ ପରେ ଖୋଲାଖୋଲିଭାବରେ ବକ୍ସିଙ୍କୁ ସମାଲୋଚନା କରିବାକୁ ଲାଗିଲେ । ଏବଂ ତାଙ୍କୁ ଏ କାର୍ଯ୍ୟରେ ବିଶେଷ ସାହାଯ୍ୟ କଲେ ମୀର୍ କାଶୀମ୍ ଓ ଗିରିଧାରୀଲାଲ୍ ଡୋଗ୍ରା । ବିରୋଧକୁ ସାକାର କରିବା ଅଭିପ୍ରାୟରେ ସେ 'ଡେମୋକ୍ରାଟିକ୍ ନେସନାଲ କନ୍‌ଫରେନ୍‌ସ୍' ନାମରେ ଗୋଟିଏ ନୂତନ ଦଳ ଗଠନ କଲେ ।

ବଖଶୀଙ୍କ ବିରୋଧରେ ସହରରେ ପ୍ରଚ୍ଛନ୍ନ ଚାଲିବା ସଙ୍ଗେ ସଙ୍ଗେ ଗାଁ-ଗହଳରେ ମଧ୍ୟ ଅପପ୍ରଚାର ଚାଲିଲା । ଗ୍ରାମର ସାଧାରଣ ନାଗରିକଙ୍କ ମନରେ ବଖ୍‌ଶୀଙ୍କ କାର୍ଯ୍ୟକଳାପ ସମ୍ବନ୍ଧରେ ବିଶେଷ ଆଗ୍ରହ ଜାତହେଲା । ତାଙ୍କ ସ୍ୱାର୍ଥ-ପରତା ସମ୍ବନ୍ଧରେ ଠିକ୍‌ଣା ଖବର ପାଇବା ପରେ ଦୀନଦୁଃଖୀ ଲୋକମାନେ ମଧ୍ୟ ସେ ସମ୍ପର୍କରେ ଆଲୋଚନା କରିବାକୁ ବିଶେଷ ଆଗ୍ରହ ପ୍ରକାଶ କଲେ ଏବଂ ବଖ୍‌ଶୀ ସାହେବଙ୍କ ଅନୁଗ୍ରହରୁ ରାତାରାତି ଧନୀ ସାଜିଥିବା ବ୍ୟକ୍ତିମାନେ ଶଙ୍କିତ ହୋଇଉଠିଲେ । ଯେଉଁମାନେ ବଖ୍‌ଶୀଙ୍କ ବ୍ୟବହାରରେ ଅତ୍ୟନ୍ତ କ୍ଷୁବ୍‌ଧ ହୋଇଥିଲେ, ସେମାନଙ୍କୁ ମଧ୍ୟ ହଇଚଇ ଲଗାଇବା ଲାଗି ଗୋଟିଏ ସୁବର୍ଣ୍ଣ ସୁଯୋଗ ମିଳିଗଲା । ତେଣୁ ସେମାନେ 'ଇନ୍‌କିଲାବ୍‌ ଜିନ୍ଦାବାଦ୍‌' (ବିପ୍ଳବ ଦୀର୍ଘଜୀବୀ ହେଉ !) ଧ୍ୱନି କରିବାକୁ ଆରମ୍ଭ କଲେ । ସମଗ୍ର ରାଜ୍ୟରେ ବଖ୍‌ଶୀଙ୍କ ବିରୋଧରେ ଆନ୍ଦୋଳନର ସୂତ୍ରପାତ ହୋଇଗଲା । ପରିସ୍ଥିତିର ଗମ୍ଭୀରତା ସମ୍ବନ୍ଧରେ ଖବର ପାଇବା ପରେ ବଖ୍‌ଶୀଙ୍କ ମନରେ ଚିନ୍ତା ଜାଗ୍ରତ ହେଲା ସତ; କିନ୍ତୁ ସେ ସେଥିଲାଗି ବିଶେଷ ବ୍ୟଥିତ ହେଲେ ନାହିଁ । କାରଣ, ସେତେବେଳ ପର୍ଯ୍ୟନ୍ତ ନିଜ ସମର୍ଥକ ଗୋଷ୍ଠୀ ଓ ଅନ୍ୟାୟ ଉପାୟରେ ଅର୍ଜିତ ଧନ ଉପରେ ତାଙ୍କର ବିଶେଷ ଆସ୍ଥା ରହିଥିଲା । ସେତେବେଳେ ସେ ଭାବିବାକୁ ଲାଗିଲେ—ଶେଖ୍‌ ଅବ୍‌ଦୁଲ୍ଲାଙ୍କପରି କାଶ୍ମୀରବାସୀଙ୍କୁ ଅନାୟାସରେ ଆୟତ୍ତ କରି ନିଜ ସମର୍ଥକଙ୍କ ସଂଖ୍ୟା ବୃଦ୍ଧି କରିବା ସଙ୍ଗେ ସଙ୍ଗେ ବିପକ୍ଷ ଦଳର ମୁହଁରେ ଚୂନ-କାଳି ବୋଳି ଦେଇ-ପାରିବେ । କିନ୍ତୁ ତାଙ୍କରି ସହଯୋଗରେ କିପରି ଶେଖ୍‌ ଅବ୍‌ଦୁଲ୍ଲାଙ୍କୁ ରୁଦ୍ଧ କାରାଗାରରେ ରଖାଯାଇଥିଲା, ସେ ଘଟଣାକୁ ସେ ସମ୍ପୂର୍ଣ୍ଣ ପାଶୋରି ଦେଇଥିଲେ ।

କିନ୍ତୁ ବଖ୍‌ଶୀ ସାହେବ ଆଉ ଅତୀତକୁ ସ୍ମରଣ କରନ୍ତେ ବା କାହିଁକି ? କାରଣ ଧର୍ମାନ୍ଧତା ଫଳରେ ସେ ଜନସାଧାରଣଙ୍କୁ ବିପଥଗାମୀ କରାଇବାର ଯେଉଁ କଳ୍ପନା କରିଥିଲେ, ତାହା ପୁଣି ସଫଳ ହୁଅନ୍ତା କିପରି ? ସେ ମଧ୍ୟ ଜନସାଧାରଣଙ୍କ ଆଖିରେ ଅନ୍ଧପୁଟୁଳି ବାନ୍ଧିବା ଲାଗି ଟଙ୍କା ଥଳିର ମୁହଁ ଖୋଲି ଦେଇଥିଲେ । ତା' ସତ୍ତ୍ୱେ ସେ ସହଜ ଉପାୟରେ ଜନତା-ଜନାର୍ଦ୍ଦନଙ୍କୁ ନିଜର ସମର୍ଥକ କରାଇବା ଅଭିଳାଷରେ ଶେଖ୍‌ ଅବ୍‌ଦୁଲ୍ଲାଙ୍କ ସମର୍ଥିତ ସରଳ ମାର୍ଗରେ ଅଗ୍ରସର ହେବାକୁ ଲାଗିଲେ । ଯେଉଁ ବଖ୍‌ଶୀ ସାହେବ କାଶ୍ମୀରକୁ

ଭାରତର ଅବିଚ୍ଛେଦ୍ୟ ଅଙ୍ଗ ବୋଲି ଦେଶବିଦେଶରେ ଢେଙ୍କ୍ରା ପିଟି ଶସ୍ତା ଗୌରବ ଅର୍ଜନ କରିଥିଲେ, ସେହି ବ୍ୟକ୍ତି 'କାଶ୍ମୀର, କାଶ୍ମୀରବାସୀଙ୍କର' ଏବଂ କାଶ୍ମୀରବାସୀ ନିଜ ଦେଶର ଦୁଃଖସୁଖକୁ ଆଦର ନେଇ କାର୍ଯ୍ୟ କରିବା ଉଚିତ, ଯେକୌଣସି ଅସୁବିଧାଜନକ ପରିସ୍ଥିତିର ସମ୍ମୁଖୀନ ହୋଇ ସେମାନେ ମାତୃଭୂମିର ଗୌରବ ଅକ୍ଷୁଣ୍ଣ ରଖିବା ଉଚିତ ବୋଲି ଇଙ୍ଗିତ ଦେବାକୁ ପଶ୍ଚାତ୍‌ପଦ ହେଲେ ନାହିଁ । ଥରେ 'ଲାଲ୍‌ଚୌକ'ଠାରେ ଭାଷଣ ପ୍ରସଙ୍ଗରେ ସେ ଆହୁରି ଟିକିଏ ଆଗକୁ ଅଗ୍ରସର ହୋଇ କହିଥିଲେ :

"ଆମେ ବିନା କୁଣ୍ଠାରେ ଭାରତଠାରୁ କରଜ କରୁଛୁ ବୋଲି ଯେଉଁମାନେ ଭାବୁଛନ୍ତି, ସେମାନଙ୍କ ଧାରଣା ଭୁଲ । ଆମେ କାଶ୍ମୀର ଲାଗି ଭାରତଠାରୁ ଯେଉଁ କରଜ ଆଣୁଛୁ, ତାକୁ ମଧ୍ୟ ଆମେ ସୁଝି ଦେଉଛୁ । ଆହୁରି ମଧ୍ୟ ଅନ୍ୟ ଗୋଟିଏ ଦୃଷ୍ଟିକୋଣରୁ ଦେଖିଲେ—ଭାରତ ଅନ୍ୟ ଦେଶମାନଙ୍କଠାରୁ କରଜ ଆଣୁଛି ଏବଂ ସେହି ଧନରୁ ଆମକୁ କିଛି ଦେଉଛି ··· ।"

ସ୍ୱା' ମଧ୍ୟରେ ଆଉ ଗୋଟିଏ ଉଲ୍ଲେଖଯୋଗ୍ୟ ଘଟଣା ଘଟିଗଲା । ମହାରାଣୀ ତାରାଦେବୀ କୌଣସି କାର୍ଯ୍ୟବଶତଃ 'ପହଲ୍‌ଗାମ୍' ଯାଇଥିଲେ । ସେଠାକାର କେତେକ ଅଧିବାସୀ ଉଚିତ ସମୟ ବୋଲି ମନେକରି ତାଙ୍କ (ମହାରାଣୀ ) ସହିତ ସାକ୍ଷାତ୍ କରି, ତାଙ୍କୁ ଗୋଟିଏ ଭଗ୍ନାବଶେଷ ଶିବ ମନ୍ଦିରର ପରିଦର୍ଶନରେ ଯିବା ଲାଗି ଅନୁରୋଧ କଲେ । ମହାରାଣୀ ସେମାନଙ୍କ ଅନୁରୋଧ ରକ୍ଷାକରି ଶିବଦର୍ଶନ ଲାଗି ସେଠାକୁ ଗଲେ । ସେଠାରୁ ଫେରିବାବେଳେ ସେଠାକାର ଭକ୍ତବୃନ୍ଦ, ମନ୍ଦିରର ଜୀର୍ଣ୍ଣୋଦ୍ଧାର କରିବାଲାଗି ମହାରାଣୀଙ୍କଠାରେ ନିବେଦନ ଜଣାଇଲେ । କଥାପ୍ରସଙ୍ଗରେ ମହାରାଣୀ କହିଲେ :

"ମୁଁ ମଧ୍ୟ ମନ୍ଦିରର ଜୀର୍ଣ୍ଣୋଦ୍ଧାରଲାଗି ଚିନ୍ତା କରୁଥିଲି । ଶ୍ରୀନଗରରେ ପହଞ୍ଚିବାମାତ୍ରେ ଯୁବରାଜଙ୍କ ସହିତ ମୁଁ ଏ ବିଷୟରେ ଆଲୋଚନା କରିବି । ଆପଣମାନେ ନିଶ୍ଚିନ୍ତ ରହନ୍ତୁ । ଖୁବ୍ ଶୀଘ୍ର ନୂତନ ମନ୍ଦିର ନିର୍ମାଣ ହୋଇଯିବ । ଏହା ତ ଆହୁରି ଆଗରୁ ହୋଇସାରନ୍ତାଣି; କିନ୍ତୁ ମୋତେ ଏ ବିଷୟ ଜଣା ନ ଥିଲା ।"

ଏହା ଶୁଣି ଲୋକମାନେ ଆନନ୍ଦିତ ହେଲେ ।

ଶ୍ରୀନଗର ଫେରିଆସି ମହାରାଣୀ ଯୁବରାଜଙ୍କ ସହିତ ଏ ବିଷୟରେ ଆଲୋଚନା କଲେ । ମହାରାଣୀଙ୍କ ପ୍ରସ୍ତାବକୁ ମା'ଙ୍କର ଆଦେଶ ବୋଲି ମନେକରି ପରଦିନ ଯୁବରାଜ 'ପହଲ୍‌ଗାମ୍' ଯାତ୍ରା କଲେ । ସେଠାରୁ ଫେରିଆସିବା ପରେ ପରେ ସେ ମନ୍ଦିରର ଜୀର୍ଣ୍ଣୋଦ୍ଧାର ସମ୍ବନ୍ଧରେ ଯୋଜନା ପ୍ରସ୍ତୁତ କରି କେତେକ କାରିଗରଙ୍କୁ 'ପହଲ୍ ଗାମ୍' ପଠାଇଦେଲେ । କିନ୍ତୁ ପ୍ରଧାନମନ୍ତ୍ରୀ ବଖ୍‌ଶୀ ଏ ସମ୍ବାଦ ପାଇବା ମାତ୍ରେ ମନ୍ଦିରର ଜୀର୍ଣ୍ଣୋଦ୍ଧାର କାର୍ଯ୍ୟ ବନ୍ଦ କରାଇଦେଲେ । ସେଠାରେ ମନ୍ଦିର ନିର୍ମିତ ହେଲେ, ତାଙ୍କର କିଛି ଅସୁବିଧା ହେଉ ନ ଥିଲା କିମ୍ବା ତାଙ୍କ ଧର୍ମଭାବନା ଉପରେ କୌଣସି ପ୍ରକାର କୁପ୍ରଭାବ ପଡ଼ିବାର ମଧ୍ୟ ସମ୍ଭାବନା ନ ଥିଲା । ତାହା ବ୍ୟକ୍ତିଗତ ସରକାରଙ୍କ ଆର୍ଥିକ ସମ୍ବଳର ମଧ୍ୟ କୌଣସି ଦୁରୁପଯୋଗର ସମ୍ଭାବନା ନ ଥିଲା । ତାହା ଥିଲା କେବଳ ଗୋଟିଏ ପ୍ରାଚୀନ ମନ୍ଦିରର ଜୀର୍ଣ୍ଣୋଦ୍ଧାର କାର୍ଯ୍ୟ । ସବୁ ଦୃଷ୍ଟିରୁ ବିଚାର କଲେ—ତାହା ରାଜ୍ୟର ଏକ ସୁବ୍ୟବସ୍ଥା ମାତ୍ର ଥିଲା । ତା'ସତ୍ତ୍ୱେ ବଖ୍‌ଶୀ ମହାଶୟଙ୍କ ପକ୍ଷରୁ କାହିଁକି ଯେ ଆପତ୍ତି ଉଠିଲା, ତାହା କେବଳ ସେ ହିଁ ଜାଣନ୍ତି । ଅନ୍ୟ କୌଣସି ସ୍ଥାନରେ ନୂତନ ମନ୍ଦିର ନିର୍ମାଣ କରାଯାଉ ପଛକେ; କିନ୍ତୁ ସେହି ନିର୍ଦ୍ଦିଷ୍ଟ ସ୍ଥାନରେ ଜୀର୍ଣ୍ଣୋଦ୍ଧାର କାର୍ଯ୍ୟ ନ ହେଉ—ଏହା ଥିଲା ପ୍ରଧାନମନ୍ତ୍ରୀଙ୍କର ଏକାନ୍ତ ଇଚ୍ଛା ! ସେହି ପ୍ରଶ୍ନ ଉପରେ 'ସଦର୍-ଏ-ରିୟାସତ୍' ଓ ପ୍ରଧାନମନ୍ତ୍ରୀଙ୍କ ମଧ୍ୟରେ ମତଭେଦ ତୀବ୍ର ଆକାର ଧାରଣ କଲା । ବଖ୍‌ଶୀ ଗୁଲାମ୍ ମହମ୍ମଦ ମଧ୍ୟ ଗୋଟିଏ-ଦୁଇଟି ସଭାରେ ସେହି ଜୀର୍ଣ୍ଣୋଦ୍ଧାର ଉପରେ ଆଲୋଚନା କରି ଯୁବରାଜ କରଣ-ସିଂହଙ୍କ ବିରୁଦ୍ଧରେ ବିଷୋଦ୍‌ଗାର କରିବାକୁ ଛାଡ଼ିଲେ ନାହିଁ । କିନ୍ତୁ ତାଙ୍କର ସେ ପ୍ରକାର ଅପପ୍ରଚାରର ସତ୍ତ୍ୱେ ଜନସାଧାରଣଙ୍କ ଉପରେ ଯେଉଁ ଧରଣର ପ୍ରଭାବ ପଡ଼ିବ ବୋଲି ସେ ଆଶା କରିଥିଲେ, ତାଙ୍କର ସେ ପ୍ରକାର ଉଦ୍ଦେଶ୍ୟ ସାଧିତ ହେଲା ନାହିଁ । ତାଙ୍କର ସମସ୍ତ ପ୍ରକାର ଅପଚେଷ୍ଟା ବିଫଳ ହେଲା ଏବଂ ଲୋକମାନେ ମଧ୍ୟ ତାଙ୍କ ପ୍ରରୋଚନାରେ ପ୍ରଭାବିତ ହେଲେ ନାହିଁ । ଖୁବ୍ ସମ୍ଭବତଃ, ଆଗାମୀ ନିର୍ବାଚନ ଦୃଷ୍ଟିରୁ ବଖ୍‌ଶୀଜୀଙ୍କ ବନ୍ଧୁମାନେ 'ସଦର୍-ଏ-ରିୟାସତ୍'ଙ୍କ ସହିତ ବିରୋଧଭାବ ପୋଷଣ ନ କରିବାକୁ ମତ ଦେଇଥିବେ ! ତେଣୁ ସେ କାହାରି ସହିତ ଶତ୍ରୁତା ନ କରି ସମସ୍ତଙ୍କୁ ବନ୍ଧୁତାସୂତ୍ରରେ ଆବଦ୍ଧ କରିବାଲାଗି ରୀତିମତ ଯୋଜନାବଦ୍ଧ ଚଳନା କରିବା ଆରମ୍ଭ କଲେ । କାରଣ, ଏତଦ୍‌ବ୍ୟତୀତ ତାଙ୍କର ଅନ୍ୟ କୌଣସି ଉପାୟ ନ ଥିଲା ଏବଂ ଖୁବ୍ ଅଳ୍ପଦିନ ମଧ୍ୟରେ ତାଙ୍କର

ସମସ୍ତ ପ୍ରକାର 'ଗୁଲବାଜ' ପଦାରେ ପଡ଼ିଯିବାର ସମ୍ଭାବନା ଥିଲା । ଆହୁରି ମଧ୍ୟ, ଦିନକୁ ଦିନ ରାଜ୍ୟରେ ତାଙ୍କର ଶତ୍ରୁ ସଂଖ୍ୟା ବୃଦ୍ଧି ପାଉଥିବାରୁ ସେ ଏପ୍ରକାର ନୀତି ଗ୍ରହଣ କରିବାକୁ ବାଧ୍ୟ ହୋଇଥିଲେ । ସେ ସମୟରେ ବିଶିଷ୍ଟ ବ୍ୟକ୍ତିମାନଙ୍କ ସହିତ ଶତ୍ରୁତା କରିବା ଅର୍ଥ--ତାଙ୍କ ବିରୁଦ୍ଧରେ ସୃଷ୍ଟିପାତ ହୋଇଥିବା ଯଜ୍ଞକୁଣ୍ଡରେ ଘୃତାହୁତି ଦେବା । କରଣ ସିଂହଙ୍କ ପ୍ରତି ଜନସାଧାରଣଙ୍କର ଯେଉଁ ସଦ୍‌ଭାବନା ଥିଲା ଏବଂ ତାଙ୍କ କାର୍ଯ୍ୟକଳାପଫଳରେ, ଯେପରି ତାଙ୍କର ଲୋକପ୍ରିୟତା ବୃଦ୍ଧି ପାଉଥିଲା, ସେ ସବୁକୁ ଆଖିଆଗରେ ରଖି ବକ୍‌ଶୀ ଗୁଲାମ୍ ମହମ୍ମଦ୍ ଜାଣିଶୁଣି ନୀରବ ରହିବାକୁ ବାଧ୍ୟ ହୋଇଥିଲେ ।

ପରିଶେଷରେ, ନିଜର ହିତୈଷୀ ବନ୍ଧୁମାନଙ୍କର ପରାମର୍ଶ ଅନୁସାରେ ବକ୍‌ଶୀ ଗୁଲାମ୍ ମହମ୍ମଦ ନିଜର ବିରୋଧ-ଭାବନାରୁ ଓହରିଯାଇ କରଣ ସିଂହଙ୍କ ମନ୍ଦିର ନିର୍ମାଣକାର୍ଯ୍ୟ ସୁରକ୍ଷିତରୂପେ ସମ୍ପାଦିତ ହେବାରେ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ତାଙ୍କ ସହିତ ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ସ୍ଥାପନର ଆପାତତଃ ଛଳନା ଆରମ୍ଭ କରିଦେଲେ । କରଣ ସିଂହ ମଧ୍ୟ କମ୍ ଚତୁର ବ୍ୟକ୍ତି ନ ଥିଲେ ! ସେ ବକ୍‌ଶୀଙ୍କ ସହିତ ଅନୁରୂପ ବ୍ୟବହାର ପ୍ରଦର୍ଶନ କରିବାରେ ସଫଳତା ହାସଲ କଲେ । ସେ ଜଣେ ସାଧାରଣ ରାଜନୀତିଜ୍ଞ ନ ଥିଲେ । ତେଣୁ ସେ 'ଯେସାକୁ ତେସା' ବ୍ୟବହାର ଦେଖାଇ ନିଜ ବୁଦ୍ଧିମତ୍ତାର ପରିଚୟ ଦେଇଥିଲେ । ତାଙ୍କର 'ରଥ ଦେଖା ଓ କୋଳ ବିକା' ଉଭୟ କାର୍ଯ୍ୟ କରିବାର ଥିଲା; ତେଣୁ ସେ ଯଥାଶୀଘ୍ର ସମ୍ଭବ ମନ୍ଦିରର ଜୀର୍ଣ୍ଣୋଦ୍ଧାର କାର୍ଯ୍ୟ ସମ୍ପାଦନ କରି ଅତୀତର ଘଟଣାଗୁଡ଼ିକୁ ପାଶୋରି ଦେବାର 'ସୁଆଙ୍ଗ' ଆରମ୍ଭ କରିଦେଲେ ।

ନିର୍ବାଚନର ସମୟ ପନେଇ ଆସିବାରୁ, ବକ୍‌ଶୀ ନିଜର ଯୋଜନା ଅନୁସାରେ ସମସ୍ତଙ୍କ ସହିତ ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ସ୍ଥାପନ କରିବାରେ ଲାଗିପଡ଼ିଲେ । କାରଣ ନିର୍ବାଚନରେ ଜୟଯୁକ୍ତ ହୋଇ ସେ ପୁଣି ପ୍ରଧାନମନ୍ତ୍ରୀ ଆସନରେ ଆସୀନ ହେବାକୁ ମନେ ମନେ ଖିବ୍ ଲାଗିପଡ଼ିଲେ । ତା'ପରେ ପାଞ୍ଚ ବର୍ଷ କାଳ ତାଙ୍କର 'ପୁଅ ବା'ର ଚେର' ! ସେତେବେଳେ ସେ ପୁଣି ବିରୋଧୀଦଳକୁ ଜବତ କରିବାରେ ହୁଏତ ଲାଗିଯିବେ । ସେହି ଯୋଜନା ଅନୁସାରେ ସେ ମଧ୍ୟ ଗୁଲାମ୍ ମହମ୍ମଦ୍ ସାଦିକ୍‌ଙ୍କ ସହିତ କଥାବାର୍ତ୍ତା ଆରମ୍ଭ କରି ନିଜର ଅତୀତର କାର୍ଯ୍ୟକଳାପଲାଗି ଦୁଃଖ ପ୍ରକାଶ କଲେ ଏବଂ ନିର୍ବାଚନ

ଶେଷ ହେବାପରେ, ଜନମତକର ତଥା ରାଷ୍ଟ୍ରୀୟ ସଙ୍ଗଠନରେ ଅଧିକ ମନୋଯୋଗୀ ହୋଇ ସତର୍କତାର ସହିତ କାର୍ଯ୍ୟ କରିବାକୁ ମଧ୍ୟ ପ୍ରତିଶ୍ରୁତ ହେଲେ । ତା' ସଙ୍ଗେ ସଙ୍ଗେ, ରାଜ୍ୟରେ ବୃଦ୍ଧି ପାଇଥିବା କଳାବଜାର ତଥା ଦୁର୍ନୀତିର ମୂଳୋତ୍ପାଟନଲାଗି ସାଦିକ୍‌ଙ୍କ ମନରେ ବିଶ୍ୱାସ ଜାତ କରାଇଲେ । ସେହି ଅନୁସାରେ କେତେଦିନ ଧରି କଥାବାର୍ତ୍ତା ଚାଲିଲା । ଗୁଲାମ୍ ମହମ୍ମଦ୍ ସାଦିକ୍‌ଙ୍କ ପକ୍ଷରେ ମଧ୍ୟ ସନ୍ଧିସୂତ୍ରରେ ଆବଦ୍ଧ ହେବା ବ୍ୟତୀତ ଅନ୍ୟ ଉପାୟ ନ ଥିଲା । ଅବଶ୍ୟ ସେ ଏହା ମଧ୍ୟରେ 'ସଦର୍‌-ଏ-ରିୟାସତ୍‌' କରଣ ସିଂହଙ୍କ ସହିତ ବରାବର ଆଲୋଚନା ଚଳାଇଥିଲେ । ତାଙ୍କ ନବଗଠିତ 'ଡେମୋକ୍ରାଟିକ୍ ନେସନାଲ୍ କନ୍‌ଫରେନ୍‌ସ' ମଧ୍ୟ ସେତେ ଶକ୍ତିଶାଳୀ ଦଳରୂପେ ରାଜ୍ୟରେ ପ୍ରତିଷ୍ଠିତ ହୋଇ ନ ଥିଲା । ତେଣୁ ଆଗାମୀ ନିର୍ବାଚନରେ ବିଜୟ ହାସଲ କରି ନିଜ ଦଳଦ୍ୱାରା ସରକାର ଗଠନ କରିବାର ଆଦୌ ସମ୍ଭାବନା ନ ଥିଲା । ସେଥି-ନିମିତ୍ତ ବକ୍‌ଶୀଙ୍କ ସହିତ ମିଳମିଶି ତାଙ୍କର ମୂଳୋତ୍ପାଟନ କରିବାରେ ସେ ବିଶେଷ ତତ୍ପର ହୋଇପଡ଼ିଲେ । ପରିଶେଷରେ, ବକ୍‌ଶୀ ଓ ସାଦିକ୍‌ଙ୍କ ମଧ୍ୟରେ ଲୋକଦେଖାଣିଆ ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ସ୍ଥାପିତ ହେଲା ।

ସନ୍ ୧୯୬୨ ସାଲରେ ନିର୍ବାଚନ ଆରମ୍ଭ ହେଲା ଏବଂ ବକ୍‌ଶୀ ଦଳବଳ ସହିତ ବିଜୟୀ ହୋଇ ସରକାର ଗଠନ କରି ଜାମ୍ମୁ ଓ କାଶ୍ମୀର ରାଜ୍ୟର ପ୍ରଧାନମନ୍ତ୍ରୀରୂପେ ନିର୍ବାଚିତ ହେବା ସଙ୍ଗେ ସଙ୍ଗେ, ଯୁବରାଜ କରଣ ସିଂହ ମଧ୍ୟ 'ସଦର୍‌-ଏ-ରିୟାସତ୍‌'ଭାବରେ ସର୍ବସମ୍ମତିକ୍ରମେ ଅଧିଷ୍ଠିତ ହେଲେ । ତା'ହେଲେ ମଧ୍ୟ ସେ ବକ୍‌ଶୀଙ୍କ କାର୍ଯ୍ୟକଳାପପ୍ରତି ସତର୍କ ଦୃଷ୍ଟିଦେଇ ଭବିଷ୍ୟତ କାର୍ଯ୍ୟପନ୍ଥାର ଅନୁସରଣ କରିବାରେ ତତ୍ପର ହୋଇପଡ଼ିଲେ ।



# ଚଉଦ

'ସାଦର୍-ଏ-ରିୟାସତ୍' କରଣ ସିଂହ ଏହା ମଧ୍ୟରେ 'ଡକ୍ଟର୍' ଉପାଧିରେ ଭୂଷିତ ହୋଇସାରିଥିଲେ । ସେ ମହର୍ଷି ଅରବିନ୍ଦଙ୍କ ୧୮୦୩-୧୯୧୦ ମଧ୍ୟରେ ରାଜନୈତିକ ବିଚାରଧାରା ଉପରେ ଗବେଷଣାମୂଳକ ପ୍ରବନ୍ଧ ଲେଖି ପିଏଚ.ଡି. ଡିଗ୍ରୀ ଲାଭ କରିଥିଲେ । ତାଙ୍କ ଜୀବନରେ ଏକ ମହତ୍ତ୍ୱାକାଙ୍‌କ୍ଷା ପୂର୍ଣ୍ଣ ହୋଇଗଲା । ଶିକ୍ଷାକ୍ଷେତ୍ରରେ ଯେଉଁ ସର୍ବୋଚ୍ଚ ଉପାଧିପ୍ରତି ବିଦ୍ୟାଳୟ-ମାନଙ୍କରେ ଆକାଙ୍‌କ୍ଷା ଜାତ ହୋଇଥାଏ, ସେହି ଉନ୍ନତ ସୋପାନରେ ସେ ନିଜକୁ ପହଞ୍ଚାଇ ପାରିଥିଲେ । ମେହି ଲୌକିକ ଉପାଧିଗୁଡ଼ିକରେ ମଧ୍ୟ କେତେକ ମହତ୍ତ୍ୱ ରହିଛି ବୋଲି ତାଙ୍କର ଧାରଣା ଏବଂ ତାହା ମନୁଷ୍ୟର ପୁରୁଷାର୍ଥ ତଥା ଉନ୍ନତ ବ୍ୟକ୍ତିତ୍ୱର ଉଦାହରଣ ବୋଲି ସେ ମତ ବ୍ୟକ୍ତ କରନ୍ତି । ପ୍ରତ୍ୟେକ କ୍ଷେତ୍ରରେ ଅନେକ ସଙ୍ଘର୍ଷର ସମ୍ମୁଖୀନ ହୋଇ ମଧ୍ୟ ଜୀବନର କର୍ତ୍ତବ୍ୟଗୁଡ଼ିକପ୍ରତି ସଦା-ସର୍ବଦା ସଚେତନ ଥାଇ କାର୍ଯ୍ୟ କରିବାରେ ସେ ହେଉଛନ୍ତି ଜଣେ ଦକ୍ଷ ବ୍ୟକ୍ତି । ସେ ସବୁ ସମୟରେ ନିଜ ପ୍ରତିଭା ବଳରେ ବହୁମୁଖୀ କର୍ମଯୋଜନାର ଅଭ୍ୟାସରେ ରତ ହୋଇଥା'ନ୍ତି କେବଳ ସେତିକି ନୁହେଁ, ତାଙ୍କ ହୃଦୟ-ରାଜ୍ୟରେ କବିତ୍ୱର ଅସୀମ ଶକ୍ତି ବିଦ୍ୟମାନ ରହିଛି । ତାଙ୍କର ଲେଖନୀରୁ ମଧ୍ୟ କେତେଗୋଟି କବିତା ଓ ପ୍ରବନ୍ଧ ପୁସ୍ତକ ପ୍ରକାଶ ପାଇଛି । ସେ ଜୀବନର ମହତ୍ତ୍ୱ ତଥା ମୂଲ୍ୟ ଉପଲବ୍‌ଧି କରନ୍ତି । ତାଙ୍କର ଭାଷାରେ କହିବାକୁ ଗଲେ :

"ଜୀବନର ଉଦ୍ଦେଶ୍ୟ କେବଳ ଜଞ୍ଜାଳର ସମ୍ମୁଖୀନ ହେବାଲାଗି ନୁହେଁ; ବରଂ ପାରିବାରିକ ତଥା ଆତ୍ମିକ ଶାନ୍ତି ଲାଭକରିବା ହେଉଛି ଜୀବନର ଧ୍ୟେୟ । ତା'ଫଳରେ ପ୍ରାଣୀ ଜୀବନରେ ବାସ୍ତବିକ ଆନନ୍ଦ ଅନୁଭବ କରି-ପାରେ ! ରାଷ୍ଟ୍ର...ତଥା ସମାଜପ୍ରତି ମନୁଷ୍ୟର ଯେଉଁ ଦାୟିତ୍ୱ, ତାହା ସୁଷ୍ଠୁରୂପେ ସମ୍ପାଦନ କରିବା କେବଳ ଜୀବନର ଉଦ୍ଦେଶ୍ୟ ନୁହେଁ;

ଏହା ହିଁ ମଣିଷ ଜୀବନର ସର୍ବଶ୍ରେଷ୍ଠ ଉପଲବ୍ଧି ତଥା ପରିଣତି ମଧ୍ୟ ।"

ଏହା ମଧ୍ୟରେ ଦେଶରେ ଏକ ନାହିଁ ନ ଥିବା ଦୁର୍ଘଟଣା ଘଟିଗଲା । ଦେଶବାସୀ ଯାହା ସ୍ୱପ୍ନରେ ସୁଦ୍ଧା କଳ୍ପନା କରି ନ ଥିଲେ, ତାହା ପ୍ରତ୍ୟକ୍ଷଭାବରେ ଅନୁଭୂତ ହେଲା । 'ହିନ୍ଦୀ-ଚୀନୀ ଭାଇ ଭାଇ' ଧ୍ୱନି କରି ଆମ ଆଖିଆଗରେ ଭେଳକି ଲଗାଇଥିବା ଚୀନାମାନେ ଭାରତଉପରେ ଅମାନୁଷିକ ଆକ୍ରମଣ କରିଦେଲେ । ଚୀନାମାନଙ୍କର ଭାଇ ପିଠିରେ ଛୁରୀ ଭୁଷିବା ନୀତି ଦେଖି ଦୁନିଆ ଲୋକେ ବିସ୍ମିତ ହୋଇଗଲେ । ଭାରତବାସୀ ଏପ୍ରକାର ଆକ୍ରମଣଲାଗି ପ୍ରସ୍ତୁତ ନ ଥିଲେ; ତେଣୁ ବ୍ୟଗ୍ରତାର ସହିତ ଶତ୍ରୁର ସମ୍ମୁଖୀନ ହେବାଲାଗି ସମସ୍ତେ ଏକଲପ୍ରରେ ଲାଗିପଡ଼ିଲେ । ରାଜ୍ୟ ମଧ୍ୟରେ ଥିବା ସମସ୍ତ ଭେଦଭାବକୁ ଭୁଲିଯାଇ ଭାରତବାସୀ ଦଳମତ-ନିର୍ବିଶେଷରେ ରାଷ୍ଟ୍ରୀୟ ଧ୍ୱଜାତଳେ ଏକଜୁଟ ହେଲେ । ସେ ଯେଉଁ ଦଳର ହୋଇଥାଉ ନା କାହିଁକି, ଦେଶର ମାନମହତ୍ତ୍ୱ ରକ୍ଷା କରି-ବାରେ ଏକପ୍ରାଣ ହୋଇ ଭାରତମାତାର ଜୟଗାନ କଲେ । ଦେଶମାତୃକାର ଗୌରବ ଅକ୍ଷୁଣ୍ଣ ରଖିବାଲାଗି ସମସ୍ତେ ଆପ୍ରାଣ ଚେଷ୍ଟା କରିବାକୁ ଲାଗିଲେ । ଭାରତୀୟ ଜବାନ୍‌ମାନେ ଆତ୍ମବଳିଦାନର ଅଦ୍ଭୁତ ଉଦାହରଣ ଉପସ୍ଥାପିତ କରିଦେଲେ । ଦେଶବାସୀମାନେ ମଧ୍ୟ ଅନ୍ୟାନ୍ୟ ଆବଶ୍ୟକୀୟ ସାମଗ୍ରୀ ପ୍ରସ୍ତୁତ କରି ଜବାନ୍‌ମାନଙ୍କୁ ସମସ୍ତ ପ୍ରକାର ସାହାଯ୍ୟ ଯୋଗାଇଦେଲେ । ସେହି ଦୁର୍ଦ୍ଦିନରେ ଡକ୍ଟର୍ କରଣ ସିଂହ ଜାମ୍ମୁରେ 'ସିଟିଜନ୍ କାଉନ୍‌ସିଲ' ନାମକ ଏକ ସଂସ୍ଥା ଗଠନ କରି, ତା'ର ଜରିଆରେ 'ରାଷ୍ଟ୍ରୀୟ-ସୁରକ୍ଷାପାଣ୍ଠି' ଲାଗି ଚାନ୍ଦା ସଂଗ୍ରହ କରିବାରେ ଲାଗିପଡ଼ିଲେ । ଏହି ଗୁରୁତ୍ୱପୂର୍ଣ୍ଣ ତଥା ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟରେ ତାଙ୍କ ପତ୍ନୀ ଯଶୋରାଜ୍ୟଲକ୍ଷ୍ମୀ ଯେଉଁ ତ୍ୟାଗ ସ୍ୱୀକାର କରିଥିଲେ, ତାହା ବାସ୍ତବରେ ଉଲ୍ଲେଖଯୋଗ୍ୟ । ସେ ଘର ଘର ବୁଲି ବହୁ ଟଙ୍କା ସଂଗ୍ରହ କରିବା ସଙ୍ଗେ ସଙ୍ଗେ ଭାରତୀୟ ଜବାନ୍ ଭାଇମାନଙ୍କ ଲାଗି ହଜାର ହଜାର ସ୍ୱେଟର୍ ବୁଣାଇଥିଲେ ।

ଏହି ସମୟରେ ରାଷ୍ଟ୍ରପତିଙ୍କଦ୍ୱାରା ଡ. କରଣ ସିଂହ 'ମେଜର୍ ଜେନେରାଲ୍' ଉପାଧିରେ ବିଭୂଷିତ ହେଲେ । ତେଣୁ 'ସଦର୍-ଏ-ରିୟାସତ୍' ଡ. କରଣ ସିଂହ 'ମେଜର୍ ଜେନେରାଲ୍' ରୂପେ ସୀମାନ୍ତ ଅଞ୍ଚଳକୁ ପରିଦର୍ଶନରେ ଯାଇ ଜବାନ୍-ମାନଙ୍କ ମନରେ ଅପୂର୍ବ ସାହସ ଓ ଆତ୍ମବଳ ଜାଗ୍ରତ କରାଇବା ଉଦ୍ଦେଶ୍ୟରେ

ଉତ୍ସାହପୂର୍ଣ୍ଣ ବାଣୀ ଶୁଣାଇଲେ । କେବଳ ସେତିକ ନୁହେଁ, ଦେଶର ଆବାଳ-ବୃଦ୍ଧବନିତା ସେମାନଙ୍କର ଗୌରବାନ୍ୱିତ ବଳିଦାନଲାଗି ସେମାନଙ୍କୁ ଉଚ୍ଛ୍ୱସିତ ପ୍ରଶଂସା କରୁଛନ୍ତି ବୋଲି କହି, କେବେ ସେମାନେ ଜୟଯୁକ୍ତ ହୋଇ ମାତୃଭୂମିର ବିଜୟ-ବୈଜୟନ୍ତୀ ଉଡ଼ାଇପାରିବେ, ସେ ସମ୍ବନ୍ଧରେ ମଧ୍ୟ ସେମାନଙ୍କୁ ପ୍ରଶଂସା କରିବାକୁ ଲାଗିଲେ ।

ହଠାତ୍ ଚୀନାମାନଙ୍କ ତରଫରୁ ଯୁଦ୍ଧବିରତି (Cease-fire) କାର୍ଯ୍ୟ-କାରୀ କରାଗଲା । ସେମାନେ ନିଜ ସୀମାନ୍ତକୁ ଫେରିଗଲେ ସତ; କିନ୍ତୁ ତାହା ଦେଶପକ୍ଷରେ ଏକ ଚେତାବନୀ ଥିଲା । ତଥାପି ସେମାନେ ଆକ୍ରମଣ କରି-ପାରନ୍ତି ଏବଂ 'ସମାଜବାଦ'ର ଛଳନା କରି ଭାରତକୁ ଅଧିକାର କରିବାର ଅପଚେଷ୍ଟା ଚଳାଇପାରନ୍ତି—ଏ ଆଶଙ୍କା ବରାବର ଲାଗିରହିଲା । ଆଉ ଅନ୍ୟ କଥା କହିବା କ'ଣ? ସେମାନେ ଭାରତର ପଡ଼ୋଶୀ ରାଜ୍ୟଗୁଡ଼ିକୁ ଭାରତ ବିରୁଦ୍ଧରେ ଉତ୍ସାହିତ କରିବା ସଙ୍ଗେ ସଙ୍ଗେ ଆଭ୍ୟନ୍ତରୀଣ ଗଣ୍ଡଗୋଳ ଘଟାଇବାଲାଗି ସବୁବେଳେ ଓର ଉଣ୍ଡି ବସିଲେ । କାରଣ ଭାରତର ପ୍ରଗତି ତଥା ଭାରତବାସୀଙ୍କର ମାନବିକତାପ୍ରତି ଚୀନର ଶାସକମାନେ ଅସନ୍ତୁଷ୍ଟ ହୋଇ ଉଠିଥିଲେ । ଡକ୍ଟର୍ କରଣ ସିଂହ ଏସବୁ ବିଷୟର ସମୀକ୍ଷା କରି ଗୋଟିଏ ସାଧାରଣ ସଭାରେ କହିଥିଲେ:

"ଚୀନର ଶାସକଗୋଷ୍ଠୀ ଆମ ଉପରେ ଆକ୍ରମଣ କରିବା ଫଳରେ ଆମ ଆଗରେ ସେମାନଙ୍କର ମତିଗତି ସୁସ୍ପଷ୍ଟ ହୋଇଗଲା । ସେମାନଙ୍କ ମନ୍ଦ ପ୍ରବୃତ୍ତିର ଚରିତାର୍ଥଲାଗି ସେମାନେ ନିଜର ସୁବିଧା ଅନୁସାରେ ଆମ ଉପରେ ପୁଣି ଆକ୍ରମଣ କରିବାଲାଗି ପ୍ରଚେଷ୍ଟା କରିବେ । ସେମାନେ ଯେଉଁପରିଭାବରେ ଯୁଦ୍ଧସାମଗ୍ରୀ ପ୍ରସ୍ତୁତିରେ ଲାଗିପଡ଼ିଛନ୍ତି, ସେଥିରୁ ସ୍ପଷ୍ଟ ଜଣାପଡ଼ୁଛି ଯେ, ସେମାନେ କେବଳ ଆମକୁ ଏଥର ଧମକ ମାତ୍ର ଦେଇଛନ୍ତି । ତେଣୁ ଆମର କର୍ତ୍ତବ୍ୟ ହେଉଛି—ଏଥର କେବଳ ସେମାନଙ୍କ ଆକ୍ରମଣର ଆତ୍ମରକ୍ଷାମୂଳକ ସମ୍ମୁଖୀନ ନ ହୋଇ ଇଟାର ଜବାବ ପଥରରେ ଦେବାକୁ ହେବ । ତେଣୁ ଆମର ଯୁଦ୍ଧପ୍ରସ୍ତୁତିର ଅଭିବୃଦ୍ଧି ସଙ୍ଗେ ସଙ୍ଗେ ଯଦି ଆମ୍ଭେମାନେ ରାଜନୈତିକ, ସାମାଜିକ ତଥା ଆର୍ଥିକ ଉନ୍ନତି କରିପାରିବା, ତା'ହେଲେ ଆମପକ୍ଷରେ ସେମାନଙ୍କର ସମ୍ମୁଖୀନ ହେବା ସମ୍ଭବ ହେବ ।

ଏହି ଉନ୍ନତିର ମାର୍ଗରେ ଅଗ୍ରସର ହେବାଲାଗି ଆମକୁ ଅକ୍ଲାନ୍ତ ପରିଶ୍ରମ କରିବାକୁ ପଡ଼ିବ ।

"ଚୀନାମାନେ ସେମାନଙ୍କ ସୈନ୍ୟଶକ୍ତିର ଅଭିବୃଦ୍ଧି ଅସାଧାରଣ ଭାବରେ କରିସାରିଛନ୍ତି । ତେଣୁ ତାଙ୍କର ସୈନ୍ୟସଂଖ୍ୟା ଆମଠାରୁ ବହୁଗୁଣରେ ବେଶି । ସେମାନେ ଲକ୍ଷ ଲକ୍ଷ ସୈନ୍ୟ ଭିତରୁ ସୀମାରେ ଏକତ୍ରିତ କରି ରଖିଛନ୍ତି ଏବଂ ଯେକୌଣସି ମୁହୂର୍ତ୍ତରେ ଆମର ସୀମାରେଖା ଉଲ୍ଲଙ୍ଘନ କରି ଆମ ଉପରେ ଆକ୍ରମଣ କରିପାରନ୍ତି । ତେଣୁ ଆମ୍ଭମାନଙ୍କର ପ୍ରଥମ କର୍ତ୍ତବ୍ୟ ହେଉଛି—ଯୁଦ୍ଧସାମଗ୍ରୀ ଓ ସୈନ୍ୟସଂଖ୍ୟାର ଅଭିବୃଦ୍ଧି କରିବା । ଯେଉଁମାନଙ୍କ ଉପରେ ଦେଶର ଭବିଷ୍ୟତ ନିର୍ଭର କରୁଛି, ସେହି ଯୁବ ସମ୍ପ୍ରଦାୟକୁ 'ମିଲିଟାରି ଟ୍ରେନିଂ' ଦେଇ ଭବିଷ୍ୟତ ଲାଗି ପ୍ରସ୍ତୁତ କରି ରଖିବା । ଦେଶର ଜାଗ୍ରତ ପ୍ରହରୀରୂପେ ଜାମ୍ମୁ ଓ କାଶ୍ମୀରର ନବଯୁବକମାନଙ୍କର ଦାୟିତ୍ୱ ଆହୁରି ବେଶି । ସେମାନଙ୍କୁ ଦେଶମାତୃକାର ସମ୍ମାନରକ୍ଷା ଉଦ୍ଦେଶ୍ୟରେ ଅଧିକ ଆତ୍ମବଳ ତଥା ରାଜନୈତିକ ଅବଚେତନାର ଜାଗ୍ରତ ଲାଗି ସଦାସର୍ବଦା ପ୍ରସ୍ତୁତ ହୋଇ ରହିବାକୁ ପଡ଼ିବ । ଆମ୍ଭମାନଙ୍କୁ ମଧ୍ୟ ସର୍ବପ୍ରଥମେ ସେହିସବୁ ଅସୁବିଧା ତଥା ଦୁର୍ବଳତା ପ୍ରତି ଦୃଷ୍ଟି ଦେବାକୁ ହେବ । କାରଣ ଚୀନାମାନେ ଆମ ଦୁର୍ବଳତାର ସୁଯୋଗ ନେଇ ଲାଭ ଉଠାଇବାକୁ ବସିଛନ୍ତି । ଏହି ଆକ୍ରମଣ ସେମାନଙ୍କ ପକ୍ଷରୁ ହୋଇନାହିଁ; ବରଂ ଆମପକ୍ଷରୁ ହୋଇଛି ବୋଲି ସେମାନେ ଦେଶ-ବିଦେଶରେ ମିଥ୍ୟା ପ୍ରଚାର ଆରମ୍ଭ କରିଦେଇଛନ୍ତି । ଆମ୍ଭମାନଙ୍କୁ ଏସବୁର ସମ୍ମୁଖୀନ ହେବା ସଙ୍ଗେ ସଙ୍ଗେ ଚୀନର ଶାସନ ପରି ଏକ ସ୍ୱେଚ୍ଛାଚାରୀ ଶାସନ ବିରୁଦ୍ଧରେ ମଧ୍ୟ ପ୍ରସ୍ତୁତ ହେବାକୁ ପଡ଼ିବ । ଆମ୍ଭେମାନେ ପ୍ରଜାତାନ୍ତ୍ରିକ ଶାସନ ଉପରେ ବିଶ୍ୱାସ କରୁଥାଉଁ । କିନ୍ତୁ ସେମାନେ ନିଜ ଦେଶର ଜନତାକୁ ଦଳିଦେଇ ଏକଚ୍ଛତ୍ରବାଦର ଯେଉଁ ଭିତ୍ତିମି ପିଟିବାରେ ଲାଗିଛନ୍ତି, ତା'ବିରୁଦ୍ଧରେ ଆମକୁ ସଜାଗ ହେବାକୁ ପଡ଼ିବ । ଆମ ଦେଶର ପ୍ରତ୍ୟେକ ବ୍ୟକ୍ତିଙ୍କର ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟ ରହିଛି ଏବଂ ପ୍ରତ୍ୟେକ ନାଗରିକଙ୍କୁ ଯେକୌଣସି ସ୍ୱାଧୀନ ମତବ୍ୟକ୍ତ କରିବାର ସ୍ୱାଧୀନତା ଦିଆଯାଇଛି । ଆମକୁ ଯାହା କିଛି କରିବାକୁ ହେବ, ତାହା ନିର୍ଭୁଲ ହେବା ଆବଶ୍ୟକ ଏବଂ ସେହି କାର୍ଯ୍ୟ କରିବାବେଳେ ମଧ୍ୟ ଆମକୁ ଜନସାଧାରଣଙ୍କ

ସୁଖସୁବିଧାପ୍ରତି ଦୃଷ୍ଟିରଖି କରିବାକୁ ହେବ । ଅମ୍ଭେମାନେ କେବେହେଲେ ଆମ ସିଦ୍ଧାନ୍ତରୁ ବିଚଳିତ ହେବା ନାହିଁ । ଆମ୍ଭେମାନେ କାଉଁରିଆ କାଠିପରି ଭାଙ୍ଗି ଯିବା ପଛକେ, କେବେ ହେଲେ ନଇଁ ଯିବା ନାହିଁ । ମାନବସମାଜର ପ୍ରଗତିଲାଗି ଆମପକ୍ଷରୁ ଯେଉଁ ସାଧନା ଆରମ୍ଭ କରାଯାଇଛି, ଆମ୍ଭେମାନେ ସେଥିରୁ ବିଚ୍ୟୁତ ହେବା ନାହିଁ ।

ଆପଣମାନେ କାନ୍ଧକୁ କାନ୍ଧ ମିଳାଇ କାର୍ଯ୍ୟ କରିବାରେ ଲାଗି ପଡ଼ନ୍ତୁ; ଯାହାଫଳରେ, ଆମ୍ଭେମାନେ ଆକ୍ରମଣକାରୀର ମନ୍ଦ ଉଦ୍ଦେଶ୍ୟକୁ ବିଫଳ କରିବା ସଙ୍ଗେ ସଙ୍ଗେ ଦୁନିଆ ଆଗରେ ଆତତାୟୀର ପ୍ରକୃତ ରୂପ ଚିହ୍ନିତକରିବାରେ ସଫଳତା ହାସଲ କରିପାରିବା ।"

ବକ୍‌ଶୀ ଗୁଲାମ୍ ମହମ୍ମଦ୍‌ଙ୍କର ଉଦ୍ଦେଶ୍ୟ ସାଧିତ ହୋଇଗଲା । ସେ ଠିକ୍ଏ ନମ୍ର ହୋଇଯାଇ, ଯାହାଦ୍ୱାରା ଯେଉଁ କାର୍ଯ୍ୟ ହାସଲ କରିବାର ଥିଲା, ତାହା ହାସଲ କରିନେଲେ । ତାଙ୍କ ହାତମୁଠାକୁ ଯଥେଷ୍ଟ ଶକ୍ତି ଆସିଗଲା । ସେ ଆଗାମୀ ପାଞ୍ଚ ବର୍ଷ ଲାଗି ନିଶ୍ଚିନ୍ତ ହୋଇଗଲେ । ଏଥର ସେ ଏହି ପାଞ୍ଚ ବର୍ଷ ମଧ୍ୟରେ ଯାହା ଯାହା କରିବାର କଥା, ନିଶ୍ଚିନ୍ତ ହୋଇ ସହଜରେ ତାଙ୍କ ଉଦ୍ଦେଶ୍ୟକୁ ସାକାର କରାଇପାରିବେ । ଏଣିକି ଜାମ୍ମୁ ଓ କାଶ୍ମୀର ରାଜ୍ୟର ସର୍ବେସର୍ବାରୂପରେ ତାଙ୍କର ସ୍ୱପ୍ନ ସଫଳ କରିବାରେ ସେ ଲାଗିପଡ଼ିଲେ । ପ୍ରତି ପାଞ୍ଚ ବର୍ଷରେ ଥରେ ନିର୍ବାଚନଲାଗି ତାଙ୍କର ଯେଉଁ ମୁଣ୍ଡବ୍ୟଥା ହେଉଥିଲା— ସେଥିରୁ ସେ ଚିରଦିନଲାଗି ମୁକ୍ତ ହେବାକୁ ଚେଷ୍ଟା କରିବାରେ ଲାଗିଲେ । ସେ ଭାବିଲେ—ଏଣିକି ସେ ଭୁଲ କଲେ, ଚିରଦିନ ଲାଗି ହାରିଯିବେ । ତେଣୁ ସେ ଧନ, ଜନ, ଶକ୍ତି, ଛଳ, ପ୍ରପଞ୍ଚ ମାଧ୍ୟମରେ କାଶ୍ମୀର ମଧ୍ୟରେ ନୂତନ କୌଶଳ ଆରମ୍ଭ କରି ବସିଲେ । ସେହି କୌଶଳ ଫଳରେ ସେ ନିଜର ଜୀବଦ୍ଦଶା ମଧ୍ୟରେ କାଶ୍ମୀରକୁ କବଳିତ କରିବାର ସ୍ୱପ୍ନରେ ବିଭୋର ହୋଇପଡ଼ିଲେ; ଯାହାଫଳରେ—ଜାମ୍ମୁ ଓ କାଶ୍ମୀର ବକ୍‌ଶୀଙ୍କର ଏବଂ ସେ ଚିରଦିନ କାଶ୍ମୀରର ଭାଗ୍ୟନିୟନ୍ତା ହୋଇ ରହିବେ । ତା'ପରେ ସେ ଯାହା କରିବେ, ତାହା ଜାମ୍ମୁ ଓ କାଶ୍ମୀରର ମଙ୍ଗଳ ଉଦ୍ଦେଶ୍ୟରେ ଉଦ୍ଦିଷ୍ଟ ବୋଲି ଗ୍ରହଣ କରିବାକୁ ହେବ ଏବଂ ତାଙ୍କର ବିନାନୁମତିରେ ଜାମ୍ମୁ ଓ କାଶ୍ମୀରରେ କିଛି ହୋଇପାରିବ ନାହିଁ ।

ତା'ପରେ ବକ୍‌ଶୀ ଗୁଲାମ୍ ମହମ୍ମଦ୍ ଜନସାଧାରଣଙ୍କୁ ଭ୍ରମପୂର୍ଣ୍ଣ ମାର୍ଗରେ ପରିଚାଳିତ କରିବାକୁ ସାଧନ ଏକତ୍ରିତ କରିବାରେ ଲାଗିପଡ଼ିଲେ ।

ସେ ନିଜର ଯୋଜନାକୁ ସେହି ମାର୍ଗରେ ପରିଚାଳିତ କରାଇବା ଉଦ୍ଦେଶ୍ୟରେ ଅନେକଗୁଡ଼ିଏ ପ୍ରାରମ୍ଭିକ କାର୍ଯ୍ୟ ଆରମ୍ଭ କଲେ । ତନ୍ମଧ୍ୟରେ ତାଙ୍କର ପ୍ରଥମ ପଦକ୍ଷେପ ହେଉଛି—ରାଜ୍ୟରେ ସାମ୍ପ୍ରଦାୟିକତାର ପ୍ରଖର ସ୍ରୋତ ଛୁଟାଇ ଜନତାକୁ ଆପ୍ଳୁତ କରିବା । ତେଣୁ ସେ ନିଜର ପଦାଧିକାର ଓ ପ୍ରତିଷ୍ଠାକୁ ଚିରସ୍ଥାୟୀ କରିବା କାମନାରେ ଯେତେ ପ୍ରକାର ଠିକ୍ ଓ ଭୁଲ ମାର୍ଗ ଥିଲା, ସବୁପ୍ରକାର ପନ୍ଥା ଅନୁସରଣ କରିବାରେ ତିଳେ ହେଲେ ପଶ୍ଚାତ୍ପଦ ହେଲେ ନାହିଁ । ପୁଣି ରାଜ୍ୟରେ ତାଙ୍କର ପ୍ରତିଷ୍ଠା ବୃଦ୍ଧି ପାଇଲା । ତାଙ୍କର ଅଧଃପତନ ଘଟୁ ଘଟୁ ସେ ପୁଣି ଲୋକପ୍ରିୟ ନେତାରୂପେ ପ୍ରତିଷ୍ଠା ଅର୍ଜନ କଲେ ଏବଂ ବିଶେଷତଃ ଚୀନାମାନଙ୍କ ଆକ୍ରମଣ ପରେ ପରେ ସେ କାଶ୍ମୀରରେ 'ହିରୋ' ସାଜି ବସିଲେ ।

ଏହା ମଧ୍ୟରେ ଭାରତର 'ଲୋକସଭା'ରେ ଗୋଟିଏ ପ୍ରଶ୍ନଉପରେ ନିତାନ୍ତ ଅପ୍ରୀତିକର ପରିସ୍ଥିତି ଉପୁଜିଲା । 'ଲୋକସଭା'ର ସଦସ୍ୟମାନେ ଯୁକ୍ତି କାଢ଼ି ବସିଲେ :

"ଗୋଟିଏ ଦେଶରେ ଦୁଇ ଜଣ ରାଷ୍ଟ୍ରମୁଖ୍ୟ, ଦୁଇ ଜଣ ପ୍ରଧାନମନ୍ତ୍ରୀ ଏବଂ ଦୁଇଟି ଜାତୀୟ ପତାକା ରଖିବାର ଉଦ୍ଦେଶ୍ୟ କ'ଣ ? ବିଶ୍ୱର ସାଧାରଣ ଜନତାଙ୍କ ସମ୍ମୁଖରେ ଏହାର ଅନ୍ୟ ଅର୍ଥ କରାଯାଇ ନ ପାରେ ! ତା'ପରେ କାଶ୍ମୀରବାସୀ ମଧ୍ୟ ଦେଶର ଅନ୍ୟ ଭାଗରେ ଭାରତୀୟ ନାଗରିକଙ୍କ ପରି ସମସ୍ତ ସୁବିଧା ସୁଯୋଗ ଉପଭୋଗ କରୁଛନ୍ତି; କିନ୍ତୁ ଭାରତୀୟମାନଙ୍କୁ ଜାମୁ ଓ କାଶ୍ମୀରରେ ସମାନ ଧରଣର ସୁଯୋଗରୁ ବଞ୍ଚିତ କରାଯାଉଛି କାହିଁକି ? ଏ ପ୍ରକାର ଭେଦଭାବର ଉଦ୍ଦେଶ୍ୟ କ'ଣ ? ଏସବୁ ବ୍ୟବସ୍ଥା ଜାମୁ ଓ କାଶ୍ମୀର ସମସ୍ୟାର ସମାଧାନଲାଗି ଉଦ୍ଦିଷ୍ଟ କିମ୍ବା ଏହା ସମସ୍ୟାକୁ ଅଧିକ ଜଟିଳ କରୁଛି ?"

ଧୀରେ ଧୀରେ କଥା ବଢ଼ିଚାଲିଲା । ସାରା ଦେଶରେ ଶିକ୍ଷିତ ଅଶିକ୍ଷିତ ସମସ୍ତେ ଏହି ବିଷୟ ନେଇ ଚର୍ଚ୍ଚା ଆରମ୍ଭ କଲେ । ଲୋକସଭାରେ ଚାଲିଥିବା ଆଲୋଚନା ବାସ୍ତବରେ ଥିଲା ସତ୍ୟ । ଏଥିରେ କୌଣସି ପ୍ରକାର ଦ୍ୱିମତ ହେବାର କାରଣ ନ ଥିଲା । ଏ କଥା ଶୁଣି ବକ୍ସି ଗୁଲାମ୍ ମହମ୍ମଦ ବଡ଼ ଅଡୁଆରେ ପଡ଼ିଗଲେ । ତାଙ୍କ ପକ୍ଷରେ ଏହା ଏକ ନୂତନ ସମସ୍ୟାରୂପେ

ଦେଖାଦେଲା । ଏହା ଫଳରେ ତାଙ୍କର ଅସ୍ତିତ୍ୱ ବିପଦପୂର୍ଣ୍ଣ ହୋଇଗଲା ଏବଂ ତାଙ୍କର ଭବିଷ୍ୟତ କର୍ମପନ୍ଥା ମଧ୍ୟ ଫସର ଫାଟିବାକୁ ବସିଲା । ପରିଣାମ ସ୍ୱରୂପ, ବିରକ୍ତି ତଥା ଦମ୍ଭୋକ୍ତିର ସହିତ ସେ ଏକ 'ପ୍ରେସ୍ କନ୍‌ଫରେନ୍‌ସ'ରେ କହି ପକାଇଲେ :

"ଅନେକ ଦୃଷ୍ଟିରୁ ଦେଖିବାକୁ ଗଲେ, କାଶ୍ମୀର ଏକ ଅନ୍ତର୍ଜାତୀୟ ସମସ୍ୟା ହୋଇ ରହିଛି । ଆମେରିକା ତଥା ଅନ୍ୟାନ୍ୟ ରାଷ୍ଟ୍ରଗୁଡ଼ିକର ଭରସା ପାଇ ପାକିସ୍ତାନ ବର୍ତ୍ତମାନ ସୁଦ୍ଧା ଆମ ଉପରେ ବିଷଦୃଷ୍ଟି ପକାଉଛି । ରାଜ୍ୟ (ଜାମ୍ମୁ ଓ କାଶ୍ମୀର) ମଧ୍ୟରେ ତଥା ହିନ୍ଦୁସ୍ତାନର ବିଭିନ୍ନ ଅଞ୍ଚଳରେ ସାମ୍ପ୍ରଦାୟିକତା ତଥା ଅନ୍ୟାନ୍ୟ ଅନେକ ଅବାଞ୍ଛନୀୟ ପରିସ୍ଥିତି ଦିନକୁ ଦିନ ଉଗ୍ରରୂପ ଧାରଣ କରୁଛି । ଅବଶ୍ୟ ଶେଖ୍ ଅବଦୁଲ୍ଲାଙ୍କ ବ୍ୟକ୍ତିତ୍ୱ ଆଉ ପୂର୍ବପରି ନାହିଁ; ତଥାପି ତାଙ୍କର ପ୍ରଭାବ ରାଜ୍ୟ ମଧ୍ୟରେ ନାହିଁ—ଏ କଥା ନିଃସଙ୍କୋଚରେ କହିହେବ ନାହିଁ । ତାକୁ ଦୂର କରିବାକୁ ହେଲେ, ସାବଧାନତାର ସହିତ କାର୍ଯ୍ୟ କରିବାକୁ ପଡ଼ିବ । କାଶ୍ମୀରରେ ସମ୍ବିଧାନର ୩୭୦ ଧାରାର ପ୍ରଚଳନ ଲାଗି ମୁଁ ମଧ୍ୟ ଚାହେଁ ନାହିଁ । କିନ୍ତୁ ଏହାକୁ ଉଠାଇ ଦେଲେ ଭବିଷ୍ୟତରେ ଯେଉଁ ଅସୁବିଧା ସୃଷ୍ଟି ହେବ, ସେ ସମ୍ବନ୍ଧରେ ଭଲଭାବରେ ଚିନ୍ତା କରି-ବାକୁ ହେବ । ସମ୍ବିଧାନର ୩୭୦ ଧାରା ଅନୁସାରେ ଭାରତ ସହିତ ସ୍ୱେଚ୍ଛାପୂର୍ବକ କାଶ୍ମୀରର ମିଶ୍ରଣକୁ ରାଜ୍ୟର ବିଧାନସଭା ମଧ୍ୟ ସମ୍ମାନର ସହିତ ମାନ୍ୟତା ପ୍ରଦାନ କରୁଛି । କାଶ୍ମୀରର 'ନେସ୍‌ନାଲ୍ କନ୍-ଫରେନ୍‌ସ'କୁ ଜାତୀୟ କଂଗ୍ରେସ ରୂପରେ ପରିବର୍ତ୍ତିତ କରିବା ଉଚିତ ହେବ ନାହିଁ । କାରଣ ସେହି ସଙ୍ଗଠନର ଏକ ସ୍ୱତନ୍ତ୍ର ଅସ୍ତିତ୍ୱ ରହିଛି ଏବଂ ତା' ସଙ୍ଗେ ସଙ୍ଗେ ମଧ୍ୟ ପାର୍ଟିର ସଭ୍ୟମାନଙ୍କର ଏ ସମ୍ବନ୍ଧରେ ମତ ମତାନ୍ତର ରହିଛି । ସେପରି ପରିସ୍ଥିତିରେ କୌଣସି କାର୍ଯ୍ୟ ଖାମ୍‌ଖିଆଲ୍ ଭାବରେ କରାଯାଇ ପାରିବ ନାହିଁ ।"

ଏପ୍ରକାର କଟୁ ମନ୍ତବ୍ୟ ଥିଲା ରାଷ୍ଟ୍ରବିରୋଧୀ ଏବଂ ବକ୍‌ଶୀ ଗୁଲାମ୍ ମହମ୍ମଦ୍‌ଙ୍କ ମନୋଭାବର ଦ୍ୟୋତକ । ତାଙ୍କର ଏପ୍ରକାର ମନୋଭାବ କେବଳ ଯେ 'ଜାମ୍ମୁ ଓ କାଶ୍ମୀର'ପକ୍ଷରେ ଅହିତକର ଥିଲା ତା ନୁହେଁ; ସମଗ୍ର ରାଷ୍ଟ୍ର ପକ୍ଷରେ

ଥିଲା ଦୁଶ୍ଚିନ୍ତାର କାରଣ । ଏହି ମନ୍ତବ୍ୟ ପ୍ରଚାରିତ ହେବାମାତେ ଜନସାଧାରଣଙ୍କ ମଧ୍ୟରେ ନାନାପ୍ରକାର ପ୍ରତିକ୍ରିୟା ସୃଷ୍ଟିହୋଇ ସମ୍ବାଦପତ୍ରଗୁଡ଼ିକରେ ଭିନ୍ନ ଭିନ୍ନ ପ୍ରକାର ଟୀକା-ଟିପ୍ପଣୀ ଓ ଆଲୋଚନା ଚାଲିଲା । ଏହି ଟୀକା-ଟିପ୍ପଣୀର ରୂପ ବ୍ୟାପକ ଆକାର ଧାରଣ କରିବା ପୂର୍ବରୁ ବକ୍‌ଶୀ ଗୁଲାମ୍ ମହମ୍ମଦଙ୍କର ଅନ୍ୟ ଏକ ମନ୍ତବ୍ୟ ପ୍ରକାଶ ପାଇଲା । ସେ ଥରେ ଗୋଟିଏ ବିଦେଶୀ ସଂବାଦପତ୍ରର ପ୍ରତିନିଧିଙ୍କୁ ଆଲୋଚନା ପ୍ରସଙ୍ଗରେ କହିଥିଲେ :

"ସବୁଦୃଷ୍ଟିରୁ ଦେଖିବାକୁ ଗଲେ, କାଶ୍ମୀର ଏକ ସ୍ୱତନ୍ତ୍ର ରାଜ୍ୟ; କିନ୍ତୁ ବର୍ତ୍ତମାନର ପରିସ୍ଥିତିକୁ ଆଖିଆଗରେ ରଖି ବିଚାର କଲେ ଏହାର ସ୍ୱତନ୍ତ୍ର ଅସ୍ତିତ୍ୱ ସମ୍ଭବ ନୁହେଁ । କାରଣ ଏହି ରାଜ୍ୟକୁ ଚତୁର୍ଦ୍ଦିଗରୁ ହିନ୍ଦୁସ୍ତାନ୍, ପାକିସ୍ତାନ୍, ରୁଷିଆ ଓ ଚୀନ ଘେରି ରହିଛନ୍ତି । ତେଣୁ ଏହି ଅବସ୍ଥାରେ ଯଦି ସଂବିଧାନର ୩୭୦ ଧାରାକୁ ଉଠାଇ ଦିଆଯାଏ, ତା' ହେଲେ ଭାରତର ପୁଞ୍ଜିପତିମାନଙ୍କୁ ଏହାକୁ କ୍ରୟ କରି ଏହାର ଅସ୍ତିତ୍ୱ ଲୋପ କରିବାରେ ବେଶୀ ସମୟ ଲାଗିବ ନାହିଁ ।"

ଆଣବିକ ଅସ୍ତ୍ରର ବିସ୍ଫୋରଣପରି ବକ୍‌ଶୀଙ୍କ ମନ୍ତବ୍ୟ ଦେଶବାସୀଙ୍କ ମନରେ ଚମକ ସୃଷ୍ଟିକଲା । ଚାରିଆଡ଼େ ନାନାପ୍ରକାର କଟୁ ଆଲୋଚନା ଚାଲିବା ସଙ୍ଗେ ସଙ୍ଗେ ବକ୍‌ଶୀ ଗୁଲାମ୍ ମହମ୍ମଦଙ୍କ ବିରୁଦ୍ଧରେ ବିଭିନ୍ନ ପ୍ରକାର ବିରୋଧାତ୍ମକ ପ୍ରଚାର କରାଯାଇ ରାଷ୍ଟ୍ରର ବାତାବରଣ ଗମ୍ଭୀର ହୋଇ ଉଠିଲା । ଦେଶର ପ୍ରତିକ୍ରିୟା ଜାଣିପାରି ବକ୍‌ଶୀ ସାହେବଙ୍କର ଚେତା ପଶିଲା । ସ୍ୱର୍ଗର ନନ୍ଦନ-କାନନରେ ବିଚରଣ କରୁଥିବା ତାଙ୍କର କାଳ୍ପନିକ ବିଚାରଧାରାରୁ ସେ ଓହ୍ଲାଇ ଆସି ବାସ୍ତବିକ ସ୍ଥିତିର ଅନୁମାନ କରିନେଲେ । ପ୍ରକୃତରେ ତାଙ୍କର କାର୍ଯ୍ୟ-କଳାପ ଅସମୟରେ ସେ ଆରମ୍ଭ କରିଥିଲେ ବୋଲି ନିଜେ ବେଶ୍ ହୃଦୟଙ୍ଗମ କଲେ । ସେହି ପରିସ୍ଥିତିରେ ତାଙ୍କର ସେ ପ୍ରକାର ମନ୍ତବ୍ୟ ବ୍ୟକ୍ତ ନ କରି, ଆହୁରି କେତେ ଦିନ ପ୍ରତୀକ୍ଷା କରିବା ଉଚିତ ଥିଲା । ତେଣୁ ସେ ଶୀଘ୍ର ନିଜର ପୂର୍ବ ମନ୍ତବ୍ୟକୁ ଖଣ୍ଡନ କରି ଆଉ ଗୋଟିଏ ବିବୃତି ଦେଇ କହିଲେ :

"ଜାମ୍ମୁ ଓ କାଶ୍ମୀର ରାଜ୍ୟ ଭାରତର ଅବିଚ୍ଛେଦ୍ୟ ଅଙ୍ଗ । ଏହା ଆଜି ଯେ ଭାରତର ଅଙ୍ଗବିଶେଷ ହୋଇ ରହିଛି ତା' ନୁହେଁ, ଶହ ଶହ ବର୍ଷ ପୂର୍ବରୁ ଏ ରାଜ୍ୟ ଭାରତର ଅବିଭାଜ୍ୟ ଅଙ୍ଗ ହୋଇ ରହିଆସିଛି ଏବଂ ଭବିଷ୍ୟତରେ

ମଧ୍ୟ ଉଭୟ ରାଜ୍ୟର ନିବିଡ଼-ସମ୍ପର୍କ ଚିରସ୍ଥାୟୀ ହୋଇ ରହିବ । ଜାମ୍ମୁ ଓ କାଶ୍ମୀର ରାଜ୍ୟ ସ୍ୱେଚ୍ଛାପୂର୍ବକ ଭାରତ ସହିତ ମିଶ୍ରଣ ଲାଗି ଘୋଷଣା କରିଛି ଏବଂ ତା'ର ପ୍ରମାଣସ୍ୱରୂପ ମଧ୍ୟ ଜନସାଧାରଣଙ୍କଦ୍ୱାରା ନିର୍ବାଚିତ ରାଜ୍ୟର ବିଧାନସଭା ତାକୁ ସମର୍ଥନ କରିଛି । ଏଣୁ ଆଇନ୍‌କାନୁନ୍ ଦୃଷ୍ଟିରୁ ମଧ୍ୟ ଉଭୟ ରାଜ୍ୟର ସମ୍ପର୍କ ସୁଦୃଢ଼ ହୋଇସାରିଛି । ଭାରତ ସହିତ ଜାମ୍ମୁ ଓ କାଶ୍ମୀର ରାଜ୍ୟର ସୁସମ୍ପର୍କ ଫଳରେ ରାଜ୍ୟର ସମସ୍ତ ପ୍ରକାର ସମସ୍ୟାର ନିରାକରଣ ହୋଇପାରିବ ।”

ଅବଶ୍ୟ ଦେଖିବାକୁ ଗଲେ--ବଖ୍‌ଶୀଙ୍କର ଉଭୟ ମନ୍ତବ୍ୟ ବିମାନସ୍ଥଳରେ ପ୍ରସାରିତ ହେଲା ଏବଂ ପରବର୍ତ୍ତୀ ମନ୍ତବ୍ୟଦ୍ୱାରା ବାହାରର ସମାଲୋଚନା ବନ୍ଦ ହୋଇଗଲା; କିନ୍ତୁ ଭିତରେ ଭିତରେ ତା'ର ପରୋକ୍ଷ ପ୍ରଭାବ ଅବ୍ୟାହତ ରହିଲା । ବଖ୍‌ଶୀଙ୍କର ଏହି ଆତ୍ମଘାତୀ ମନ୍ତବ୍ୟ ଫଳରେ 'ସଦର୍-ଏ-ରିୟାସତ୍ କରଣ ସିଂହ ଅଧିକ ସତର୍କ ହେବାକୁ ଲାଗିଲେ । କାରଣ ବଖ୍‌ଶୀଙ୍କର ଦୈନନ୍ଦିନ ଆଚରଣ ମଧ୍ୟ ଦିନକୁ ଦିନ ସନ୍ଦେହଜନକ ବୋଧହେଲା । ତେଣୁ କରଣ ସିଂହଙ୍କର ସନ୍ଦିଗ୍ଧତା ଆହୁରି ବୃଦ୍ଧି ପାଇଲା । ସେ ବଖ୍‌ଶୀଙ୍କର ପ୍ରତ୍ୟେକ ଗତିବିଧି ଉପରେ ବରାବର ତୀକ୍ଷ୍ଣଦୃଷ୍ଟି ରଖି କେନ୍ଦ୍ର ସରକାରଙ୍କୁ ଜଣାଇବାରେ ଲାଗିଲେ । ତେଣେ ବଖ୍‌ଶୀ ମଧ୍ୟ କମ୍ ସତର୍କ ନ ଥିଲେ । ସେ ନିଜର ଅଦୂରଦର୍ଶିତା ଫଳରେ ଅସୁବିଧା ବରଣ କରିଥିଲେ ମାତ୍ର; ତେଣୁ ଅନ୍ୟ କୌଣସି ଯୋଜନାଦ୍ୱାରା ପୁଣି ସେ ସମସ୍ତଙ୍କର ବିଶ୍ୱାସଭାଜନ ହୋଇ ନିଜର ସୁନିୟନ୍ତ୍ରିତ କର୍ମପନ୍ଥାକୁ ସଫଳ କରାଇବାରେ ଲାଗିପଡ଼ିଲେ ।



# ପନ୍ଦର

କାଶ୍ମୀର କଂଗ୍ରେସର ସଙ୍ଗଠନକୁ ଅଧିକ ସକ୍ରିୟ ତଥା ଶକ୍ତିଶାଳୀ କରିବା ଉଦ୍ଦେଶ୍ୟରେ ପଣ୍ଡିତ ଜବାହରଲାଲ୍ ନେହରୁ ଦଳର ଅନ୍ୟାନ୍ୟ ବିଶିଷ୍ଟ ନେତାମାନଙ୍କ ସହିତ ଆଲୋଚନା ଚଳାଇଲେ । ବିଭିନ୍ନ ନେତାମାନେ ଭିନ୍ନ ଭିନ୍ନ ଧରଣର ପ୍ରସ୍ତାବ ଉପସ୍ଥାପିତ କଲେ । କିନ୍ତୁ କାମରାଜ ଯେଉଁ ପ୍ରସ୍ତାବ ଦେଲେ, ତାହା ସମସ୍ତଙ୍କଦ୍ୱାରା ଆନ୍ତରିକତାର ସହିତ ସ୍ୱୀକୃତ ହେଲା । ତେଣୁ 'ନିଖିଳ ଭାରତ କଂଗ୍ରେସ ସମିତି' କାମରାଜ ଯୋଜନାକୁ ଗ୍ରହଣ କରିନେଲା । 'କାମରାଜ ଯୋଜନା' ଅନୁସାରେ, କେନ୍ଦ୍ର ଓ ରାଜ୍ୟର ମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀମାନେ ପଣ୍ଡିତ ଜବାହର୍‌ଲାଲ୍ ନେହରୁଙ୍କ ହାତରେ ବିନା ଓଜର ଆପତ୍ତିରେ ନିଜ ନିଜର ଇସ୍ତଫାପତ୍ର ଅର୍ପଣ କରିଦେବାର ବ୍ୟବସ୍ଥା ଥିଲା । ସେହି ଅନୁସାରେ ସମସ୍ତେ ତ୍ୟାଗପତ୍ର ଦାଖଲ କରିଦେଲେ । ବକ୍‌ଶୀଙ୍କୁ ମଧ୍ୟ ଇସ୍ତଫା ଦେବାକୁ ପଡ଼ିଲା; କାରଣ ଅନ୍ୟ କୌଣସି ପ୍ରକାର ଆଉ ଦେଖାଇବାର କିଛି ଉପାୟ ନ ଥିଲା ! ତଥାପି ତାଙ୍କ ତ୍ୟାଗପତ୍ର ଗୃହୀତ ହୋଇଯିବବୋଲି ସେ ଆଦୌ ବିଶ୍ୱାସ କରି ନ ଥିଲେ । ଅନ୍ୟାନ୍ୟ ସମସ୍ତ ପ୍ରକାର ଅନୁମାନ ସତ୍ତ୍ୱେ ଜାମ୍ମୁ ଓ କାଶ୍ମୀର ରାଜ୍ୟର ତତ୍‌କାଳୀନ ପରିସ୍ଥିତି ଦୃଷ୍ଟିରୁ ତାଙ୍କ ଇସ୍ତଫାପତ୍ର ପ୍ରଧାନମନ୍ତ୍ରୀ ମଞ୍ଜୁର କରି ନ ପାରନ୍ତି ବୋଲି ତାଙ୍କର ଦୃଢ଼ ଧାରଣା ହୋଇଥିଲା । କାରଣ ତାଙ୍କ ବ୍ୟତୀତ, ରାଜ୍ୟର ସମସ୍ତପ୍ରକାର ଅସୁବିଧାକୁ ଦୂର କରି ଶାସନ କ୍ଷମତା ଚଳାଇବାଭଳି ଯୋଗ୍ୟତା ଅନ୍ୟ କୌଣସି ନେତାଙ୍କର ନ ଥିଲା । ତଥାପି ତାଙ୍କର ଇସ୍ତଫାପତ୍ର ମଞ୍ଜୁର ହୋଇଗଲା; ତା' ଫଳରେ ବକ୍‌ଶୀଙ୍କ ଆଶାରେ ତୁଷାରପାତ ହେବାକୁ ଲାଗିଲା, ତାଙ୍କ ସ୍ୱପ୍ନର ପ୍ରାସାଦ ଭାଙ୍ଗିରୁଜି ନଷ୍ଟଭ୍ରଷ୍ଟ ହୋଇଗଲା, ତାଙ୍କର ସମସ୍ତ ପ୍ରକାର ଚକ୍ରାନ୍ତମୂଳକ ଯୋଜନା ଫସର ଫାଟିଗଲା ଏବଂ ସେ ଛନପାଞ୍ଜିରୁ ପୋଛି ହୋଇଗଲେ ବୋଲି ତାଙ୍କର ଧାରଣା ସୁଦୃଢ଼ ହୋଇଗଲା । ସେ ଏଥର 'ସଦର୍‌-ଏ-ରିୟାସତ୍' କରଣ ସିଂହଙ୍କ ବୁଦ୍ଧିମତ୍ତା, ଦୂରଦର୍ଶିତା ତଥା କର୍ତ୍ତବ୍ୟପରାୟଣତା ସମ୍ବନ୍ଧରେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କଲେ;

କିନ୍ତୁ ଏହା ପୂର୍ବରୁ ରାଜ୍ୟ ଶାସନକଳରେ ଜାଗ୍ରତ ପ୍ରହରୀ ସେହି ଯୁବକଙ୍କ ସତର୍କତା ସମ୍ବନ୍ଧରେ ସେ ଆଦୌ ଅନୁମାନ କରିପାରି ନ ଥିଲେ ।

ଏହାପରେ ଅବଶ୍ୟ ବକ୍ସି ନିରାଶ ହୋଇପଡ଼ିଲେ; କିନ୍ତୁ ଆଦୌ ହତାଶ ହୋଇ ନ ଥିଲେ । ତାଙ୍କପରି ଉଦ୍ୟୋଗୀ ବ୍ୟକ୍ତିଙ୍କ ପକ୍ଷରେ ମଧ୍ୟ ହତାଶ ହୋଇପଡ଼ିବା ଆଦୌ ସୁନ୍ଦର ହୋଇ ନ ଥାନ୍ତା ! ପଦାରେ ପିଲା ଜନ୍ମକରି ଡାହାଣୀକୁ ଡରିଲେ ଚଳିବ ବା କାହୁଁ ? ଆଜି ଯାହା ଘଟିଛି, ତାହା ଯେ ପରିବର୍ତ୍ତିତ ନ ହେବ ଏହାର କୌଣସି କାରଣ ନ ଥିଲା । ତେଣୁ ସେ ନିଜର ଫନ୍ଦ-ଫିକରରୁ ଆଦୌ ବିରତ ହେଲେ ନାହିଁ ।

ସେ ଏଥର କୌଶଳକ୍ରମେ ଡ. କରଣ ସିଂହଙ୍କ ସହିତ ସାକ୍ଷାତ୍‌କରି ଅତ୍ୟନ୍ତ ବିଶ୍ୱସ୍ତ ବ୍ୟକ୍ତିପରି ତାଙ୍କୁ (କରଣ ସିଂହଙ୍କୁ ) ରାଜ୍ୟର ପ୍ରଧାନମନ୍ତ୍ରୀତ୍ୱ ଗ୍ରହଣ କରିବାକୁ ପରାମର୍ଶ ଦେଲେ । ସେ ନିଜ ମତକୁ ସମର୍ଥନ କରି, ତାଙ୍କ (କରଣ ସିଂହଙ୍କ) ବ୍ୟତୀତ ଅନ୍ୟ କୌଣସି ଯୋଗ୍ୟ ବ୍ୟକ୍ତି ରାଜ୍ୟର ପ୍ରଧାନମନ୍ତ୍ରୀ ପଦ ସମ୍ଭାଳିବା ଲାଗି ନାହାନ୍ତି ଏବଂ ତାତ୍‌କାଳୀନ ପରିସ୍ଥିତିରେ ତାଙ୍କର ନେତୃତ୍ୱ ନିତାନ୍ତ ଆବଶ୍ୟକ ବୋଲି ଦୃଢ଼ଭାବରେ ଯୁକ୍ତି କଲେ । ଡ. କରଣ ସିଂହ ମଧ୍ୟ ଠିକ୍ ସେହିପରି ଆତ୍ମୀୟତାର ଅଭିନୟ କରି ବକ୍ସିଙ୍କ ପ୍ରସ୍ତାବକୁ ଅସ୍ୱୀକାର କରିବା ସଙ୍ଗେ ସଙ୍ଗେ କୌଣସି ଜଣେ ଯୋଗ୍ୟ ମୁସଲ୍‌ମାନଙ୍କୁ ପ୍ରଧାନମନ୍ତ୍ରୀ ପଦରେ ଅଧିଷ୍ଠିତ କରାଇବା ଉଚିତ ହେବ ବୋଲି ଦୃଢ଼ମତ ପ୍ରକାଶ କଲେ । ଅବଶ୍ୟ ରାଜ୍ୟର ପରିସ୍ଥିତି ଦୃଷ୍ଟିରୁ ତାହା ହିଁ ଥିଲା ଅତ୍ୟନ୍ତ ଉପଯୁକ୍ତ ପନ୍ଥା । ଏଥର ମଧ୍ୟ ବକ୍ସିଙ୍କୁ ନିରାଶ ହେବାକୁ ପଡ଼ିଲା । ସେ ଯେଉଁ ଯୋଜନାକୁ କାର୍ଯ୍ୟାନ୍ୱିତ କରିବା ଉଦ୍ଦେଶ୍ୟରେ ଏ ଧରଣର ଗ୍ଲବ୍ ଖେଳିଥିଲେ ତାହା ବିଫଳ ହୋଇଗଲା । ତାଙ୍କୁ ପ୍ରତ୍ୟେକ ଥର ଯୁବକ କରଣ ସିଂହଙ୍କଠାରୁ ରାଜନୈତିକ ପେଞ୍ଚ୍‌ପାଞ୍ଚ୍‌ରେ ମାତ ହେବାକୁ ପଡ଼ିଲା ।

ଲିପ୍‌ସା ମନୁଷ୍ୟ ଜୀବନର ଶାନ୍ତିମୟ ପଥରେ ବାସ୍ତବିକ କଣ୍ଟକ ସ୍ୱରୂପ । ଯେକୌଣସି ଉଦ୍ଦେଶ୍ୟରେ ହେଉନା କାହିଁକି, ତାହା ମନୁଷ୍ୟ ପକ୍ଷରେ ସର୍ବଦା ଅହିତକର । ଲିପ୍‌ସା କେବଳ ମନୁଷ୍ୟର ସୁଖଶାନ୍ତି ଅପହରଣ କରେ ନାହିଁ; ଜୀବନକୁ ନାରକୀୟ ଯନ୍ତ୍ରଣା ଆଡ଼କୁ ଅଗ୍ରସର କରାଇନିଏ । କ୍ଷମତାରେ ଥାଇ କୌଣସି କାମନାର ଲିପ୍‌ସା ଜୀବନ ପକ୍ଷରେ ଆହୁରି ମାରାତ୍ମକ ! ବିଶେଷତଃ ମନୁଷ୍ୟ ଯେତେବେଳେ ତା'ର ଈପ୍‌ସିତ ମାର୍ଗରେ ଅସଫଳ ହୁଏ, ସେତେବେଳେ

ଦୁରାକାଙ୍‌କ୍ଷା ତାକୁ ପୂର୍ଣ୍ଣଭାବରେ ବିବେକହୀନ କରାଇ ତା'ର ସର୍ବସ୍ୱ ଅପହରଣ କରିଥାଏ । ବକ୍‌ଶୀ ଗୁଲାମ୍ ମହମ୍ମଦ୍‌ଙ୍କର ଦଶା ଠିକ୍ ସେହିପରି ହୋଇଗଲା । ସେ ଆଉ ଭଲମନ୍ଦ କିଛି ବିଚାର କରିପାରିଲେ ନାହିଁ । ବାସ୍ତବରେ ସେ ନିଜର ବୁଦ୍ଧି ବିବେକ ହରାଇ ବସିଲେ । ପ୍ରଧାନମନ୍ତ୍ରୀ ପଦଲାଗି ଡ. କରଣ ସିଂହଙ୍କଠାରୁ ନାସ୍ତିବାଣୀ ଶୁଣି, ସେ ନିଜ ମନ୍ତ୍ରିମଣ୍ଡଳର ଅର୍ଥମନ୍ତ୍ରୀ ଶମ୍‌ସୁଦ୍ଦୀନ୍‌ଙ୍କ ନାମ ସେଥିଲାଗି ପ୍ରସ୍ତାବ କଲେ । କେବଳ ତାଙ୍କୁ ସାନ୍ତ୍ୱନା ଦେବାଲାଗି କେନ୍ଦ୍ର ସରକାର ତାଙ୍କ ମତ ଲୋଡ଼ିଥିଲେ । ରାଜନୈତିକ ଦୃଷ୍ଟିକୋଣରୁ ମଧ୍ୟ ତାହା ଉପଯୁକ୍ତ ବ୍ୟବସ୍ଥା ଥିଲା । ତେଣୁ ଶମସୁଦ୍ଦୀନ୍‌ଙ୍କ ନାମକୁ କେନ୍ଦ୍ର ସରକାର ସମର୍ଥନ କଲେ । ସନ ୧୯୬୩ ସାଲ ଅକ୍ଟୋବର ୧୦ ତାରିଖରେ ଶମ୍‌ସୁଦ୍ଦୀନ ଦଳର ନେତାରୂପେ ନିର୍ବାଚିତ ହୋଇ ଅକ୍ଟୋବର ୧୨ ତାରିଖରେ ଜାମ୍ମୁ ଓ କାଶ୍ମୀର ରାଜ୍ୟର ମୁଖ୍ୟମନ୍ତ୍ରୀରୂପେ କାର୍ଯ୍ୟଭାର ଗ୍ରହଣ କଲେ । ସେତେବେଳକୁ ଜାମ୍ମୁ ଓ କାଶ୍ମୀରର ପ୍ରଧାନମନ୍ତ୍ରୀ ପଦକୁ ମୁଖ୍ୟମନ୍ତ୍ରୀରୂପେ ଓ 'ସଦର୍-ଏ-ରିୟାସତ୍' ପଦକୁ ରାଜ୍ୟପାଳରୂପେ ପରିବର୍ତ୍ତନ କରାଯାଇଥିଲା । ସେହି ଦୃଷ୍ଟିରୁ ଡ. କରଣ ସିଂହ 'ସଦର୍-ଏ-ରିୟାସତ୍' ବଦଳରେ ରାଜ୍ୟପାଳରୂପେ ନିଯୁକ୍ତି ପାଇଲେ ଏବଂ ଜାମ୍ମୁ ଓ କାଶ୍ମୀର ରାଜ୍ୟର ସ୍ୱତନ୍ତ୍ର ପତାକା ପରିବର୍ତ୍ତେ କେବଳ ରାଷ୍ଟ୍ରୀୟ ଧ୍ୱଜାକୁ ହିଁ ସମ୍ମାନ ପ୍ରଦର୍ଶନ କରାଗଲା । ପ୍ରାୟ ଦୁଇ ମାସ ବିତିଛି କି ନାହିଁ; କେବଳ ଶମ୍‌ସୁଦ୍ଦୀନଙ୍କ ମସ୍ତକରେ ନୁହେଁ, ସମଗ୍ର ରାଜ୍ୟ ଉପରେ ଅକାଳ ବଜ୍ରପାତ ହେଲା । 'ଡାଲ୍‌ଲେକ୍' କୂଳରେ ଅବସ୍ଥିତ 'ଚିନାର୍' ବୃକ୍ଷର ସଘନ ଛାୟାରେ ସମ୍ରାଟ୍ ଶାହାଜାହାଙ୍କଦ୍ୱାରା ନିର୍ମିତ 'ହଜରତ୍‌ବଲ୍' ନାମକ ଭବ୍ୟ ଭବନରେ, ପବିତ୍ର 'ମୁଏ ମୁକଦ୍ଦିଶ' (ହଜରତ୍ ସାହେବଙ୍କ କେଶ) ସୁରକ୍ଷିତ ହୋଇଛି । ହଜ୍‌ରତ୍ ମହମ୍ମଦ୍‌ଙ୍କ କେଶ ଅନେକ ଦିନ ପର୍ଯ୍ୟନ୍ତ ତାଙ୍କ ପରିବାରର ଦାୟାଦମାନଙ୍କଠାରେ ସୁରକ୍ଷିତ ହୋଇ ରହିଥିଲା । ତା' ପରେ 'ମଦିନା'ରେ ଅବସ୍ଥିତ ହଜରତ୍ ସାହେବଙ୍କ ସମାଧିର ସଂରକ୍ଷକ ସୈୟଦ୍ ଅବ୍‌ଦୁଲ୍ଲାଙ୍କ ସଂରକ୍ଷଣରେ ତାହା କିଛିଦିନ ରହିଲା । ଖ୍ରୀ.ଅ. ୧୬୩୪ ସାଲରେ ସୈୟଦ ଅବ୍‌ଦୁଲ୍ଲା 'ମଦିନା' ତ୍ୟାଗ କରି ଭାରତ ଆସିଲେ । ବିଜାପୁରର ସୁଲତାନ ତାଙ୍କ ଭରଣପୋଷଣ ଲାଗି ଯଥେଷ୍ଟ ଜାଗିର ଖଞ୍ଜି ଦେବାରୁ ସେ ବିଜାପୁର ରେ ଅବସ୍ଥାନକଲେ । ସନ୍ ୧୬୯୨ ସାଲରେ ବିଜାପୁର ଉପରେ ଔରଙ୍ଗଜେବ୍‌ଙ୍କର ଆଧିପତ୍ୟ ସ୍ଥାପିତ ହେଲା । ସେତେବେଳକୁ ସୈୟଦ ଅବ୍‌ଦୁଲ୍ଲାଙ୍କର ମୃତ୍ୟୁ ହୋଇଯାଇଥିଲା ଏବଂ ତାଙ୍କ ପୁତ୍ର ସୈୟଦ୍ ହମୀଦ୍ ଜହାନାବାଦରେ ଅବସ୍ଥାନ

କରି ପିତାଙ୍କ ଜାଗିର ଜବରଦଖଲ କଲେ । ସେଠାରେ ନୂରୁଦ୍ଦୀନ୍ ନାମକ କାଶ୍ମୀରର ଏକ ବ୍ୟବସାୟୀଙ୍କ ସହିତ ତାଙ୍କର ଭେଟ ହେଲା । ସୈୟଦ ହମୀଦ୍ କେତେ ଟଙ୍କା ନେଇ ପବିତ୍ର 'ମୁଏ ମୁକଦ୍ଦଶ୍'କୁ ତାଙ୍କର ହାତରେ ଅର୍ପଣ କରିଦେଲେ । କାରଣ 'ହଜରତ୍ ମହମ୍ମଦ' ତାଙ୍କର କେଶଗଛିକୁ ସଂଗ୍ରହ କରିବା ଲାଗି ନୂରୁଦ୍ଦୀନ୍‌ଙ୍କୁ ସ୍ୱପ୍ନରେ ଆଦେଶ ଦେଇଥିଲେ । ସେ (ନୂରୁଦ୍ଦୀନ୍) କାଶ୍ମୀରକୁ ଫେରିବା ବାଟରେ ଲାହୋର୍‌ଠାରେ କିଛିଦିନ ଅବସ୍ଥାନ କଲେ । ସେତିକବେଳକୁ ଔରଙ୍ଗଜେବ ଲାହୋର୍‌ରେ ଛାଉଣି ପକାଇ ରହିଥିଲେ । ସେ ନୂରୁଦ୍ଦୀନ୍‌ଙ୍କଠାରେ ହଜରତ୍ ସାହେବଙ୍କ କେଶଗଛି ଥିବାର ଜାଣିପାରି, ତାଙ୍କ (ନୂରୁଦ୍ଦୀନ୍‌ଙ୍କ)ଠାରୁ ବଳପୂର୍ବକ ନେଇଯାଇ ଆଜମୀର୍‌ରେ ସଂସ୍ଥାପନ କରାଇବାର ବ୍ୟବସ୍ଥା କଲେ । ଏହି ଦୁଃଖରେ ମର୍ମାହତ ହୋଇ ନୂରୁଦ୍ଦୀନ୍ ହାପୁ ହାପୁ ହୋଇ ଅକାଳମୃତ୍ୟୁ ବରଣ କଲେ । ଔରଙ୍ଗଜେବ୍‌ଙ୍କର ଏପରି ଦୁର୍ଦ୍ଦାନ୍ତ କାର୍ଯ୍ୟକୁ ଅସଙ୍ଗତ ବୋଲି ଜଣାଇ ନୂରୁଦ୍ଦୀନ୍‌ଙ୍କ ବନ୍ଧୁ ମେଦନଶ୍‌କୁ ପବିତ୍ର 'ମୁଏ ମୁକଦ୍ଦଶ୍' ଫେରାଇ ଦେବାଲାଗି ତାଙ୍କୁ (ଔରଙ୍ଗ୍‌ଜେବ୍‌ଙ୍କୁ)ହଜ୍‌ରତ୍ ମହମ୍ମଦ ସ୍ୱପ୍ନରେ ଆଦେଶ ଦେଲେ । ତେଣୁ ଔରଙ୍ଗଜେବ୍ ବାଧ୍ୟ ହୋଇ ହଜରତ୍ ମହମ୍ମଦ୍‌ଙ୍କ ଆଦେଶ ପାଳନ କଲେ । ମେଦନଶ ପବିତ୍ର ମୁଏ ମୁକଦ୍ଦଶ୍‌କୁ ନେଇ କାଶ୍ମୀର ଆସିଲେ । ପ୍ରଥମେ ପବିତ୍ର 'ମୁଏ ମୁକଦ୍ଦଶ୍' 'ଖନକାହ ନକ୍‌ଶବନ୍ଦ'ରେ ସ୍ଥାପିତ ହେଲା ଏବଂ ତା ପରେ 'ହଜରତ୍‌ବଲ୍'ରେ ସୁରକ୍ଷାମୂଳକ ବ୍ୟବସ୍ଥାରେ ସହ ସୁରକ୍ଷିତ ହେଲା ।

କାଶ୍ମୀରର ଜନସାଧାରଣ ବର୍ଷରେ ଦଶ ଥର ସେହି ପବିତ୍ର କେଶଗଛିକୁ ଦର୍ଶନ କରିବାର ସୁବିଧା ପାଆନ୍ତି । ଅନ୍ୟ ସମୟରେ ମୁଏ ମୁକଦ୍ଦଶ୍‌କୁ କାଚପାତ୍ରରେ ରଖାଯାଇ ଗୋଟିଏ କାଠ ଆଲ୍‌ମାରିରେ ସୁରକ୍ଷିତ କରାଯାଏ । ସନ୍ ୧୯୬୩ ସାଲ ଡିସେମ୍ବର ୨୭ ତାରିଖରେ ହଜ୍‌ରତବଲରୁ ସେହି ପବିତ୍ର କେଶଗଛି ଚୋରି ହୋଇଗଲା । ଯେଉଁ ପବିତ୍ର ବସ୍ତୁକୁ ଶିଖ୍ ଓ ଡୋଗ୍ରା ଶାସକମାନେ ଶ୍ରଦ୍ଧା ଓ ଭକ୍ତି ପ୍ରଦର୍ଶନପୂର୍ବକ ସୁରକ୍ଷା କରି ଆସିଥିଲେ, କେବେହେଲେ ଏ ପ୍ରକାର ଘଟଣା ଘଟି ନ ଥିଲା, ସେହି ପବିତ୍ର ମୁଏ ମୁକଦ୍ଦଶ୍ କୌଣସି ଦୁର୍ବୃତ୍ତଦ୍ୱାରା ଅପହୃତ ହୋଇଯିବା ଫଳରେ ଜନସାଧାରଣଙ୍କ ମନରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି ହେଲା । ପ୍ରକୃତରେ ଏହା ଥିଲା ଏକ ଘୃଣିତ ଅପଚେଷ୍ଟା । ବିଦ୍ରୋହୀ ଜନତା ଶ୍ରୀନଗରରେ ଥିବା ବି.ବି.ସି. (ବକ୍‌ଶୀ ବ୍ରଦର୍ସ କର୍‌ପୋରେସନ୍)ର ସମ୍ପତ୍ତିବାଡ଼

ନଷ୍ଟଭ୍ରଷ୍ଟ କରିବାକୁ ଲାଗିଲେ । ତାଙ୍କ ସିନେମା ଗୃହରେ ନିଆଁ ଲଗାଇଦେଲେ; ଏପରି କି 'ବଖ୍‌ଶୀ ବ୍ରଦର୍ସ'ଦ୍ୱାରା ପରିଚାଳିତ 'ହୋଟେଲ ପାମ୍ପୋଶ'ରେ ପଶି ଯାହା ପାଇଲେ ତାକୁ ନଷ୍ଟଭ୍ରଷ୍ଟ କରିଦେଲେ । ବଖ୍‌ଶୀ ଗୁଲାମ୍ ମହମ୍ମଦଙ୍କର ଭାଇ ବଖ୍‌ଶୀ ଅବଦୁଲ ରଶୀଦଙ୍କୁ ଧରି ଲୋକମାନେ ତାଙ୍କ ଦଶା ମରଣାପନ୍ନ କରିଦେଲେ । ବଖ୍‌ଶୀ ସାହେବଙ୍କ ଭାଇବନ୍ଧୁଙ୍କର ଧନଜୀବନ ସଙ୍କଟମୟ ହୋଇଉଠିଲା । ପ୍ରାଣଭୟରେ ସେମାନେ କିଏ କେଉଁଠି ଲୁଚି ଛପି ଆତ୍ମ-ଗୋପନ କଲେ । ଶ୍ରୀନଗରର ଆବାଳ-ବୃଦ୍ଧ-ବନିତାଙ୍କ ମୁହଁରେ କେବଳ ଗୋଟିଏ ଧ୍ୱନି ଉଠୁଥିଲା :

"ବଖ୍‌ଶୀଙ୍କର ବଂଶ ଲୋପ କର ! ଏହିମାନେ ହିଁ 'ମୁଏ ମୁକଦ୍ଦଶ୍' ଅପହରଣ କରିଛନ୍ତି !!!" ଇତ୍ୟାଦି ଇତ୍ୟାଦି ।

ଏହି ଗଣ୍ଡୋଗୋଳକୁ ଆୟତ୍ତ କରିବା ନିମିତ୍ତ ପୋଲିସକୁ ଗୁଳି ଚଳାଇବାକୁ ପଡ଼ିଲା । ଯାହାଫଳରେ କେତେ ଜଣ ହିନ୍ଦୁ ଓ ଜଣେ ମାତ୍ର ମୁସଲମାନ୍ ପ୍ରାଣ ହରାଇଲେ । ଶ୍ରୀନଗରର ଦୋକାନ ବଜାର ବନ୍ଦ ହୋଇ ବ୍ୟବସାୟ ବାଣିଜ୍ୟ ଉପରେ ଘୋର ବିପଦ ପଡ଼ିଲା । ଏ ଖବର ଗାଁଗହଳରେ ପ୍ରଚାରିତ ହେବାମାତ୍ରେ ସେଠାକାର ଲୋକମାନଙ୍କ ମଧ୍ୟରେ ଉତ୍ତେଜନା ସୃଷ୍ଟି ହେଲା । ଲୋକମାନେ ଉତ୍ତେଜନାର ବଶବର୍ତ୍ତୀ ହୋଇ ପ୍ରଚଣ୍ଡ ଶୀତକୁ ଖାତିର ନ କରି, ଥରି ଥରି, ହଜାର ହଜାର ସଂଖ୍ୟାରେ ଆସି ଶ୍ରୀନଗରରେ ଏକତ୍ରିତ ହେଲେ । ଉତ୍ତେଜିତ ଜନତା ଲାଲଚୌକଠାରେ ଉଡୁଥିବା 'ନେସ୍‌ନାଲ କନ୍-ଫରେନ୍ସ'ର ପତାକାକୁ ଛିଡ଼ାଇ ଫିଙ୍ଗିଦେଇ ତା' ସ୍ଥାନରେ କଳାପତାକା ଉଡ଼ାଇଦେଲେ । ଜନଗହଳପୂର୍ଣ୍ଣ ଶ୍ରୀନଗର ସହରରେ ହା' ହା'କାର ପଡ଼ି-ଗଲା । ଚାରିଆଡ଼େ କେବଳ ପ୍ରଳୟକାଳୀନ ଭୟଙ୍କର ପରିସ୍ଥିତିର ଆତଙ୍କ ବ୍ୟାପିଗଲା । ମୁଖ୍ୟମନ୍ତ୍ରୀ ଶମ୍‌ସୁଦ୍ଦୀନ୍ ଜାମ୍ମୁରୁ ଧଇଁସଇଁ ହୋଇ ଶ୍ରୀନଗର ଧାଇଁଆସିଲେ ସତ; କିନ୍ତୁ ସେଭଳି ଭୟଙ୍କର ପରିସ୍ଥିତିର ସମ୍ମୁଖୀନ ହେବାଲାଗି କ'ଣ କରିବେ, କିଛି ସ୍ଥିର କରିପାରିଲେ ନାହିଁ । ଏ ସମ୍ବନ୍ଧରେ ଗୋଟିଏ ସାର୍ଥକ ଭୋଜପୁରୀ ପ୍ରବଚନ ହେଉଛି—'ଘରମେଁ ଝୁଁପୀ ବର୍ତ୍ତଣ୍ଡର' ଅର୍ଥାତ୍ 'ଘରେ ଖଣ୍ଡିଆଭୂତ ପଶିଛି '। ସେ ବିଚରା ମୁଖ୍ୟମନ୍ତ୍ରୀ ଆସନରେ ଠିକ୍‌ଭାବରେ ବସିବା ପୂର୍ବରୁ ଏପରି ଏକ ସାଂଘାତିକ ପରିସ୍ଥିତିର ସମ୍ମୁଖୀନ ହେଲେ । ସେ ଅତିଶୀଘ୍ର 'ମୁଏ ମୁକଦ୍ଦଶ୍' ର ସନ୍ଧାନଦାତାଙ୍କୁ ଏକଲକ୍ଷ ଟଙ୍କା ପୁରସ୍କାର

ଦେବାକୁ ଘୋଷଣା କରିଦେଲେ; କିନ୍ତୁ ପରିଣାମରେ କିଛି ସୁଫଳ ଫଳିଲା ନାହିଁ । କାଶ୍ମୀରର ଅବସ୍ଥା ଦିନକୁ ଦିନ ଅସମ୍ଭାଳ ହୋଇଉଠିଲା; ବାସ୍ତବରେ ଏ ଘଟଣା ଫଳରେ ଲୋକମାନଙ୍କ ମନରେ ଏକ ଆତଙ୍କ ସୃଷ୍ଟି ହୋଇଗଲା ।

ଡ. କରଣ ସିଂହ ନିଜର ମାମୁଁପୁଅ ଭାଇ ନସୀବ୍‌ଚନ୍ଦ୍‌ଙ୍କୁ ସଙ୍ଗରେ ନେଇ 'ହଜ୍‌ରତ୍‌ବଲ୍‌'ଠାରେ ଉପସ୍ଥିତ ହେଲେ । ସେତେବେଳେ ଶ୍ରୀନଗରର ଅବସ୍ଥା ଯେପରି ଉତ୍ତେଜନାପୂର୍ଣ୍ଣ ହୋଇରହିଥିଲା, ସେ ଅବସ୍ଥାରେ ତାଙ୍କୁ ସେଠାକୁ ନ ଯିବା ଲାଗି ସମସ୍ତେ ପରାମର୍ଶ ଦେଲେ । କାରଣ ସେହି ଭୟଙ୍କର ପରିସ୍ଥିତିରେ କେତେବେଳେ କ'ଣ ଘଟିବ, କିଏ କହିପାରିବ ? ସେ କାହାରି ଉପଦେଶ ଶୁଣିଲେ ନାହିଁ । ଏ ଘଟଣା ଫଳରେ ସେ ଅତ୍ୟନ୍ତ ଦୁଃଖିତ ହୋଇପଡ଼ିଲେ । ଯେଉଁ ପବିତ୍ର 'ମୁଏ ମୁକଦ୍ଦଶ୍‌'ର ସୁରକ୍ଷାଲାଗି ତାଙ୍କର ପିତା ପିତାମହମାନେ ସାରା ଜୀବନ ଧାର୍ମିକ ସହିଷ୍ଣୁତା ଦେଖାଇ ଆସିଥିଲେ, ସେହି ପବିତ୍ର ସ୍ମାରକନିଧିର ଏପରି ଦୁର୍ଗତିରେ ସେ ପ୍ରକୃତରେ ମର୍ମାହତ ହୋଇଥିଲେ । ସେ 'ହଜରତ୍‌ବଲ୍‌'ଠାରେ ପହଞ୍ଚି, ଲୋକମାନଙ୍କୁ ଖୋଦାଙ୍କ ଉପରେ ଭରସା ରଖି ଅବସ୍ଥାର ନିରୀକ୍ଷଣ କରିବାକୁ ସାନ୍ତ୍ୱନା ଦେଲେ । ତାପରେ ସେ ସେଠାରେ ବସି 'ମୁଏ ମୁକଦ୍ଦଶ୍‌'ର ପ୍ରାପ୍ତିନିମିତ୍ତ ଅନେକ ସମୟ ପର୍ଯ୍ୟନ୍ତ ପ୍ରାର୍ଥନା କଲେ । ତଦ୍‌ବ୍ୟତୀତ ସେ ଏଗାରଟି ବିଶିଷ୍ଟ 'ଜିୟାରତ୍‌' (ମୁସଲମାନ-ମାନଙ୍କ ପବିତ୍ର ପୀଠସ୍ଥଳୀ), ତିନୋଟି ମନ୍ଦିର ଓ ଗୋଟିଏ ଗୁରୁଦ୍ୱାର ପରିଦର୍ଶନ କରି ପ୍ରାର୍ଥନା କଲେ । ତା ସଙ୍ଗେ ସଙ୍ଗେ ମଧ୍ୟ ପ୍ରତ୍ୟେକ ଧର୍ମପୀଠରେ ଏକ ହଜାର ଲେଖାଏଁ ଟଙ୍କା ଗରିବ ଦୁଃଖୀଙ୍କ ମଧ୍ୟରେ ବାଣ୍ଟିଦେଲେ । ପରମାତ୍ମା ତାଙ୍କର ପ୍ରାର୍ଥନା ଶୁଣିଲେ ଏବଂ ସେହିଦିନ ବିକାଳ ୩ ଘଣ୍ଟା ସମୟ ମୁଏ ମୁକଦ୍ଦଶ୍‌ ମିଳିଗଲା । ଅବଶ୍ୟ ଏହା ଏକ ପ୍ରକାର ଆକସ୍ମିକ ଘଟଣାପରି ବୋଧ ହେଲା; କିନ୍ତୁ ଶ୍ରୀନଗରର ଅଧିବାସୀଙ୍କଠାରୁ ଯାହା ଶୁଣାଯାଏ, ସେ ଅନୁସାରେ କେବଳ ଯୁବରାଜ କରଣ ସିଂହଙ୍କ ପ୍ରାର୍ଥନା ଫଳରେ 'ମୁଏ ମୁକଦ୍ଦଶ୍‌' ମିଳିଲାବୋଲି ଲୋକମାନଙ୍କର ଦୃଢ଼ବିଶ୍ୱାସ ଜନ୍ମିଥିଲା । ଫଳସ୍ୱରୂପ ହର୍ଷୋତ୍‌ଫୁଲ୍ଲ ଜନସମୂହ 'ମୁଏ ମୁକଦ୍ଦଶ୍‌'ର ଜୟଗାନ କରିବା ସଙ୍ଗେ ସଙ୍ଗେ ସେତେବେଳର ସରକାରଙ୍କୁ ଗାଦିଚ୍ୟୁତ କରି କରଣ ସିଂହଙ୍କୁ ପୁଣି ରାଜସିଂହାସନରେ ବସାଇ ମହାରାଜ-ରୂପେ ଦେଖିବାଲାଗି ଦାବିସୂଚକ ଧ୍ୱନି କରି ଗଗନ-ପବନ କମ୍ପାଇଦେଲେ ।

• • •

# ଷୋହଳ

ବିଧାତାର ବିଧାନ ବିଚିତ୍ର ! ପାପ କରେ ଜଣେ, ଫଳ ଭୋଗକରେ ଅନ୍ୟ ଜଣେ !! ଶମ୍ସୁଦ୍ଦୀନ୍ ମୁଖ୍ୟମନ୍ତ୍ରୀ ପଦରୁ ବିତାଡ଼ିତ ହେଲେ । ପାପୀଙ୍କୁ ନିର୍ଦ୍ଦୟଭାବରେ ଦଣ୍ଡବିଧାନ କରାଗଲା । କିନ୍ତୁ ଏଥିରେ କାହାରି କିଛି ଆପତ୍ତି ନ ଥିଲା । କେତେବେଳେ କାହା ଭାଗ୍ୟରେ କ'ଣ ଘଟିବ, କିଏ କହିପାରିବ ? ଅବଶ୍ୟ ପରିଶେଷରେ ସତ୍ୟର ଜୟ ହେବା ସୃଷ୍ଟିର ଚିରନ୍ତନ ନିୟମ । ତାହା ହିଁ ହେଲା । ଶେଷରେ ଗୁଲାମ୍ ମହମ୍ମଦ୍ ସାଦିକ୍ ମୁଖ୍ୟମନ୍ତ୍ରୀ ପଦକୁ ନିର୍ବାଚିତ ହେଲେ । ଅବସରବାଦୀ ଓ ଲୁଣ୍ଠନକାରୀଙ୍କର ମୂଳୋତ୍ପାଟନ କରାଗଲା; ସଜ୍ଜନମାନଙ୍କର ସ୍ପନ୍ଦନ ଫେରିଆସିଲା । ରାଜ୍ୟର ଜନସାଧାରଣଙ୍କ ମନରେ ନୂତନ ଆଶା ଅଙ୍କୁରିତ ହେବାରୁ ଡ. କରଣ ସିଂହ ଶାନ୍ତିରେ ନିଃଶ୍ୱାସ ମାରିଲେ । ତାଙ୍କର ବର୍ଷ ବର୍ଷର ପରିଶ୍ରମ ସଫଳ ହେଲା ।

ସମୟର ଚକ୍ର କେତେବେଳେ କିପରିଭାବରେ ଘୂର୍ଣ୍ଣନ କରେ, ତାହା ଜାଣିବାର ଉପାୟ ନାହିଁ । ହଠାତ୍ ଦିନେ ପଣ୍ଡିତ ଜବାହରଲାଲ୍ ନେହରୁଙ୍କର ସ୍ୱର୍ଗବାସ ହୋଇଗଲା । ମୃତ୍ୟୁ ଆଗରେ କାହାରି ଆପତ୍ତି ରହିଲା ନାହିଁ, କୌଣସି ପ୍ରକାର ଉପଚାରରେ ମଧ୍ୟ ତାଙ୍କର ମୃତ୍ୟୁକୁ ଏଡ଼ାଇ ଦିଆଯାଇପାରିଲା ନାହିଁ । ତା'ପରେ ପ୍ରଧାନମନ୍ତ୍ରୀ ପଦଲାଗି ନୂତନ ନେତାଙ୍କ ଖୋଜାପଡ଼ିଲା । କେତେ ବିଚାରମର୍ଶ ପରେ ସର୍ବସମ୍ମତିକ୍ରମେ ଲାଲ୍‌ବାହାଦୁର୍ ଶାସ୍ତ୍ରୀଙ୍କୁ ପ୍ରଧାନମନ୍ତ୍ରୀ ପଦ ଅର୍ପଣ କରାଗଲା । ସମଗ୍ର ଦେଶରେ ଏକ ନୂତନ ସ୍ରୋତ ବହିବାକୁ ଲାଗିଲା । ଏକ ବିଶିଷ୍ଟ ପିତାଙ୍କର ଗୋଟିଏ ମହାନ୍ ପୁତ୍ରଙ୍କ ପରେ ଦେଶର ପ୍ରଧାନମନ୍ତ୍ରୀ ଦାୟିତ୍ୱ ଜଣେ ଅଖ୍ୟାତନାମା ପିତାଙ୍କର ଏକ ହୀନ ସନ୍ତାନ ଉପରେ ନ୍ୟସ୍ତ କରାଯାଇଥିଲା । ଦେଶପକ୍ଷରେ ଏହା ଥିଲା ଏକ ଅଦ୍ଭୁତ ବିଷୟ । ଅସମ୍ଭବ ସମ୍ଭବରେ ପରିଣତ ହେଲା । କିନ୍ତୁ ଲାଲବାହାଦୁର ଶାସ୍ତ୍ରୀ ପ୍ରଧାନମନ୍ତ୍ରୀ ପଦରେ ଅଧିଷ୍ଠିତ ହେବାର ଅଳ୍ପ କେତେ ମାସପରେ ଭାରତ ଉପରେ ପାକିସ୍ତାନ ଆକ୍ରମଣ

କଲା । ଚୀନ ସହିତ ଗୁପ୍ତ ଆଲୋଚନା କରି ସେ କାଶ୍ମୀରକୁ ହସ୍ତଗତ କରିବା ସଙ୍ଗେ ସଙ୍ଗେ ପଞ୍ଜାବର କେତେକ ଭୂ-ଭାଗକୁ ମଧ୍ୟ ଅଧିକାର କରିନେବାକୁ ଚକ୍ରାନ୍ତ କରୁଥିଲା । ତେଣୁ ସେହି ମନ୍ଦ ଉଦ୍ଦେଶ୍ୟରେ ଜାମ୍ମୁ ଅଞ୍ଚଳର 'ଛାମ୍ବଜୋରିଆଁ' ସୀମାରୁ ଶତ ଶତ ଆମେରିକାର 'ପେଟନ୍ ଟ୍ୟାଙ୍କ୍' ନିର୍ମିତ ବାହିନୀ ଗର୍ବରେ ଉତ୍‌ଫୁଲ୍ଲ ହୋଇ ଭାରତ ଭୂଭାଗଆଡ଼କୁ ମାଡ଼ିଆସିଲେ । ବାସ୍ତବିକ୍ ତତ୍‌କାଳୀନ ପରିସ୍ଥିତି ଦେଶପକ୍ଷରେ ବଡ଼ ବିଷମ ହୋଇଉଠିଲା । ପାକିସ୍ତାନ ଅତି ସତର୍କତାର ସହିତ ପ୍ରସ୍ତୁତ ହୋଇ ଯୁଦ୍ଧଲାଗି ଅଗ୍ରସର ହୋଇଥିଲା । ତାହାଫଳରେ ଦେଶବାସୀ ଶିହରି ଉଠିଲେ; କିନ୍ତୁ ପ୍ରଧାନମନ୍ତ୍ରୀ ଶାସ୍ତ୍ରୀଜୀ ଏହାର ଏପରି ଏକ ମୁହଁତୋଡ଼ ଜବାବ୍ ଦେଲେ ଯେ, ଶତ୍ରୁସୈନ୍ୟଙ୍କୁ ଜୀବନ ବିକଳରେ ପଳାଇବାଲାଗି ମଧ୍ୟ ସମୟ ଅଣ୍ଟିଲା ନାହିଁ । ଭାରତୀୟ ଜବାନ୍‌ମାନଙ୍କର ଏହି ଅଦ୍ଭୁତ କାର୍ଯ୍ୟକୁଶଳତା ଫଳରେ ବିଶ୍ୱବାସୀ ଆଶ୍ଚର୍ଯ୍ୟ-ଚକିତ ହୋଇଗଲେ । ଭାରତୀୟ ଜବାନ୍‌ମାନେ ଶତ୍ରୁସୈନ୍ୟଙ୍କୁ ଗୋଡ଼ାଇ ଗୋଡ଼ାଇ ଲାହୋରରେ ଯାଇ ଉପସ୍ଥିତ ହୋଇଗଲେ । ପୁଣି ଏକ ଅସମ୍ଭବ ସମ୍ଭବରେ ପରିଣତ ହେଲା । ଏହା ଫଳରେ ଲାଲ୍‌ବାହାଦୁର ଶାସ୍ତ୍ରୀ ନିଜେ ପ୍ରତିଷ୍ଠିତ ହେବା ସଙ୍ଗେ ସଙ୍ଗେ ଦେଶର ଗୌରବ ପ୍ରତିଷ୍ଠିତ କରିବାରେ ସକ୍ଷମ ହୋଇ, ତାରକାମଣ୍ଡଳୀରେ ପୂର୍ଣ୍ଣଚନ୍ଦ୍ର ସଦୃଶ ଶୋଭିତ ହେବାକୁ ଲାଗିଲେ ।

ଏହି ଯୁଦ୍ଧରେ ପଞ୍ଜାବ ରାଜ୍ୟ ଓ ଜାମ୍ମୁର 'ଛାମ୍ବଜୋରିଆଁ' ଅଞ୍ଚଳ ବିଶେଷ କ୍ଷତିଗ୍ରସ୍ତ ହୋଇଥିଲା । ପ୍ରାୟ ଦେଢ଼ ଲକ୍ଷ ଲୋକ ଯୁଦ୍ଧଭୟରେ 'ଛାମ୍ବ' ଅଞ୍ଚଳ ତ୍ୟାଗ କରି ଜାମ୍ମୁରେ ଆଶ୍ରୟ ଗ୍ରହଣ କଲେ । ସେମାନଙ୍କ ରହିଆନ ଓ ଭୋଜନ ବ୍ୟବସ୍ଥା ଏକ ବିକଟ ସମସ୍ୟାରେ ପରିଣତ ହେଲା । କିନ୍ତୁ ଡ. କରଣ ସିଂହଙ୍କ ଧର୍ମପତ୍ନୀ ଯଶୋରାଜ୍ୟଲକ୍ଷ୍ମୀ ଦିନରାତି ନ ମାନି ଯେଉଁ ଅଦ୍ଭୁତ କାର୍ଯ୍ୟ କଲେ, ତାହା ବାସ୍ତବରେ ପ୍ରଶଂସନୀୟ । ନିଜର ସର୍ବସ୍ୱ ଲୁଟ ହୋଇଯିବା ପରି, ସେ କଠୋର ପରିଶ୍ରମ କରି ଜଣେ ସାଧାରଣ କାର୍ଯ୍ୟକର୍ତ୍ତ୍ରୀରୂପେ ସମସ୍ତ ପ୍ରକାର ବ୍ୟବସ୍ଥାରେ ଲାଗିପଡ଼ିଲେ ।

ହିନ୍ଦୁସ୍ତାନ୍ ଓ ପାକିସ୍ତାନ୍ ମଧ୍ୟରେ ପୁଣି ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ସ୍ଥାପନ କରିବା ଉଦ୍ଦେଶ୍ୟରେ ଶାସ୍ତ୍ରୀଜୀ 'ତାସ୍‌କନ୍ଦ' ଯାତ୍ରା କଲେ; କିନ୍ତୁ ଭାରତର ଦୁର୍ଭାଗ୍ୟ ଯେ, ସେ ତାସ୍‌କନ୍ଦ୍‌ରୁ ଫେରିଆସିପାରିଲେ ନାହିଁ । ବିନା କାରଣରେ ସେଠାରେ ତାଙ୍କର ଅକାଳ ବିୟୋଗ ଘଟିଲା । ଭାରତର ସମସ୍ତ ଯୋଜନା

ବିଫଳ ହୋଇଗଲା; ଦେଶବାସୀଙ୍କ ଆଶାରେ ତୁଷାରପାତ ହେଲା । ପୁଣି ଦେଶର ପ୍ରଧାନମନ୍ତ୍ରୀ ପଦଲାଗି ଧାଁ-ଦଉଡ଼ ଓ କଳ-କୌଶଳର ପ୍ରୟୋଗ ଚାଲିଲା । ଶେଷରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ପ୍ରଧାନମନ୍ତ୍ରୀ ପଦରେ ନିର୍ବାଚିତା ହେଲେ । ଦେଶର ସାଧାରଣ ନିର୍ବାଚନ ନିକଟ ହୋଇ ଆସିବାରୁ କଂଗ୍ରେସ ଦଳ ଓ ଅନ୍ୟାନ୍ୟ ବିରୋଧୀ ଦଳଗୁଡ଼ିକ ନିର୍ବାଚନ ପ୍ରସ୍ତୁତିରେ ଲାଗିପଡ଼ିଲେ । ଏପ୍ରକାର ସମଗ୍ର ରାଷ୍ଟ୍ରର ବାତାବରଣ ନିର୍ବାଚନମୟ ହୋଇଉଠିଲା । ପ୍ରତ୍ୟେକ ସ୍ଥାନରେ କେବଳ ନିର୍ବାଚନ ପ୍ରଚାର ଓ ସେଥି ସମ୍ବନ୍ଧରେ ଆଲୋଚନା ଚାଲିଲା । କଂଗ୍ରେସଦଳ ହାତରୁ ଶାସନ ଅଧିକାର ହସ୍ତଗତ କରିବା ଅଭିପ୍ରାୟରେ ବିରୋଧୀ ଦଳଗୁଡ଼ିକ ପୂର୍ଣ୍ଣପ୍ରାଣରେ ସମସ୍ତ ଶକ୍ତି ବିନିଯୋଗ କରି ଲାଗିପଡ଼ିଲେ । ସେମାନଙ୍କ ପକ୍ଷରେ ଏଥର କେତେକ ଶୁଭ ସଙ୍କେତ ମଧ୍ୟ ଥିଲା । କାରଣ କଂଗ୍ରେସ ଦଳ ପାରସ୍ପରିକ ବିବାଦ ତଥା ଜନସାଧାରଣରେ ଅପ୍ରିୟ ହୋଇପଡ଼ିଥିବା ଦୃଷ୍ଟିରୁ ବିରୋଧୀ ଦଳଗୁଡ଼ିକ ବିଶେଷ ତତ୍ପର ହୋଇଉଠିଲେ ଏବଂ ତା'ର ମାଧ୍ୟମରେ ଅନେକ ଅଦ୍ଭୁତ କାର୍ଯ୍ୟକ୍ରମ ମଧ୍ୟ ସାଧିତ ହେବାକୁ ଲାଗିଲା ।

ଏଣେ ଜାମ୍ମୁ ଓ କାଶ୍ମୀର ରାଜ୍ୟର ରାଜନୈତିକ ବାତାବରଣରେ ଏକ ପ୍ରକାର ସ୍ଥିରତା ଆସିଯାଇଥିଲା । ବିଶେଷଭାବରେ କର୍ତ୍ତବ୍ୟ ତଥା ଶାସନ-କଳର ପ୍ରହରୀରୂପେ ଡ. କରଣ ସିଂହଙ୍କର ଦାୟିତ୍ୱ ଏକପ୍ରକାର ଶେଷ ହୋଇ ଯାଇଥିଲା । ତେଣୁ ସେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କୁ ଖଣ୍ଡିଏ ପତ୍ର ଲେଖି ନିଜର ଭବିଷ୍ୟତ କର୍ମପନ୍ଥାର ସୂଚନା ଦେଲେ—

## ବ୍ୟକ୍ତିଗତ ପତ୍ର

କ୍ୟାମ୍ପ—ଅଶୋକ ହୋଟେଲ
ନୂଆଦିଲ୍ଲୀ
୧୭ ଅଗଷ୍ଟ, ୧୯୬୬

ମୋର ଶ୍ରଦ୍ଧେୟା ଇନ୍ଦିରାଜୀ !

ଖୁବ୍ ସମ୍ଭବତଃ ଆପଣଙ୍କର ମନେଥିବ, ଗତ କେତେ ମାସଧରି ରାଜ୍ୟପାଳ ଦାୟିତ୍ୱରୁ ମୁକ୍ତ ହୋଇ ମୁଁ ରାଷ୍ଟ୍ରୀୟ ରାଜନୀତିରେ ଅଧିକ ସକ୍ରିୟତାର ସହିତ ଭାଗ ନେବାକୁ ଚାହେଁ ବୋଲି ଆପଣଙ୍କ ନିକଟରେ ମତବ୍ୟକ୍ତ କରିଆସୁଛି । ଗତ ୧୯୪୯ ମସିହାରେ ମୁଁ ରାଜପ୍ରମୁଖରୂପେ ଦାୟିତ୍ୱ ଗ୍ରହଣ କରିଥିଲି ଏବଂ ସେହିଦିନଠାରୁ ଆଜି ପର୍ଯ୍ୟନ୍ତ ମୋ ଜୀବନର ଅର୍ଦ୍ଧଭାଗ ରାଜ୍ୟର

ସର୍ବୋଚ୍ଚ କର୍ତ୍ତାରୂପେ ବିତିଗଲାଣି; କିନ୍ତୁ ବର୍ତ୍ତମାନ ସାର୍ବଜନୀନ କାର୍ଯ୍ୟଲାଗି କ୍ଷେତ୍ର ପରିବର୍ତ୍ତନ କରିବା ଆବଶ୍ୟକ ବୋଲି ମୁଁ ଅନୁଭବ କରୁଛି । ଅବଶ୍ୟ ମୁଁ ଯେଉଁ ରାଜ୍ୟର ଅଧିବାସୀ, ସେ ରାଜ୍ୟ ସହିତ ସମ୍ପର୍କ ବିଚ୍ଛେଦ ହେଲେ ମୋ ମନରେ ଗଭୀର ଦୁଃଖ ଜାତ ହେବ । ସାଧାରଣ ନିର୍ବାଚନର ଦିନ ନିକଟ ହୋଇଆସିଲାଣି; ତେଣୁ ଆସନ୍ତା ମାସରେ ରାଜ୍ୟପାଳ ପଦରୁ ଇସ୍ତଫା ଦେବାଲାଗି ରାଷ୍ଟ୍ରପତିଙ୍କୁ ନିବେଦନ ଜଣାଇବାକୁ ମୁଁ ଆପଣଙ୍କ ଅନୁମତି ଚାହୁଁଛି ।

ହାର୍ଦ୍ଦିକ ଶ୍ରଦ୍ଧାର ସହିତ
ଆପଣଙ୍କର
କରଣ ସିଂହ

## ପ୍ରଧାନମନ୍ତ୍ରୀଙ୍କ ଉତ୍ତର

ନ. ୧୩୧୦—ପି. ଏମ୍. ଓ./୬୭

ପ୍ରଧାନମନ୍ତ୍ରୀଙ୍କ ବାସଭବନ
ନୂଆଦିଲ୍ଲୀ
୧୮ ଅଗଷ୍ଟ, ୧୯୬୭

ଶ୍ରଦ୍ଧେୟ କରଣ ସିଂହଜୀ !

ଆପଣଙ୍କର ଅଗଷ୍ଟ ୧୬ ତାରିଖର ପତ୍ରଲାଗି ଧନ୍ୟବାଦ ! ଆପଣ ଯେଉଁସବୁ ବିଷୟ ଏ ପତ୍ରରେ ଉଲ୍ଲେଖ କରିଛନ୍ତି, ଗତ ଥର ଆମର ସାକ୍ଷାତ୍ ସମୟରେ ଆମେ ପରସ୍ପର ଆଲୋଚନା କରିଥିଲେ ।

ଆପଣ ବର୍ତ୍ତମାନର କାର୍ଯ୍ୟଭାରରୁ ମୁକ୍ତ ହେବାଲାଗି କେତେଥର ମତବ୍ୟକ୍ତ କଲେଣି ଏବଂ ମୁଁ ମଧ୍ୟ ସେ ସମ୍ବନ୍ଧରେ ଗଭୀରଭାବରେ ବିଚାର କରୁଛି । ପ୍ରାୟ କୋଡ଼ିଏ ବର୍ଷ ଧରି ଜାମ୍ମୁ ଓ କାଶ୍ମୀର ରାଜ୍ୟର ସର୍ବୋଚ୍ଚ ଶାସକ-ରୂପେ କାର୍ଯ୍ୟ କରିବା ପରେ ଏବେ ରାଷ୍ଟ୍ରୀୟ ରାଜନୀତିରେ ସକ୍ରିୟ ଭାଗ ନେବାଲାଗି ଆପଣଙ୍କ ପ୍ରସ୍ତାବ ବାସ୍ତବରେ ମହତ୍ତ୍ୱପୂର୍ଣ୍ଣ । ମୁଁ ମଧ୍ୟ ତାକୁ ସମର୍ଥନ କରୁଛି । ଆପଣ ନିଜର ଅନୁଭୂତି ଓ ସାମର୍ଥ୍ୟ ବଳରେ ରାଜନୈତିକ ଜୀବନରେ ଉନ୍ନତିଲାଭ କରିପାରିବେ । ପାକିସ୍ତାନର ଦ୍ୱେଷପୂର୍ଣ୍ଣ ଆକ୍ରମଣାତ୍ମକ ମନୋବୃତ୍ତିର ହୀନ ଚେଷ୍ଟା ସମୟରେ ଆପଣ 'ସଦର୍-ଏ-ରିୟାସତ୍' ଓ ରାଜ୍ୟପାଳରୂପେ ଖୁବ୍ ଦକ୍ଷତା ଓ ସମ୍ମାନର ସହିତ କାର୍ଯ୍ୟ ସମ୍ପାଦନ କରିଆସିଛନ୍ତି । ସେହି ସଙ୍କଟ ସମୟରେ ରାଜ୍ୟର ପରିସ୍ଥିତିକୁ ସମ୍ଭାଳିବାରେ ଆପଣଙ୍କ ସହଯୋଗର ମୂଲ୍ୟାଙ୍କନ କରାଯାଇପାରିବ ନାହିଁ ।

ବର୍ତ୍ତମାନ ଆମକୁ ଦେଶର ଆର୍ଥିକ ତଥା ଅନ୍ୟାନ୍ୟ କ୍ଷେତ୍ରରେ ଅନେକ ବିଷମ ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ୁଛି । ସାଧାରଣ ନିର୍ବାଚନର ସମୟ ନିକଟ ହୋଇ ଆସୁଥିବାରୁ ସେହି ସମସ୍ୟାଗୁଡ଼ିକ ଆହୁରି ଜଟିଳ ହୋଇଉଠୁଛି । ତେଣେ ସୀମା ସରହଦ୍‌ରେ ମଧ୍ୟ ଶତ୍ରୁମାନଙ୍କର ଭୟ ପ୍ରଦର୍ଶନ ବନ୍ଦ ହୋଇନାହିଁ । ଏହି ସମସ୍ତ ଅବସ୍ଥାର ସମ୍ମୁଖୀନ ହୋଇ, ବର୍ତ୍ତମାନ ପରିସ୍ଥିତିରେ କୌଣସି ଜଣେ ନୂତନ ବ୍ୟକ୍ତିଙ୍କୁ ଜାମ୍ମୁ ଓ କାଶ୍ମୀର ପରି ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥାନରେ ନିଯୁକ୍ତ କରିବାକୁ ମୁଁ ଦ୍ୱିଧାବୋଧ କରୁଛି । ତେଣୁ ମୋର ଇଚ୍ଛା—ଆପଣ ବର୍ତ୍ତମାନ ପରିସ୍ଥିତିରେ ଆଉ କିଛି ଦିନ ସେହି ପଦରେ କାର୍ଯ୍ୟ କରନ୍ତୁ । ମୋର ବିଶ୍ୱାସ—ଆପଣ ମୋ ସହିତ ଏକମତ ହେବେ ।

ଆନ୍ତରିକ ସ୍ନେହର ସହିତ
ଆପଣଙ୍କର
ଇନ୍ଦିରା ଗାନ୍ଧୀ

## ଡକ୍‌ଟର କରଣ ସିଂହଙ୍କ ଉତ୍ତର

କ୍ୟାମ୍ପ—ଅଶୋକ ହୋଟେଲ
ନୂଆଦିଲ୍ଲୀ
୧୮ ଅଗଷ୍ଟ, ୧୯୬୭

ମୋର ଶ୍ରଦ୍ଧେୟା ଇନ୍ଦିରାଜୀ !

ଆପଣଙ୍କର ଅଗଷ୍ଟ ୧୮ ତାରିଖର ପତ୍ରଲାଗି ଧନ୍ୟବାଦ ! ଆପଣ ଉକ୍ତ ପତ୍ରରେ ମୋ ପ୍ରତି ଯେଉଁ ଧାରଣା ଓ ସଦ୍‌ଭାବନା ବ୍ୟକ୍ତ କରିଛନ୍ତି, ସେଥିଲାଗି ମୁଁ କୃତଜ୍ଞତା ଜ୍ଞାପନ କରୁଛି । ଆପଣଙ୍କ ଇଚ୍ଛାନୁସାରେ ମୁଁ ଆଉ କେତେ ମାସ ରାଜ୍ୟପାଳରୂପେ କାର୍ଯ୍ୟ ସମ୍ପାଦନ କରିବି ।

ହାର୍ଦ୍ଦିକ ଆଦରର ସହିତ
ଆପଣଙ୍କର
କରଣ ସିଂହ

୧୯୬୭ ମସିହାରେ ନିର୍ବାଚନ ଅନୁଷ୍ଠିତ ହେଲା । ଅନେକ ଗଣ୍ଡଗୋଳ, ଦଳୀୟ ରାଜନୀତି, ନିର୍ବାଚନ ପ୍ରଚାରର ନାନାପ୍ରକାର ଧ୍ୱନି, ନୂତନ କୌଶଳ ଓ ମାରପେଞ୍ଚ୍, ଜୋର ଜବରଦସ୍ତି, ମାଡ଼ପିଟ୍, ଗାଳିଗୁଲଜ ତଥା ସଦାଚାର ଓ ବ୍ୟଭିଚାର ମଧ୍ୟରେ ନିର୍ବାଚନ ଆରମ୍ଭ ହେଲା । ପ୍ରତ୍ୟେକ ଦଳପକ୍ଷରୁ ଜଣା

ଅଧିତଙ୍କ ସମସ୍ତ ପ୍ରକାର କୌଶଳର ପ୍ରୟୋଗ କରାଗଲା । କଂଗ୍ରେସଦଳର ପ୍ରାର୍ଥୀ-ମାନେ ନିଜ ଦଳର ମତ ଜନସାଧାରଣଙ୍କ ସମ୍ମୁଖରେ ବ୍ୟକ୍ତ କଲେ ଓ ଅନ୍ୟାନ୍ୟ ବିରୋଧୀଦଳଗୁଡ଼ିକ ମଧ୍ୟ ସେମାନଙ୍କ ଯୋଜନା ଜନତା ଆଗରେ ଉପସ୍ଥାପିତ କଲେ । ଯେକୌଣସିମତେ ହୋ'ହଲ୍ଲା, ମାରଧର ଓ ଧରପଗଡ଼ ମଧ୍ୟରେ ନିର୍ବାଚନ ପାଲା ଶେଷ ହେଲା । ପ୍ରାୟ ସାତ ଆଠଟି ରାଜ୍ୟରେ କଂଗ୍ରେସ ଦଳ ପରାଜିତ ହେଲା ଏବଂ ଦଳର ସ୍ତମ୍ଭସ୍ୱରୂପ କେତେକ ମୁଖ୍ୟ ନେତାଙ୍କର ଯେଉଁ ଦୁର୍ଗତି ହେଲା—ତାହାର ଉଲ୍ଲେଖ ଅନାବଶ୍ୟକ । କେତେକ ବିଶିଷ୍ଟ ବ୍ୟକ୍ତି ତଥା ନେତୃବୃନ୍ଦଙ୍କ ବ୍ୟକ୍ତିଗତ ଅନ୍ୟମାନଙ୍କୁ ନିର୍ବାଚନ କ୍ଷେତ୍ରରେ ଅପଦସ୍ତ ହେବାକୁ ପଡ଼ିଲା । ତଥାପି କେନ୍ଦ୍ରରେ କଂଗ୍ରେସଦଳର ଶାସନ ପୂର୍ବପରି ଅବ୍ୟାହତ ରହିଲା । ପୁଣି ଶ୍ରୀମତୀ ଇନ୍ଦିରା ଗାନ୍ଧୀ ପ୍ରଧାନମନ୍ତ୍ରୀରୂପେ ନିର୍ବାଚିତା ହେଲେ । ସେତେବେଳେ ତାଙ୍କ ସମ୍ମୁଖରେ ଗୋଟିଏ ଦୃଢ଼ ତଥା ସମର୍ଥ ମନ୍ତ୍ରି-ମଣ୍ଡଳ ଗଠନର ସମସ୍ୟା ଆସି ଉପସ୍ଥିତ ହେଲା । ପରିଣାମସ୍ୱରୂପ ଡ. କରଣ ସିଂହ ରାଜ୍ୟପାଳ ପଦରୁ ଇସ୍ତଫା ଦେଇ ଲୋକସଭାର ସଭ୍ୟପଦଲାଗି ନିର୍ବାଚନର ସମ୍ମୁଖୀନ ହେବା ଉଦ୍ଦେଶ୍ୟରେ ଶ୍ରୀମତୀ ଗାନ୍ଧୀ ଅନୁମତି ଦେଲେ । ଡ. କରଣ ସିଂହ ଜାମ୍ମୁ ଅନ୍ତର୍ଗତ ଉଧମପୁର ନିର୍ବାଚନ ମଣ୍ଡଳୀରୁ ନିର୍ବାଚନ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇ, ତାଙ୍କ ବିରୋଧରେ ଛିଡ଼ା ହୋଇଥିବା ବ୍ୟକ୍ତିଙ୍କୁ ଅଢ଼େଇ ଲକ୍ଷ ଭୋଟରେ ପରାଜିତ କରି ଲୋକସଭାକୁ ନିର୍ବାଚିତ ହେଲେ ।

ଏହା ମଧ୍ୟରେ ଶେଖ୍ ଅବ୍‌ଦୁଲ୍ଲାଙ୍କୁ ନଜରବନ୍ଦୀରୁ ମୁକ୍ତ କରି ଦିଆଗଲା । ଗତ ୧୯୬୮ ମସିହା ଜାନୁଆରୀ ଦୁଇ ତାରିଖ 'ଇଦ୍' ପର୍ବ ଦିନର ଘଟଣା । ସେଦିନ ଦିଲ୍ଲୀ 'ଇଦ୍‌ଗାହ୍'ଠାରେ ତାଙ୍କର ପ୍ରଥମ ଭାଷଣର ଆୟୋଜନ କରାଯାଇଥିଲା । ତା' ପରେ ଅନେକ ସ୍ଥାନରେ ସେ ଭାଷଣ ଦେଲେ । ତା'ର ଫଳସ୍ୱରୂପ କେବଳ ଯେ ସାମ୍ପ୍ରଦାୟିକ ଦଙ୍ଗା ଲାଗିଲା ତା' ନୁହେଁ, ତାହାର କୁପ୍ରଭାବ ଦେଶବାସୀଙ୍କ ପକ୍ଷରେ ଏକ ଗଭୀର ଚିନ୍ତାର ବିଷୟ ହୋଇ-ଉଠିଲା । ମେରଠ୍ ଜିଲ୍ଲାରେ ତାଙ୍କ ଭାଷଣ ଫଳରେ ହିନ୍ଦୁମୁସଲମାନ ସମ୍ପ୍ରଦାୟ ମଧ୍ୟରେ ଭୟଙ୍କର ଦଙ୍ଗା-ହଙ୍ଗାମ୍ ଆରମ୍ଭ ହୋଇଗଲା । ତା' ଫଳରେ ଉତ୍ତର-ପ୍ରଦେଶର ସୀମା ମଧ୍ୟରେ ପାଦ ନ ପକାଇବା ଲାଗି ରାଜ୍ୟ ସରକାରଙ୍କ ପକ୍ଷରୁ ଶେଖ୍ ସାହେବଙ୍କ ଉପରେ ଆଦେଶନାମା ଜାରି କରାଗଲା । ତାଙ୍କର ଦୁଇ ଗୋଟି ଭାଷଣର କିୟଦଂଶ ଏଠାରେ ପ୍ରଦତ୍ତ ହେଲା ।

୧୯୬୮ ଜାନୁଆରୀ ୧୭ ତାରିଖରେ 'ଜମାୟତ୍ ଉଲ୍‌ଲେମା ହିନ୍ଦ୍'ର ଦିଲ୍ଲୀ ଶାଖାଦ୍ୱାରା ଆୟୋଜିତ ସଭାରେ ସେ ଭାଷଣ ଦେଇ କହିଥିଲେ :

"ହିନ୍ଦୁସ୍ତାନରେ ଥିବା ମୁସଲମାନମାନଙ୍କ ଦୁର୍ଦ୍ଦଶା ସମ୍ବନ୍ଧରେ ମୋତେ ଯେ ଜଣା ନାହିଁ ତା' ନୁହେଁ । ମୁଁ ଜାଣେ, ଏଠାରେ ସେମାନଙ୍କ ଅବସ୍ଥା ଆଦୌ ଭଲ ନୁହେଁ । ଭାରତରେ ଜଣେ ଜଣେ ସମ୍ମାନାସ୍ପଦ ନାଗରିକ ହୋଇ ରହିବା ଲାଗି ପ୍ରତ୍ୟେକ ନାଗରିକ ଚାହେଁ । ଏହା ହିଁ ସେମାନଙ୍କର ହକ୍ ବୋଲି ପ୍ରତ୍ୟେକ ମୁସଲମାନ ଭାବନ୍ତି । କିନ୍ତୁ ମୁଁ କହେ—ଆପଣମାନେ ଯଦି ମୋ କଥା ମାନନ୍ତି; ତା'ହେଲେ ଆପଣମାନେ ଅନ୍ୟ ଉପରେ ଭରସା ନ ରଖି ନିଜ ଉପରେ ଭରସା ରଖିବାକୁ ଚେଷ୍ଟା କରନ୍ତୁ । × × ହିନ୍ଦୁସ୍ତାନରେ ମୁସଲ-ମାନ ଜନସାଧାରଣଙ୍କ ମନରେ ଭୟ ଜାତ ହେତୁ ପାକିସ୍ତାନର ଜନ୍ମ ହୋଇଛି ଏବଂ ଭାରତର ମୁସଲମାନ ଜନତାଙ୍କ ମନରେ ଗୋଟିଏ ଭ୍ରାନ୍ତ ଧାରଣା ସୃଷ୍ଟି ହୋଇଛି ଯେ ସେମାନଙ୍କୁ କଉଡ଼ଭାଇଙ୍କଠାରୁ ନ୍ୟାୟ ବିଚାର ମିଳିବ ନାହିଁ । ଜଣେ ମୁସଲମାନ ହିସାବରେ ମୋର ଧାରଣା ତଥା 'କୁରାନ୍ ଶରୀଫ୍'ରେ ମଧ୍ୟ ଲେଖାଅଛି—ଘୃଣା ଓ ବୈମନସ୍ୟ ଦୂର କରିବା ଲାଗି ସ୍ନେହ କରିବା ହେଉଛି ପ୍ରଧାନ ତଥା ଏକମାତ୍ର ଉପାୟ । କିନ୍ତୁ ଦୁଃଖର ସହିତ କହିବାକୁ ପଡ଼ୁଛି ଯେ, ସେଭଳି ସୌହାର୍ଦ୍ଦପୂର୍ଣ୍ଣ ଆଚରଣ କରାଯାଉ ନାହିଁ; ବରଂ ତା'ର ବିପରୀତରେ ସମ୍ପୂର୍ଣ୍ଣ ଦଳବଳର ସହିତ ମୁସଲମାନମାନଙ୍କୁ ଲୁଟ୍ କରାଯିବା ସଙ୍ଗେ ସଙ୍ଗେ ସର୍ବସାଧାରଣରେ ହତ୍ୟା କରାଯାଉଛି । କେହି କ'ଣ ଭାବୁଛି ଯେ, ହିନ୍ଦୁସ୍ତାନର ବାହାରେ ଏହାର କି ପ୍ରଭାବ ପଡ଼ୁଛି ! ଏକଥା ବାରମ୍ବାର ଜାଣି ସୁଦ୍ଧା ମୁଁ କିପରି ହିନ୍ଦୁସ୍ତାନକୁ ବିଶ୍ୱାସ କଲି ବୋଲି ମୋତେ ସମସ୍ତେ ଗୋଟିଏ ମାତ୍ର ପ୍ରଶ୍ନ ପଚାରୁଛନ୍ତି । × ×"

୧୯୬୮ ଜାନୁଆରୀ ୧୯ ତାରିଖରେ ଆଲିଗଡ଼ ବିଶ୍ୱବିଦ୍ୟାଳୟରେ ଭାଷଣ ଦେଇ ଶେଖ୍ ସାହେବ୍ କହିଛନ୍ତି :

"× × × ମୁଁ ହିନ୍ଦୁସ୍ତାନ ଓ ପାକିସ୍ତାନର ଭାଗବଣ୍ଟାକୁ ଆଦୌ ପସନ୍ଦ କରେ ନାହିଁ; ବିଶେଷତଃ ହିନ୍ଦୁମାନେ ଏହା ବିରୁଦ୍ଧରେ ସ୍ୱର ଉଠାନ୍ତି ଏବଂ ଏହା ଫଳରେ ସେମାନେ ଅନେକ ଅସୁବିଧାର ସମ୍ମୁଖୀନ ହୋଇଛନ୍ତି । ମୁଁ ହିନ୍ଦୁମାନଙ୍କର ଏ ପ୍ରକାର ମନୋଭାବ ଥିବାର ଜାଣେ; କିନ୍ତୁ ସେମାନେ ବୁଝିବା ଉଚିତ, ହିନ୍ଦୁସ୍ତାନରୁ ମୁସଲମାନମାନେ କାହିଁକି ପୃଥକ୍ ହୋଇ ରହି-

କାକୁ ପସନ୍ଦ କଲେ ? ଯଦି ସେମାନେ ଏ ବିଷୟ ଠିକ୍ଏ ହେଲେ ଚିନ୍ତା କରନ୍ତେ, ତା'ହେଲେ ସେମାନେ ନିଜେ ତା'ର ଉତ୍ତର ପାଇପାରନ୍ତେ । ଏଠାରେ ମୁସଲ୍‌ମାନମାନଙ୍କୁ ନିର୍ଦ୍ଦୟଭାବରେ ହତ୍ୟା କରାଯାଉଛି । ହଜାର ହଜାର ମୁସଲ୍‌ମାନମାନଙ୍କୁ ରାସ୍ତାରେ ମୃତ୍ୟୁମୁହଁକୁ ଠେଲିଦିଆଗଲା । ସେମାନଙ୍କର ବଳ ଅଛି, ଶାସନ କ୍ଷମତା ସେହିମାନଙ୍କ ହାତରେ; କିନ୍ତୁ ବିଚରା ମୁସଲ୍‌ମାନ-ମାନେ ନିରୁପାୟ, ଅସହାୟ ତଥା ନାଚାର । କେବଳ 'ଖୁଦା'ଙ୍କ ବ୍ୟତୀତ ସେମାନଙ୍କର ଆଉ କେହି ଭରସା ନାହିଁ । କିନ୍ତୁ ମୁଁ ଆପଣମାନଙ୍କୁ କହିରଖେ, ଏ ପ୍ରକାର ଅତ୍ୟାଚାରଦ୍ୱାରା କେବେହେଲେ ଇସ୍‌ଲାମ ଧର୍ମାବଲମ୍ବୀମାନଙ୍କର ସତ୍ତା ଲୋପ କରିହେବ ନାହିଁ । ସେଥିପାଇଁ ଏହି ଦୁର୍ଦ୍ଦଶାଗ୍ରସ୍ତ ମୁସଲ୍‌ମାନମାନେ ପାକିସ୍ତାନର ସମର୍ଥକ ହୋଇଉଠିଛନ୍ତି ଏବଂ ମୋତେ ମଧ୍ୟ କହୁଛନ୍ତି— 'ଅବ୍‌ଦୁଲ୍ଲା, ଏଥର ତୁମର ବିଶ୍ୱାସ ହେଲା ! ହିନ୍ଦୁମାନେ କେବେହେଲେ ତୁମର ବନ୍ଧୁ ହୋଇପାରିବେ ନାହିଁ । ଆମ କଥା ସତ କି ମିଛ, ଏଥର ନିଜେ ଅନୁଭବ କର' × × ।"

୧୯୬୮ ଜାନୁଆରୀ ୨୮ ତାରିଖରେ ମେରଠ୍‌ରେ ଭାଷଣ ଦେଇ ଶେଖ୍ ଅବ୍‌ଦୁଲ୍ଲା କହିଥିଲେ :

"× × ଆପଣମାନେ ହିନ୍ଦୁସ୍ତାନକୁ ଭାଗ ଭାଗ କଲାବେଳେ ଆମ୍ଭେମାନେ ଜେଲରେ ସଡ଼ୁଥିଲୁ । ସେ ଭାଗବଣ୍ଟା ଲାଗି ଦାୟୀ କିଏ ? ଆମେ ମୁସଲମାନମାନେ ହିନ୍ଦୁସ୍ତାନର ଉଜ୍ଜ୍ୱଳ ଭବିଷ୍ୟତ ଲାଗି କ'ଣ ନ କରିଛୁ ? କିନ୍ତୁ ଆମର ସେହି ସ୍ୱପ୍ନକୁ ପାଣିଫୋଟକା ପରି ମିଳାଇ ଦେଲା କିଏ ସେ ? ଆପଣ-ମାନେ କ'ଣ ଏ ପ୍ରଶ୍ନ କେବେହେଲେ ନିଜକୁ ପଚାରିଛନ୍ତି ? ଏ ପ୍ରଶ୍ନ ଆପଣ-ମାନଙ୍କର ସର୍ଦ୍ଦାର୍ ପଟେଲଙ୍କୁ ପଚାରିବାର ଥିଲା । ମୁସଲ୍‌ମାନମାନେ ହିନ୍ଦୁସ୍ତାନ ଓ ପାକିସ୍ତାନକୁ ଭାଗ ଭାଗ କରିନାହାନ୍ତି ! ଆଜି ଯାହା କିଛି ଦୁର୍ଭାଗ୍ୟଜନକ ପରିସ୍ଥିତି ଉପୁଜିଛି, ସବୁ କିଛି ଆପଣମାନଙ୍କପାଇଁ ହୋଇଛି । ଯଦି ଆପଣ-ମାନେ ଚାହିଁଥା'ନ୍ତେ ତା'ହେଲେ କେବେହେଲେ ଏ ଭାଗବଣ୍ଟା ସମ୍ଭବ ହୋଇ ନ ଥା'ନ୍ତା ! ଆଜି ଆପଣମାନେ ଯେଉଁ 'ଜମାୟତ୍ ଉଲୁଲେମା'ର ନେତାମାନଙ୍କ ବିରୁଦ୍ଧରେ ଗଣ୍ଡଗୋଳ ଆରମ୍ଭ କରିଛନ୍ତି, ସେହିମାନେ ହିଁ ଏ ଦେଶର ସମୁନ୍ନତି ଲାଗି ବହୁ ଅସୁବିଧା ଓ କଷ୍ଟ ସହିଛନ୍ତି । ମୌଲନା ହସନ୍ ଓ ମୌଲନା ହୁସେନ୍ ମଦମାଙ୍କର ଆତ୍ମବଳିଦାନ ସମ୍ବନ୍ଧରେ ଆପଣମାନେ ଭୁଲିଯିବା ଉଚିତ ନୁହେଁ !

ଆଜି ଆପଣମାନେ ଯେଉଁ ଦୃଷ୍ଟିରେ ସେମାନଙ୍କୁ ଦେଖୁଛନ୍ତି, ତା'ଫଳରେ ଆମମାନଙ୍କ ମନରେ ବିଶେଷ ଦୁଃଖ ଜାତ ହେଉଛି ।

ଏଠା ନବଯୁବକମାନେ 'ଅଖଣ୍ଡ ଭାରତ'ର ପୁନର୍ଗଠନଲାଗି ଯେଉଁ ପ୍ରଚେଷ୍ଟା ଚଳାଇଛନ୍ତି ସେଥିପ୍ରତି ମୁଁ ସମ୍ମାନ ପ୍ରଦର୍ଶନ କରୁଛି । କିନ୍ତୁ ପାକିସ୍ତାନରେ ବାସ କରୁଥିବା କୋଟି କୋଟି ମୁସଲ୍‌ମାନ ଜନତାଙ୍କ ମନରୁ ସମ୍ପୂର୍ଣ୍ଣଭାବରେ ଭୟ (ହିନ୍ଦୁମାନଙ୍କଠାରୁ) ଦୂର ହୋଇପାରିଲେ, ସେ ପ୍ରକାର ଉଦ୍ଦେଶ୍ୟ ସାଧନ ହେବାର ବାଟ ଫିଟିଯିବ ! କିନ୍ତୁ ସେ ପ୍ରକାର କାର୍ଯ୍ୟ ଲାଗି ଆପଣମାନେ ପ୍ରସ୍ତୁତ ହେଉଛନ୍ତି କି ? ଆପଣମାନେ ରାଞ୍ଚି, ରାଉରକେଲା ଓ ମହାରାଷ୍ଟ୍ର ଆଦି ସ୍ଥାନରେ ଅନ୍ୟପ୍ରକାର କାର୍ଯ୍ୟପନ୍ଥା ଗ୍ରହଣ କରିଛନ୍ତି । ତା' ଫଳରେ ସେମାନଙ୍କ ହୃଦୟରେ ଭୟର ମାତ୍ରା ଆହୁରି ବୃଦ୍ଧି ପାଇଛି ଏବଂ ଆପଣମାନଙ୍କପ୍ରତି ବିଶ୍ୱାସ ଧୀରେ ଧୀରେ ତୁଟିଯାଉଛି । ଏହି କାରଣରୁ ସେମାନେ (ମୁସଲ୍‌ମାନମାନେ) ମୋତେ କହୁଛନ୍ତି "ଶେଖ୍ ! ତୁମେ ଭାଇ ହେବାକୁ ଯେଉଁ ମନ କରିଥିଲ, ତା'ର ଫଳ ପାଇଲ ତ ? ଏହା ଫଳରେ ତୁମେ କେବଳ ନିଜର ଅପକାର କରିନାହଁ; ବରଂ ନିଜ ବନ୍ଧୁ ତଥା ନିଜ ଜାତିଭାଇଙ୍କର ସର୍ବନାଶ କରିଛ ।"

ଏହି ପରିପ୍ରେକ୍ଷୀରେ ବିଚାର କଲେ ଜଣାଯାଏ ଯେ, ଜାମ୍ମୁ ଓ କାଶ୍ମୀର ରାଜ୍ୟରେ ପୁଣି କିଛି ହଟଚମଟ ଲଗାଇବା ଉଦ୍ଦେଶ୍ୟରେ ଶେଖ୍ ସାହେବ ସୁଯୋଗ ଖୋଜୁଥିଲେ । ସେଇଥିପାଇଁ ଆମର ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀ ଶେଖ୍ ଅବଦୁଲ୍ଲାଙ୍କ ସହିତ ବାରମ୍ବାର ଆଲୋଚନା ଚଳାଇ ତାଙ୍କ ମତିଗତିକୁ ବଦଳାଇବାକୁ ଚେଷ୍ଟା କରିଥିଲେ ।



# ସତର

ରାଜନୀତିରେ କେତେବେଳେ କ'ଣ ହେବ, ତାହା ଆଗରୁ ଘୋଷଣା କରିବା ଆଦୌ ସମ୍ଭବ ନୁହେଁ । ଯେଉଁ ଶେଖ୍ ଅବ୍ଦୁଲ୍ଲା ଦିନେ ଭାରତୀୟ ଜନତାର ଆଦରଣୀୟ ନେତାରୂପେ କାଶ୍ମୀରରୁ କନ୍ୟାକୁମାରୀ ପର୍ଯ୍ୟନ୍ତ ପ୍ରଖ୍ୟାତ ଥିଲେ, ସେ ପୁଣି ଘଟଣା ପ୍ରବାହର ଆବର୍ତ୍ତନରେ ପରିବର୍ତ୍ତିତ ହୋଇଗଲେ । କ୍ଷମତା ଲିପ୍ସା ତାଙ୍କୁ ତ୍ୟାଗପୂତ ଜୀବନଠାରୁ ବହୁ ତଳକୁ ନେଇଗଲା । ସେ ନିଜର ଉଦ୍ଦେଶ୍ୟ ସାଧନ ଲାଗି ଆଖିବୁଜି ଯାହାଇଚ୍ଛା ତାହା କରିବାକୁ ଲାଗିଲେ । ସେଇଥିପାଇଁ ତାଙ୍କୁ ୧୯୫୩ ମସିହା ଅଗଷ୍ଟ ଆଠ ତାରିଖରେ ଗିରଫ କରାଯାଇଥିଲା । ରାଜ୍ୟର ହିତ ଦୃଷ୍ଟିରୁ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହରୁ ମଧ୍ୟ ଶେଖ୍ ଅବ୍ଦୁଲ୍ଲାଙ୍କ ଉପରେ ବିରକ୍ତି ପ୍ରକାଶ କଲେ । ଦିନେ ଯେଉଁ ଜବାହର୍‌ଲାଲଜୀ ଶେଖ୍ ଅବଦୁଲ୍ଲାଙ୍କ ଗିରଫର ପ୍ରତିବାଦ କରି କାଶ୍ମୀରରେ ବନ୍ଦୀ ହୋଇ ଥିଲେ ସେ ମଧ୍ୟ ଶେଖ୍ ସାହେବଙ୍କ ମତିଗତି ଦେଖି ବିଚଳିତ ହୋଇପଡ଼ିଲେ । ତା'ର ଫଳରେ ଶେଖ୍ ସାହେବଙ୍କର ଦୁର୍ଦ୍ଦିନ ଆରମ୍ଭ ହୋଇଥିଲା ।

ସମୟର ରଥ ତୀବ୍ରବେଗରେ ଘୂରି ଚାଲିବା ସଙ୍ଗେ ସଙ୍ଗେ ଜାମ୍ମୁ ଓ କାଶ୍ମୀରର ଜନସାଧାରଣ ଭଲ ଓ ମନ୍ଦର ତାରତମ୍ୟ ବେଶ୍ ବୁଝିପାରିଲେ । ପାକିସ୍ତାନ ମଧ୍ୟରେ ଯେଉଁ ରାଜନୈତିକ ଅସ୍ଥିରତା ଦେଶକୁ ବିପଦପୂର୍ଣ୍ଣ କରି ରଖିଛି ତା'ର କୁଫଳ ସମ୍ବନ୍ଧରେ କାଶ୍ମୀରର ଅଧିବାସୀଗଣ ବେଶ୍ ହୃଦୟଙ୍ଗମ କରିପାରିଲେ ।

କାଶ୍ମୀର ଉପତ୍ୟକାର ଅଧିବାସୀଗଣ ଭାରତୀୟ ନେତାମାନଙ୍କର ଉଦାର ମନୋଭାବ ଓ ସଂଖ୍ୟାଲଘୁ ସମ୍ପ୍ରଦାୟପ୍ରତି ନ୍ୟାୟପୂର୍ଣ୍ଣ ଆଚରଣ ଦେଖି ବିସ୍ମିତ ହୋଇଯାଇଥିଲେ । ତେଣୁ ଯେଉଁ କେତେକ କାଶ୍ମୀରୀୟ ଜନତା ପାକିସ୍ତାନର ସମର୍ଥକ ଥିଲେ, ସେମାନଙ୍କ ଧାରଣା ମଧ୍ୟ ପରିବର୍ତ୍ତିତ ହେବାକୁ ଲାଗିଲା । ଭାରତବର୍ଷର ଅଙ୍ଗ ହୋଇ ରହିବା ଅତ୍ୟନ୍ତ ଶ୍ରେୟସ୍କର ବୋଲି,

ସେହି ପାକିସ୍ତାନର ସମର୍ଥକମାନେ ମଧ୍ୟ ସ୍ପଷ୍ଟ ଅନୁଭବ କଲେ । ବିଶେଷତଃ ୧୯୬୫ ଓ ୧୯୭୧ ସାଲରେ ପାକିସ୍ତାନର ସ୍ୱେଚ୍ଛାଚ୍ଛାରୀ ଶାସକଙ୍କ ନିର୍ମମ ଆକ୍ରମଣକୁ ଭାରତ ଯେପରିଭାବରେ ପ୍ରତିହତ କରିଦେଲା ତା'ର ପଟାନ୍ତର ଇତିହାସରେ ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ । ୧୯୬୫ରେ ପ୍ରଧାନମନ୍ତ୍ରୀ ଲାଲ୍‌ବାହାଦୁର ଶାସ୍ତ୍ରୀଙ୍କ ଦୃଢ଼ତା ସମଗ୍ର ବିଶ୍ୱବାସୀଙ୍କୁ ଚମତ୍କୃତ କରାଇଦେଲା ଏବଂ ଠିକ୍ ସେହିପରି ୧୯୭୧ ଡିସେମ୍ବର ମାସରେ ପାକିସ୍ତାନର ଶାସକଙ୍କ ବର୍ବରୋଚିତ ଆକ୍ରମଣକୁ ଆମ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଯେପରିଭାବରେ ପ୍ରତିହତ କଲେ ତା'ର ମଧ୍ୟ ତୁଳନା ନାହିଁ । ହିନ୍ଦୁ, ମୁସଲ୍‌ମାନ, ଶିଖ, ପାର୍ଶୀ ଆଦି ଭାରତୀୟ ଜବାନ୍‌ମାନେ ମାତୃଭୂମିର ଗୌରବରକ୍ଷାପାଇଁ ଯେଉଁ ପ୍ରକାର ଅଦମ୍ୟ ସାହସ ଓ କାର୍ଯ୍ୟକୁଶଳତା ପ୍ରଦର୍ଶନ କଲେ, ତାହା କାଶ୍ମୀର ଉପତ୍ୟକାର ପାକିସ୍ତାନୀ ସମର୍ଥକଙ୍କ ଆଖି ଖୋଲିଦେଲା । ବିଶେଷତଃ ଭାରତର ଉଚ୍ଚପଦବୀରେ ସଂଖ୍ୟାଲଘୁ ମୁସଲ୍‌ମାନମାନଙ୍କ ନିଯୁକ୍ତି, ସାମ୍ପ୍ରଦାୟିକତାକୁ ଦୃଢ଼ହସ୍ତରେ ଦମନ ପ୍ରଭୃତି କାର୍ଯ୍ୟକଳାପ ତଥା ଜାମ୍ମୁ ଓ କାଶ୍ମୀରର ଅଧିବାସୀମାନଙ୍କ ଉନ୍ନତି କଳ୍ପେ କେନ୍ଦ୍ର ସରକାରଙ୍କର ଅକୁଣ୍ଠ ସାହାଯ୍ୟ, ବିଚ୍ଛିନ୍ନତାବାଦୀଙ୍କ ଆଖି ଖୋଲିଦେଲା । କାଶ୍ମୀର ଉପତ୍ୟକାର ଜନସାଧାରଣଙ୍କ ମନରେ ଅଭୂତପୂର୍ବ ପରିବର୍ତ୍ତନ ଲକ୍ଷ୍ୟ କରି ଶେଖ୍ ଅବ୍‌ଦୁଲ୍ଲା ମଧ୍ୟ ନିଜ ମତିଗତି ପରିବର୍ତ୍ତନ କରିବାକୁ ଲାଗିଲେ ।

ଜାମ୍ମୁ ଓ କାଶ୍ମୀରକୁ ଭାରତର ଅନ୍ୟତମ ଏକ ରାଜ୍ୟରୂପେ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ଭାରତ ସରକାରଙ୍କ ନୀତିକୁ ପୂର୍ଣ୍ଣପ୍ରାଣରେ ସମର୍ଥନ ଜଣାଇବା ଲାଗି ଶେଖ୍ ସାହେବ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀଙ୍କ ନିକଟରେ ପ୍ରତିଶ୍ରୁତ ହେଲେ । ତେଣୁ ଜାମ୍ମୁ ଓ କାଶ୍ମୀର ରାଜ୍ୟର ଉନ୍ନତିକଳ୍ପେ ଭାରତ ସରକାର ଶେଖ୍ ଅବ୍‌ଦୁଲ୍ଲା ଓ ତାଙ୍କ ଦଳର ନେତୃତ୍ୱକୁ ଅକୁଣ୍ଠଭାବରେ ସ୍ୱୀକାର କରିନେଲେ । ତା'ର ଫଳରେ ୧୯୭୫ ମସିହାରେ ଭାରତ ସରକାର ଶେଖ୍ ସାହେବଙ୍କ ସହିତ ଗୋଟିଏ ଚୁକ୍ତିନାମାରେ ଉପନୀତ ହେଲେ । ଧର୍ମନିରପେକ୍ଷତା, ସମାଜବାଦ ଓ ଗଣତନ୍ତ୍ର ଭିତ୍ତିରେ ଏକ ରାଜିନାମା ସ୍ୱାକ୍ଷରିତ ହେଲା । ତେଣୁ ଭାରତ ବିରୋଧୀ ଗଣଭୋଟ ସାମ୍ମୁଖ୍ୟ, ନାମକ ଅନୁଷ୍ଠାନଟିକୁ ଭାଙ୍ଗି ଦିଆଯାଇ କାଶ୍ମୀରର 'ଜାତୀୟ ସମ୍ମେଳନୀ'କୁ ପୁନରୁଜ୍ଜୀବିତ କରାଗଲା ଏବଂ ଶେଖ୍ ଅବ୍‌ଦୁଲ୍ଲାଙ୍କ ନେତୃତ୍ୱରେ ନୂତନ ମନ୍ତ୍ରିମଣ୍ଡଳ ଗଠିତ

ହେଲା । ଏହାଫଳରେ ପାର୍ଶ୍ୱ ଭିନର ବିବଦମାନ ପରିସ୍ଥିତି ଆୟତ୍ତକୁ ଆସିଲା । ଶେଖ୍ ସାହେବଙ୍କ ସରକାର କାଶ୍ମୀର ରାଜ୍ୟର ସର୍ବବିଧ ଉନ୍ନତିକଲେ୍ୱ ଭାରତ-ସରକାରଙ୍କ ସହିତ ଏକମତ ହୋଇ ରାଜ୍ୟର ପୁନର୍ଗଠନରେ ଅଗ୍ରସର ହେଲେ ।

ଘଟଣାଚକ୍ରରେ ଶେଖ୍ ସାହେବଙ୍କ ମୃତ୍ୟୁପରେ ତାଙ୍କ ପୁଅ ଡ. ଫାରୁକ୍ ଅବ୍‌ଦୁଲ୍ଲା ରାଜ୍ୟର ମୁଖ୍ୟମନ୍ତ୍ରୀ ହେଲେ । କିନ୍ତୁ 'ଜାତୀୟ ସମ୍ମେଳନୀ' ଦୁଇ ଭାଗରେ ବିଭକ୍ତ ହୋଇଯିବାରୁ ବର୍ତ୍ତମାନ ଶେଖ୍ ଅବ୍‌ଦୁଲ୍ଲାଙ୍କ ଜ୍ୱାଇଁ ଜି. ଏମ୍. ଶାହା ଜାମ୍ମୁ ଓ କାଶ୍ମୀରର ମୁଖ୍ୟମନ୍ତ୍ରୀରୂପେ ରାଜ୍ୟର ସର୍ବବିଧ ଉନ୍ନତି ଲାଗି ଯତ୍ନବାନ୍ ହୋଇଛନ୍ତି ।

ଭାରତର ସାର୍ବଭୌମ ସରକାରଙ୍କ ଅଧୀନରେ ଜାମ୍ମୁ ଓ କାଶ୍ମୀର ଏକ ରାଜ୍ୟରୂପେ ସମସ୍ତ ପ୍ରକାର ସୁବିଧା ହାସଲ କଲା । ଏହି ରାଜ୍ୟର ଆୟତନ ୨, ୨୨, ୨୧୭ ବର୍ଗ କିଲୋମିଟର ଏବଂ ରାଜ୍ୟର ଲୋକସଂଖ୍ୟା ୫୬, ୧୬, ୬୩୨ । ସମୁଦାୟ ରାଜ୍ୟର ୧୦ଟି ଜିଲା ରହିଛି ଏବଂ ରାଜଧାନୀ ଶ୍ରୀନଗର । କିନ୍ତୁ ସେଠାରେ ପ୍ରଚଣ୍ଡ ଶୀତ ପଡ଼ୁଥିବାରୁ, ଶୀତକାଳରେ ଜାମ୍ମୁକୁ ଦ୍ୱିତୀୟ ରାଜଧାନୀରୂପେ ବ୍ୟବହାର କରାଯାଏ ଏବଂ ସରକାରଙ୍କର ଜରୁରୀ ଦପ୍ତରମାନ ଜାମ୍ମୁରେ ପରିଚାଳିତ ହୁଏ । ଜାମ୍ମୁ ଓ କାଶ୍ମୀର ରାଜ୍ୟରେ ଡୋଗ୍ରୀ ଓ କାଶ୍ମୀରୀ ଭାଷା ସର୍ବସାଧାରଣରେ ପ୍ରଚଳିତ ହୁଏ । ପ୍ରାଚୀନ କାଳରେ କାଶ୍ମୀରରେ ଶାରଦାଲିପିର ପ୍ରଚଳନ ଥିଲା । ସେହି ଲିପିରେ ବହୁ ଦୁର୍ଲ୍ଲଭ ଗ୍ରନ୍ଥ ଲିଖିତ ହୋଇ ଶ୍ରୀନଗରର 'ପାଣ୍ଡୁଲିପି ଭଣ୍ଡାର'ରେ ସଂରକ୍ଷିତ ହୋଇଛି ।

ଜାମ୍ମୁ ଓ କାଶ୍ମୀରର ଶତକଡ଼ା ୮୦ଭାଗ ଲୋକ କୃଷି ଉପରେ ନିର୍ଭର କରନ୍ତି । କାଶ୍ମୀରର ୮. ୭୭ ଲକ୍ଷ ହେକ୍ଟର୍ କୃଷିଉପଯୋଗୀ ଜମି ମଧ୍ୟରୁ ୩. ୨୦ଲକ୍ଷ ହେକ୍ଟର ଜମି ଜଳସେଚିତ । ଫଳଚାଷ ଲାଗି କାଶ୍ମୀର ଭାରତରେ ପ୍ରସିଦ୍ଧ ରାଜ୍ୟ ଏବଂ ଏହା ଏକ ଲାଭପ୍ରଦ ବ୍ୟବସାୟରୂପେ ଗୃହୀତ । ଲକ୍ଷାଧିକ ଲୋକ ଏଥିରେ ଜୀବିକା ନିର୍ବାହ କରନ୍ତି । କାର୍ପେଟ୍ ସାଲ ତିଆରରେ କାଶ୍ମୀର ଭାରତର ଅଦ୍ୱିତୀୟ କେନ୍ଦ୍ର । ଏହି ରାଜ୍ୟରେ ପଶମ ଶିଳ୍ପ ପ୍ରଧାନ ଶିଳ୍ପରୂପେ ପରିଗୃହୀତ ହୋଇଛି । କେନ୍ଦ୍ର ସରକାରଙ୍କ ପକ୍ଷରୁ ଶ୍ରୀନଗର ଠାରେ ଏକ ଘଡ଼ି କାରଖାନା ଓ ଏକ ଟେଲିଫୋନ ତିଆରି କାରଖାନା ସ୍ଥାପିତ ହୋଇଛି ।

ଭାରତରେ କାଶ୍ମୀର ଉପତ୍ୟକାର ଗୁରୁତ୍ୱ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ସାମରିକ ଦୃଷ୍ଟିକୋଣରୁ ଏହି ରାଜ୍ୟର ସୀମାନ୍ତକୁ ସତର୍କ ଦୃଷ୍ଟିରେ ରଖାଯାଇଛି । ପର୍ଯ୍ୟଟନ କେନ୍ଦ୍ର ରୂପେ କାଶ୍ମୀରକୁ ଭାରତର ସ୍ୱର୍ଗ ବୋଲି ବର୍ଣ୍ଣନା କରାଯାଏ । ଗ୍ରୀଷ୍ମ କାଳରେ ଭାରତର ବିଭିନ୍ନ ଅଞ୍ଚଳ ତଥା ପୃଥିବୀର ବିଭିନ୍ନ ଦେଶରୁ ପର୍ଯ୍ୟଟକମାନେ କାଶ୍ମୀର ପରିଦର୍ଶନରେ ଆସିଥାଆନ୍ତି ।

ସାମରିକ ମହତ୍ତ୍ୱ ତଥା ପର୍ଯ୍ୟଟନ କେନ୍ଦ୍ରର ଆକର୍ଷଣୀୟ ଗୁରୁତ୍ୱ ଦୃଷ୍ଟିରୁ ଜାମ୍ମୁ ଓ କାଶ୍ମୀର ଆମ ଦେଶର ଏକ ଗୁରୁତ୍ୱପୂର୍ଣ୍ଣ ରାଜ୍ୟ । କେଉଁ ପୁରାଣ ଯୁଗରୁ ଏହି ରାଜ୍ୟର କୀର୍ତ୍ତି ଭାରତବର୍ଷରେ ଉଦ୍‌ଘୋଷିତ ହୋଇ-ଆସୁଛି ।

